ପୃଥିବୀର ଶ୍ରେଷ୍ଠ ଗଳ୍ପ

ଗ୍ରନ୍ଥ ମାଳାର

ଚତୁର୍ଥ ଖଣ୍ଡ

# ଫ୍ରାନ୍ସର ଶ୍ରେଷ୍ଠ ଗଳ୍ପ



ଅନୁବାଦ

ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି

ପ୍ରଥମ ସଂସ୍କରଣ : ୧୯୬୫

ପ୍ରକାଶକ

ଶ୍ରୀ ଗୋବିନ୍ଦ ଚରଣ ପାଢ଼ୀ

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦ ବିହାରୀ,

କଟକ-୨

ମୁଦ୍ରାକର

ଶ୍ରୀ ନେତ୍ରାନନ୍ଦ କର

ନୀଳକଣ୍ଠ ପ୍ରେସ,

ବୃନ୍ଦିମାର୍କେଟ,

କଟକ-୨

ମୂଲ୍ୟ

ତିନ ଟଙ୍କା

# ସୂଚୀପତ୍ର

# ଭୂମିକା

"ଯେଉଁ ବସ୍ତୁ ସ୍ୱଚ୍ଛ ନୁହେଁ, ତାହା କଦାପି ଫରାସୀ ନୁହେଁ ।"

ଫରାସୀମାନେ ନିଜେ ଏହା କହନ୍ତି । ଫରାସୀ ଅବଶ୍ୟ ଚଞ୍ଚଳ ଓ ରଙ୍ଗୀନ । ଫରାସୀ ଭାଷାର ସର୍ବ ପ୍ରଧାନ ଗୁଣ ହେଉଛି ନିଜର ସ୍ୱଚ୍ଛତା ଓ ସରଳତା । ଅତିଶୟ ଗମ୍ଭୀର ବିଷୟ ଆଲୋଚନା ସମୟରେ ବି ଫରାସୀ ନିଶ୍ଚିତ୍ ତରଳ ହୋଇଯାଏ ।

"ଇହ ଜୀବନରେ ମଣିଷର ଦେହ-ମନର ସମ୍ପର୍କ ଅବିଚ୍ଛିନ୍ନ ଓ ଅବିଚ୍ଛେଦ୍ୟ— ବୁଦ୍ଧି ଓ ଇନ୍ଦ୍ରିୟ ପରସ୍ପର ଅନୁପ୍ରବିଷ୍ଟ",—ଏହି ଚିରନ୍ତନ ସତ୍ୟ ଉପରେ ଫରାସୀ ସାହିତ୍ୟର ବିଶେଷତ୍ୱ ଓ ଶ୍ରେଷ୍ଠତ୍ୱ ପ୍ରତିଷ୍ଠିତ । ଫରାସୀ ଜାତି ଚିନ୍ତା ରାଜ୍ୟରେ ଇନ୍ଦ୍ରିୟଜ ଜ୍ଞାନକୁ ମିଥ୍ୟା ବୋଲି କଦାପି ଉଡ଼ାଇ ଦେଇ ନାହିଁ କି ଅକିଞ୍ଚିତ୍କର ବୋଲି ଉପେକ୍ଷା କରି ନାହିଁ । ସୁତରାଂ ଫରାସୀ ସାହିତ୍ୟ ଭିତରେ ବିଜ୍ଞାନ ଓ କଳାର ଏକତ୍ର ସମାବେଶ ପରିଦୃଷ୍ଟ ହୁଏ । ହେନେରୀ ଜେମ୍‌ସ କହିଛନ୍ତି—ଫରାସୀ ଜାତି ବିଶେଷ ଭାବରେ ସେହିସବୁ ମନୋଭାବର ଅନୁଶୀଳନ କରିଛି, ଯେଉଁଥିରେ ମଣିଷ ସହିତ ମଣିଷର ଆତ୍ମୀୟତା ଜାତ ହୁଏ । ଏହି ମହତ ଗୁଣରେ ଫରାସୀ ସଭ୍ୟତା ପରକୁ ବି ଆପଣାର କରିପାରେ ।

ଫରାସୀ ସାହିତ୍ୟ ପ୍ରଧାନତଃ ମାନବ ମନର ସାଧାରଣ ଧର୍ମ ଉପରେ ଆଧାରିତ ବୋଲି ତାହା ସର୍ବଲୋକଗ୍ରାହ୍ୟ ଓ ସର୍ବଜନ-ପ୍ରିୟ । ଫରାସୀ ସଭ୍ୟତାର ବୀଜ ମନ୍ତ୍ର 'ବସୁଧୈବ କୁଟୁମ୍ବକମ୍' କୌଣସି ଧର୍ମ ମତ ଉପରେ ପର୍ଯ୍ୟବସିତ ନୁହେଁ । ମାନବ ଚରିତ୍ରର ପ୍ରତ୍ୟକ୍ଷ ଜ୍ଞାନ ଉପରେ ଫରାସୀ ମନୋଭାବ ସୁରକ୍ଷିତ, ଏବଂ ସେହି

ମନୋଭାବ ଫରାସୀ ସାହିତ୍ୟ ଗଠନରେ ପ୍ରଧାନତଃ ସହାୟକ ହୋଇଛି। ଫରାସୀ ମନର ଆଖି ତାର ଦିନ ଆଲୁଅ ଆଡ଼କୁ ଚାହିଁ ରହିଛି। ଦିନର ଆଲୁଅରେ ଯାହା ସ୍ପଷ୍ଟ ଦେଖାଯାଏ ନାହିଁ, ଫରାସୀ ମନ ସ୍ୱଭାବତଃ ତାହା ଦେଖିବାକୁ ଚାହେଁ ନା। ଫଳରେ ଯେଉଁ ମନୋଭାବ ଅସ୍ପଷ୍ଟ ଓ ଅସ୍ଫୁଟ ଓ ଯେଉଁ ସତ୍ୟ ଧରା ଦିଏ ନା, ଖାଲି ଆଭାସ ଓ ଇଙ୍ଗିତରେ ତାର ଆତ୍ମ-ପରିଚୟ ଦିଏ, ସେହି ଅନାବିଳ ମନୋଭାବ ଓ ସତ୍ୟର ଦର୍ଶନ ଫରାସୀ ସାହିତ୍ୟରେ ପ୍ରାପ୍ତ ହୋଇ ନ ପାରେ। ଯାହା କେବଳ ମାତ୍ର କଳ୍ପନାର ଧନ, ସେଥିରୁ ଫରାସୀ ସାହିତ୍ୟ ବହୁ ପରିମାଣରେ ବଞ୍ଚିତ। ଅପର ପକ୍ଷରେ ଏହି ଆଲୋକପ୍ରିୟତାର ଫଳରେ ଫରାସୀ ସାହିତ୍ୟ ଅପୂର୍ବ ସ୍ୱଚ୍ଛତା ଓ ଉଜ୍ଜ୍ୱଳତାର ସ୍ୱାକ୍ଷର ବହନ କରୁଛି। ଏପରି ସ୍ପଷ୍ଟଭାଷୀ ସାହିତ୍ୟ ପୃଥିବୀରେ ଅଦ୍ୱିତୀୟ କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ।

ଫରାସୀ ସାହିତ୍ୟ ଏତେ ସ୍ପଷ୍ଟଭାଷୀ ଯେ ସେହି ସାହିତ୍ୟର ଭାଷାରେ ଜଡ଼ତା କିମ୍ବା ଅସ୍ପଷ୍ଟତାର ଲେଶ ମାତ୍ର ନାହିଁ। ଯେଉଁ ବିଷୟରେ ଲେଖକର ପରିଷ୍କାର ଧାରଣା ଅଛି, ତାହା ଅତି ପ୍ରାଞ୍ଜଳ ଭାବରେ କହିବା ହେଉଛି ଫରାସୀ ସାହିତ୍ୟିକର ଏକମାତ୍ର ଧର୍ମ। ପାଣ୍ଡିତ୍ୟ ନ ଦେଖାଇ ଅସାଧାରଣ ବିଦ୍ୟା-ବୁଦ୍ଧିର ପରିଚୟ ଏକମାତ୍ର ଫରାସୀ ଲେଖକମାନେ ହିଁ ଦେଇ ପାରନ୍ତି। ଜ୍ଞାନ-ବିଜ୍ଞାନର ଐକାନ୍ତିକ ଚର୍ଚ୍ଚାରେ ଫରାସୀ ପଣ୍ଡିତମାନଙ୍କର ସମାଜିକ ବୁଦ୍ଧି ଓ ରସ ଜ୍ଞାନ ନଷ୍ଟ ହୁଏ ନାହିଁ। ପ୍ରକୃତ ଦାର୍ଶନିକ କି ବୈଜ୍ଞାନିକ କେବଳ ମାତ୍ର ନିଜର ବ୍ୟବସାୟ ପାଇଁ ସତ୍ୟ ଆବିଷ୍କାର କରିବାରେ ବ୍ରତୀ ହୁଅନ୍ତି ନାହିଁ। ମାନବ ଜାତି ନିକଟରେ ସତ୍ୟ ପ୍ରକାଶ ଓ ପ୍ରଚାର କରିବା ହିଁ ତାଙ୍କର ସର୍ବ ପ୍ରଧାନ ଉଦ୍ଦେଶ୍ୟ। ସୁତରାଂ ଯେଉଁ ସତ୍ୟ ସେ

ଆବିଷ୍କାର କରନ୍ତୁ, ତାହା ପରିଷ୍କାର ଭାବରେ ଅପରକୁ ଦେଖାଇ-ଦେବା ଓ ବୁଝାଇଦେବା, ଯାହା ଜଟିଳ ତାକୁ ସରଳ ଓ ସୁଗମ କରିବା, ଯାହା କଠିନ ତାକୁ ସହଜ କରିବା ତାଙ୍କ ପକ୍ଷରେ ଏକାନ୍ତ କର୍ତ୍ତବ୍ୟ । ପଦଏ କଥାରେ — ବୈଜ୍ଞାନିକ ପକ୍ଷରେ ଶିଳ୍ପୀ ଏବଂ ଜ୍ଞାନୀ ପକ୍ଷରେ ଗୁଣୀ ହେବା ଅତ୍ୟାବଶ୍ୟକ ।

ସଂସ୍କୃତ ଭଳି ଫରାସୀ ସାହିତ୍ୟ ପ୍ରଧାନତଃ ବାସ୍ତବବୋଧୀ । ବାହ୍ୟ ଘଟଣା ଓ ସାମାଜିକ ମନ ନେଇ ଫରାସୀ ସାହିତ୍ୟର ଅସଲ କାରବାର । ଗୋଟିଏ କଥାରେ — ଫରାସୀ ଜାତିର ଦିବ୍ୟ ଦୃଷ୍ଟି ଅପେକ୍ଷା ବହିର୍ଦୃଷ୍ଟି ଓ ଅନ୍ତର୍ଦୃଷ୍ଟି ଯଥେଷ୍ଟ ବେଶୀ ତୀକ୍ଷ୍ଣ ଓ ପ୍ରଖର । ସେମାନେ ଚକ୍ଷୁ ମଣିଷର ଭିତର ବାହାର ଉଭୟ ସମାନ ଭାବରେ ଦେଖି ପାରେ । ତେଣୁ ଫରାସୀ ସାହିତ୍ୟରେ ବ୍ୟବହାରିକ ସତ୍ୟର ଆଲୋଚନା ଓ ଚର୍ଚ୍ଚା ଅଧିକ ହୋଇଥାଏ – ଯାହା ଇନ୍ଦ୍ରିୟର ଅଗୋଚର ଓ ବୁଦ୍ଧିର ଅଗମ୍ୟ ତାର ସନ୍ଧାନ ଫରାସୀ ସାହିତ୍ୟରେ ମିଳେ ନା । ସୁତରାଂ ମାନବ-ସମାଜ, ମାନବ-ମନ ଓ ମାନବ-ଚରିତ୍ରର ଜ୍ଞାନ ଲାଭ ଓ ବର୍ଣ୍ଣନା କରିବା ଫରାସୀ ସାହିତ୍ୟର ମୁଖ୍ୟ ଉଦ୍ଦେଶ୍ୟ । ବୈଜ୍ଞାନିକ ଯେଉଁ ପଦ୍ଧତି ଅନୁସରଣ କରି ଜଡ଼ ବସ୍ତୁର ତତ୍ତ୍ୱ ନିର୍ଣ୍ଣୟ କରେ, ଫରାସୀ ସାହିତ୍ୟିକ ସେହି ମାର୍ଗ ଅନୁସରଣ କରି ମାନବ-ତତ୍ତ୍ୱ ନିର୍ଦ୍ଧାରଣ କରେ ।

ଫରାସୀ ସାହିତ୍ୟର ଦ୍ୱିତୀୟ ବିଶେଷତ୍ୱ ହେଉଛି ତାର କଳା ନୈପୁଣ୍ୟ । ସେହି କଳା ପୁଣି କାଳ୍ପନିକ ନୁହେଁ, ଉଚ୍ଚାଙ୍ଗ । ଏହି କଳାର ଅଲୌକିକ ଗୁଣରେ ଫରାସୀ ରଚନା ଆଧୁନିକ ୟୁରୋପୀୟ ସାହିତ୍ୟରେ ଶୀର୍ଷ ସ୍ଥାନ ଅଧିକାର କରିଛି । ତା ମୂଳରେ ରହିଛି ଫରାସୀ ଲେଖକମାନଙ୍କର ଐକ୍ୟ ସାଧନ ଓ କାୟମନୋ-ବାକ୍ୟରେ ଏକ ଆଦର୍ଶ ଷ୍ଟାଇଲ ଗଠନ । ତାହା ଛଡ଼ା ପ୍ରାଚୀନ

ଫରାସୀ ଲେଖକଙ୍କ ରଚନାରେ ମଧ୍ୟ ସଂସ୍କାର ମୂଳକ ବ୍ୟଙ୍ଗ ଦେଖାଯାଏ । କିନ୍ତୁ ପ୍ରସ୍ପାର ମେରେମେଙ୍କ ଠାରୁ ଫରାସୀ ଗପ ସମାଜ ଚେତନା ଗଠନ କରି ସୌନ୍ଦର୍ଯ୍ୟବାଦକୁ ମୁଖ୍ୟ ବୋଲି ବରଣ କରି ନେଇଛି । 'କଳା ପାଇଁ କଳା' ହେଉଛି ଫରାସୀ ସାହିତ୍ୟର ମନ୍ତ୍ରବାଣୀ । ଫରାସୀମାନେ କଦାପି ମୁଖ ବିକୃତ କରି ନିଜକୁ କୁତ୍ସିତ କରନ୍ତି ନାହିଁ । ଯେତେବେଳେ କାନ୍ଦନ୍ତି, ସେତେ-ବେଳେ ସେମାନେ ଗୋପନରେ ଲକ୍ଷ୍ୟ ରଖି ଥାଆନ୍ତି ମୁଖ-ଭଙ୍ଗୀ ସୁନ୍ଦର ହେଉଛି କି ନା ।

ଊନବିଂଶ ଶତାବ୍ଦୀରେ ଫ୍ରାନ୍ସ ନିରବଚ୍ଛିନ୍ନ ଶାନ୍ତି ଉପଭୋଗ କରି ନାହିଁ—ଅନ୍ତର୍ବିପ୍ଳବ ଓ ବହିଃଶତ୍ରୁର ଆକ୍ରମଣରେ ଫ୍ରାନ୍ସ ବାରମ୍ବାର ପୀଡ଼ିତ ଓ ବିଧ୍ୱସ୍ତ ହୋଇଛି, ଅଥଚ ଏହି ଅଶାନ୍ତି ଓ ଉପଦ୍ରବର ମଧ୍ୟରେ ବି ଫ୍ରାନ୍ସ ମାନବ ଜୀବନର ପ୍ରତି କ୍ଷେତ୍ରରେ ନବ ନବ ଉନ୍ମେଷଶାଳିନୀ ବୁଦ୍ଧିର ପରିଚୟ ଦେଇ ଆସିଛି । ବିଜ୍ଞାନ କ୍ଷେତ୍ରରେ ପାସ୍ତୁର ଓ ଦର୍ଶନ କ୍ଷେତ୍ରରେ ବେର୍ଗସଁ ଯେପରି ଯୁଗ ପ୍ରବର୍ତ୍ତକ ମହାପୁରୁଷ, ସାରସ୍ୱତ କ୍ଷେତ୍ରରେ ସେହିପରି ହ୍ୟୁଗୋ, ଭଲ୍ଟେୟାର, ଗୋତିୟେ, ମୋପାସାଁ ପ୍ରମୁଖ ଶକ୍ତିଶାଳୀ ସାହିତ୍ୟିକ, ମାନଙ୍କର ନାମ ୟୁରୋପର ଶିକ୍ଷିତ ସମାଜ ନିକଟରେ ଆଦୌ ଅବିଦିତ ନୁହେଁ ।

ପୃଥିବୀରେ ଶ୍ରେଷ୍ଠ ଗପ କ୍ଷେତ୍ରରେ ଫରାସୀ ସାହିତ୍ୟ ସର୍ବୋଚ୍ଚ ଆସନ ଅଧିକାର କରିଛି । ଶ୍ରେଷ୍ଠ ଗପ କହିଲମାନେ କେବଳ ଫରାସୀ ଗପକୁ ହିଁ ବୁଝାଏ, ଏହା ଡଳେ ହେଲେ ଅତିରଞ୍ଜନ ନୁହେଁ । ଏତେ ଅଧିକ ସଂଖ୍ୟକ ଉଚ୍ଚ ଶ୍ରେଣୀର କଥାକାର ଅନ୍ୟ କୌଣସି ସାହିତ୍ୟରେ ନାହାନ୍ତି । ଫରାସୀ ପ୍ରତିଭା ଶ୍ରେଷ୍ଠ ଗପରେ ବିଶେଷ

ପ୍ରତିଷ୍ଠା ଅର୍ଜନ କରିଛି । ସେହି ଗଳ୍ପଗୁଡ଼ିକ ପୁଣି ଆଙ୍ଗିକ, ଆୟତନ, ଭାବ ଓ ରୂପାୟନରେ ଏତେ ନିପୁଣ ଯେ ପୃଥିବୀ ସମକ୍ଷରେ ସେସବୁ ବିସ୍ମୟକର, ପଥ-ପ୍ରଦର୍ଶକ ଓ ପ୍ରେରଣାର ଅଫୁରନ୍ତ ଉତ୍ସ । ଫରାସୀ ଗଳ୍ପ ସର୍ବଜନ ଉପଭୋଗ୍ୟ ହେବାର ପ୍ରଧାନ କାରଣ ହେଉଛି ତାର ଘଟଣା-ମୁଖରତା, ସ୍ପଷ୍ଟତା ଓ ଉଜ୍ଜ୍ୱଳତା । ଘଟଣାର ସଂହତି, ଅଲୌକିକ ସୌନ୍ଦର୍ଯ୍ୟ ବୋଧ, ନିର୍ମଳ ଆବରଣ, ଭାଷାର ଶକ୍ତି ଓ ଭାବର ବୈଚିତ୍ର୍ୟ ତଥା କଥାବସ୍ତୁରେ ଅପୂର୍ବ କଳା-ଚାତୁର୍ଯ୍ୟ ଓ ସୂକ୍ଷ୍ମ ମାଧୁର୍ଯ୍ୟ ଫରାସୀ ଗଳ୍ପ-ସାହିତ୍ୟର ବିସ୍ମୟକର ଦାନ । ମୋଟ ଉପରେ ଫରାସୀ ଗଳ୍ପର ମୂଳ ଓ ମୁଖ୍ୟ ଦାୟିତ୍ୱ ହେଲା ସୌନ୍ଦର୍ଯ୍ୟର ସୃଷ୍ଟି ।

ଅଷ୍ଟାଦଶ ଶତାବ୍ଦୀରେ ସ୍ୱେଚ୍ଛାଚାରୀ ଚତୁର୍ଦ୍ଦଶ ଲୁଇଙ୍କ ଶାସନର ପ୍ରତିକ୍ରିୟା ସ୍ୱରୂପ ଫରାସୀ ଜୀବନ ଯାତ୍ରାରେ ଯୁକ୍ତିବାଦର ଉଜ୍ଜ୍ୱଳ ତରଙ୍ଗ ଦେଖା ଦେଇଥିଲା । ତହିଁ ସଙ୍ଗେ ସଙ୍ଗେ ଦାର୍ଶନିକ ଓ ଅଧାର୍ମିକ କାହାଣୀର ଅଭ୍ୟୁଦୟ ହେଲା । ବିଶ୍ୱ ବରେଣ୍ୟ ସାହିତ୍ୟିକ, ଦାର୍ଶନିକ ଓ ଚିନ୍ତାନାୟକ ଆରୁଏଟ୍ ଦ୍ୟ ଭଲ୍‌ଟେୟାରଙ୍କ (୧୬୯୪) ସ୍ୱରଚିତ ଅନବଦ୍ୟ ଗଳ୍ପର ସମ୍ଭାର ଭିତରେ ଏହି ଯୁକ୍ତିବାଦ ଓ ଆତ୍ମ-ବିଶ୍ୱାସର ସ୍ୱର ଅନୁରଣିତ ହେଲା । ତାଙ୍କର ପ୍ରତ୍ୟେକ ଗଳ୍ପ ସଂଘାତମୟ ଜୀବନର ଗୋଟିଏ ଗୋଟିଏ ଅସାମାନ୍ୟ ରୂପାୟନ । ଗଳ୍ପଗୁଡିକର ଚରିତ୍ର ତାଙ୍କର ସୁଦୃଢ଼ ଆଦର୍ଶର ଧାରକ ଓ ବାହକ—ବୁଦ୍ଧିଦୀପ୍ତ ଚେତନାରେ ସେସବୁ ସମୁଜ୍ଜ୍ୱଳ । 'ଭଲ ଲାଗି ମନ୍ଦ' ଗଳ୍ପଟି ସେହି ପରିଚୟ ବହନ କରିଛି । ଆଗରେ 'ଯାଦିଗ'-ମାନଙ୍କର କେତୋଟି ସଂଘ ଥିଲା । କୌଣସି ସରାଇଖାନାରେ କିମ୍ବା ଅଭିନେତ୍ରୀର ଆଳୟରେ ସେସବୁର ବୈଠକ ପ୍ରାୟ ବସୁଥିଲା । ଫରାସୀ ଶ୍ରୀମତୀ ଡାଫେସନଙ୍କ ଘରେ ଏହିପରି ଏକ ବିଶିଷ୍ଟ ସଂଘର

ବୈଠକରେ ସଭ୍ୟମାନଙ୍କ ଦ୍ୱାରା ଶେଷ ଗପସବୁ ପ୍ରାପ୍ତ ପଠିତ ହେଉଥିଲା । ସେହି ସଭର ସଭ୍ୟମଣ୍ଡ ଥିଲେ 'ଚଠି' ଗପର ରଚୟିତା କୋମତ୍ ଦ୍ୟ କେଲୁସ (୧୬୯୨) । ତାଙ୍କର ପ୍ରଧାନ ରୋଗ ଥିଲା ପ୍ୟାରୀର ବସ୍ତିରେ ଅହରହ ଘୂରି ବୁଲିବା । ତେଣୁ ତାଙ୍କର ଗପଗୁଡ଼ିକରେ ସ୍ଥାନୀୟ ବସ୍ତି ଜୀବନର ଛବି ଅତ୍ୟନ୍ତ ସ୍ପଷ୍ଟ ଭାବରେ ପ୍ରତିଫଳିତ ହୋଇଛି ।

ଊନବିଂଶ ଶତାବ୍ଦୀର ଉନ୍ମେଷରେ ଆଧୁନିକ ଗପ ସାହିତ୍ୟର ମୂଳଭିତ୍ତି ପତନ ହେଲା । ବିଜ୍ଞାନର ଅପୂର୍ବ ଜୟଯାତ୍ରା ସହିତ ଶିଳ୍ପ ବିପ୍ଳବ ସଂଘଟିତ ହେଲା । ଠିକ୍ ସେତିକି ବେଳେ ଫରାସୀ ସାହି-ତ୍ୟରେ ଦେଖା ଦେଇଥିଲା ତଥାକଥିତ କଳ୍ପନା-ପ୍ରବଣ ଆନ୍ଦୋଳନ । ତାର ପୁରୋଭାଗରେ ଥିଲେ ଭିକ୍ଟର ହ୍ୟୁଗୋ, ବୋଦଲେୟାର, ଡମା, ମୁସ୍ସେ, ସାଁ ପ୍ରମୁଖ ପ୍ରଖ୍ୟାତ କବିଗଣ । ଅତୀତ ପ୍ରତି ଥିଲା ସେମାନଙ୍କର ଉପେକ୍ଷା ଏବଂ ଅଜ୍ଞାତ ଭବିଷ୍ୟତ ପ୍ରତି ପ୍ରବଳ ଶ୍ରଦ୍ଧା ଓ ଆଶା । ବାସ୍ତବିକ ଫରାସୀ ବିପ୍ଳବ ପରେ ଦେଶରେ ଯେଉଁ ଅନ୍ଧକାର ଯୁଗ ଆସିଥିଲା ୧୮୩୦ ଖ୍ରୀଷ୍ଟାବ୍ଦରେ ଏକ ସଫଳ ବିପ୍ଳବ ହେତୁ ତାହା ଦୂରୀଭୂତ ହେଲା । ହ୍ୟୁଗୋଙ୍କ (୧୮୦୨) ରଚନାର ମୂଳ ଉଦ୍ଦେଶ୍ୟ ହେଉଛି ସମାଜର କଲ୍ୟାଣକର ବିବର୍ତ୍ତନରେ ସାହାଯ୍ୟ କରିବା । ଶାର୍ଲ ବୋଦଲେୟାର (୧୮୨୧) ନିଜେ ଜାଣି ନ ଥିଲେ ସୁଲିଖିତ ଶତାଧିକ ଗପକୁ ନେଇ ସେ କଣ କରିବେ । ତାଙ୍କର ମୃତ୍ୟୁ ପରେ ଅବଶ୍ୟ ସେସବୁ ଗ୍ରନ୍ଥାକାରରେ ପ୍ରକାଶିତ ହୋଇଥିଲା । 'ଦଉଡ଼ି' ଗପଟି ସହର ଜୀବନର ଏକ ମର୍ମାନ୍ତିକ ଘଟଣାର ନଗ୍ନ ଚିତ୍ର କିମ୍ବା ଏକ ବୃହତ୍ ନଗରୀର ଅନ୍ତରର ଉନ୍ମୁକ୍ତ ଉଦ୍ଘାଟନ । ମାତ୍ର ତେଓଫିଲ ଗୋତିୟେ (୧୮୧୧) ଥିଲେ ସମ୍ପୂର୍ଣ୍ଣ ଆତ୍ମ-କେନ୍ଦ୍ରିକ । ତାଙ୍କୁ କୋଡ଼ିଏ ବର୍ଷ ବେଳେ

ତାଙ୍କର ପ୍ରଥମ କବିତା-ଗୁଚ୍ଛ ଓ ଚବିଶ ବର୍ଷ ବେଳେ ପ୍ରଥମ ଉପନ୍ୟାସ ପ୍ରକାଶିତ ହୋଇଥିଲା । ବାହ୍ୟିକ ଓ ଦର୍ଶନୀୟ ସଂସାରର ନିସ ଜଣେ ପ୍ରତିଷ୍ଠିତ କବି — ତାଙ୍କର ଶୈଳୀ ସ୍ୱଚ୍ଛ, ଆଳଙ୍କାରିକ ଓ ଭାବବାଦୀପକ । ତାଙ୍କର ଶ୍ରେଷ୍ଠ ଗଳ୍ପଗୁଡ଼ିକ ବିଦେଶୀୟ ଓ ବିଶେଷ ମାର୍ଜିତ ଧରଣର ସାହିତ୍ୟିକ କୃତି । ଆଲଫୋଁସ ଦୋଦେ (୧୮୪୦) ଥିଲେ ଏକାଧାରରେ କବି, ଗାଳ୍ପିକ ଓ ଔପନ୍ୟାସିକ । 'ଗୁପ୍ତଚର' ତାଙ୍କର ଏକ ଜନପ୍ରିୟ ଗଳ୍ପ । 'ସ୍ୱର୍ଗସୁଖ'ର ରଚୟିତା ଏମିଲ ଜୋଲା (୧୮୪୦) ନିଜକୁ ଏକ ପ୍ରାକୃତିକ ଶକ୍ତି କିମ୍ବା ଅତି-ମାନବିକ ଉତ୍ପାଦକ ଯନ୍ତ୍ର ଭାବରେ ପ୍ରତିପାଦନ କରିଛନ୍ତି । ପ୍ରତି ବର୍ଷ ନିଜର ତୀକ୍ଷ୍ଣ ଲେଖନୀରେ ସେ ପ୍ରାୟ ଖଣ୍ଡିଏ ଲେଖାଏଁ ଉପନ୍ୟାସ ରଚନା କରୁଥିଲେ । ନିଜର ଯଶ ଓ ସମ୍ପଦ ସମ୍ବନ୍ଧରେ ସେ କୌଣସି ବିଷୟ ଗୁପ୍ତ ରଖି ନ ଥିଲେ । କାରଣ ସେ ବଡ଼ ସ୍ପଷ୍ଟ ଥିଲେ । ନିଜର କିମ୍ବା ଅପରର କୌଣସି ବିଷୟ ତାଙ୍କର ଦୃଷ୍ଟି ପଥାରୂଢ଼ ହେଲା କ୍ଷଣି ସେ ତାହା ଅବିଳମ୍ବେ ନିର୍ମମ ଭାବରେ ଲିପିବଦ୍ଧ କରୁଥିଲେ । ଆନାତୋଲ ଫ୍ରାଁସ (୧୮୪୪) ଜଣେ ସର୍ବଶ୍ରେଷ୍ଠ ସାହିତ୍ୟିକ ଥିଲେ । ପଚାଶ ବର୍ଷରୁ ଅଧିକ କାଳ ଅମର ଲେଖନୀ ବଳରେ ଶିକ୍ଷିତ ନାସ୍ତିକବାଦର ଦର୍ଶନରେ ସେ ନିଜର ସମସ୍ତ ଉପନ୍ୟାସ ଓ ଗଳ୍ପ ମଣ୍ଡନ କରିଥିଲେ । 'ବାଜିକର' ହେଉଛି ଏକ ଚମତ୍କାର ମଧ୍ୟ-ଯୁଗୀୟ ଫରାସୀ କାହାଣୀର ପୁନଃକଥନ ।

ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରୁ ପ୍ରଥମ ମହାଯୁଦ୍ଧର ପୂର୍ବ ପର୍ଯ୍ୟନ୍ତ ଫରାସୀ ଶ୍ରେଷ୍ଠ ଗଳ୍ପର ସୁବର୍ଣ୍ଣ ଯୁଗ । ଅବ୍ୟାହତ ଯନ୍ତ୍ର ଓ ବିଜ୍ଞାନର ନବ ନବ ଆବିଷ୍କାରରେ ଏହି ଯୁଗ ଯେମିତି ସମୃଦ୍ଧତର, ଠିକ୍ ସେମିତି ଶ୍ରେଷ୍ଠ ଗଳ୍ପରେ ହିଁ ଶ୍ରେଷ୍ଠତର । କିନ୍ତୁ ବିଜ୍ଞାନ ଓ ଯନ୍ତ୍ର ପ୍ରକୃତ କଲ୍ୟାଣ ଆନୟନରେ ଅପାରଗ ହେବାରୁ ପୁଣି

ଶୃଙ୍ଖଳମୁକ୍ତିର ପ୍ରଚେଷ୍ଟା । କଥା-ସାହିତ୍ୟରେ ବି ଏହାର ପ୍ରବେଶ ଘଟିଲା । ଗାଏଦ ମୋପାସାଁଙ୍କ (୧୮୫୦) ହାତରେ ଆଧୁନିକ ଶ୍ରେଷ୍ଠ ଗଳ୍ପ ଉତ୍କର୍ଷତା ଲାଭ କଲା । ତାଙ୍କ ପୂର୍ବରୁ ପ୍ରସପାର ମେରେମେ (୧୮୦୩) ଓ ବାଲଜାକ (୧୭୯୯) ସମେତ ବହୁ ବିଶିଷ୍ଟ ସାହିତ୍ୟିକ ଯଥେଷ୍ଟ ସାର୍ଥକ ଶ୍ରେଷ୍ଠ ଗଳ୍ପ ଲେଖିଥିଲେ । କିନ୍ତୁ ରୂପାୟନକଳା ଦିଗରୁ ସେଗୁଡ଼ିକ ମୋପାସାଁଙ୍କର ଉଜ୍ଜ୍ୱଳ କୃତି ପରି ନୁହେଁ । ମୋପାସାଁଙ୍କ ଗଳ୍ପର ବୈଶିଷ୍ଟ୍ୟ ବାହ୍ୟିକ ଚାକ୍‌ଚକ୍ୟରେ ନିହିତ ନୁହେଁ, ମାତ୍ର ସୁଠାମ ଭଙ୍ଗୀରେ । ତାଙ୍କ ଗଳ୍ପର ଔଜ୍ଜ୍ୱଲ୍ୟ ଆଖି ଝଲସାଇ ଦିଏ ନାହିଁ, ମାତ୍ର ମନ ପରିତୃପ୍ତ କରେ । ତାଙ୍କର ପ୍ରାୟ ସବୁ ଗଳ୍ପର ମୂଳ ଅତ୍ୟନ୍ତ ସରଳ, ବୁଦ୍ଧି-ଦୀପ୍ତ ବା ଭାବୋଦ୍ଦୀପକ ନୁହେଁ । ଘଟଣାର ଉପସ୍ଥାପନାରେ ଯେ ଟିଏ ସ୍ୱାଭାବିକ ଆକର୍ଷଣ ଅଛି, ଯାହା ଦ୍ୱାରା ପାଠକ ଆକୃଷ୍ଟ ନ ହୋଇ ରହି ପାରିବ ନାହିଁ । ସେଥିପାଇଁ ସକଳ ସ୍ତରର ମଣିଷକୁ ତାହା ଆନନ୍ଦ ଦେଇପାରେ । ସୁଦୃଢ଼ କଥାବସ୍ତୁ, ପରିଚିତ ଘଟଣା, ସାଧାରଣ ଆରମ୍ଭ ଓ ବିସ୍ମୟକର ପରିଣତି ଉପରେ ପ୍ରତିଷ୍ଠିତ କେତୋଟି ସୁସ୍ପଷ୍ଟ ଓ ସ୍ୱାଭାବିକ ରେଖାଙ୍କନ ତାଙ୍କ ଗଳ୍ପର ଗତିକୁ ଦ୍ରୁତ କରିଦିଏ । ଆଜି କେବଳ ଫରାସୀମାନେ ନୁହନ୍ତି, ବିଶ୍ୱ ବ୍ରହ୍ମାଣ୍ଡ ସ୍ୱୀକାର କରେ ଯେ ମୋପାସାଁ ହିଁ ଛୋଟ ଗଳ୍ପର ଆବିଷ୍କର୍ତ୍ତା । ଛୋଟ ଗଳ୍ପରେ ସେ ହେଉଛନ୍ତି ଆଦି ଗଳ୍ପ-ଗୁରୁ ବାଲ୍ମୀକି । ସେ ହିଁ ପ୍ରଥମେ ଦେଖାଇ ଦେଲେ, ଦୀର୍ଘ ଉପନ୍ୟାସ ରଚନା ନ କରି ବି ପାଠକଙ୍କୁ କିପରି ଭାବରେ କଥା-ରସରେ ଆପ୍ଳୁତ କରାଯାଏ । 'ହିନ୍ଦୁସ୍ଥିଦ' ସେହି ଶାଶ୍ୱତ କଳାର ଏକ ନିରୁପମ ନିଦର୍ଶନ ।

ସୁପ୍ରସିଦ୍ଧ ସାହିତ୍ୟିକ ଓ ଅସ୍ତିବାଦ ଆନ୍ଦୋଳନର ଅଗ୍ରଗାମୀ ନେତା ଜାଁ-ପଲ ସାର୍ତ୍ତର (୧୯୦୫) ଖ୍ରୀଷ୍ଟୀୟ ଧର୍ମ-ବିଶ୍ୱାସର ଘୋର

ବିରୋଧୀ । ଗତ ମହାଯୁଦ୍ଧ ବେଳେ ତାଙ୍କର 'ସତ୍ ଓ ଅସତ୍' ନାମକ ବୃହତ୍ ଓ ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ଗ୍ରନ୍ଥ ପ୍ରକାଶିତ ହେବା କ୍ଷଣି ସାର୍ତ୍ର ଏ ଯୁଗର ଅନ୍ୟତମ ମହତ୍ ଚିନ୍ତା-ନାୟକ ଓ ଦାର୍ଶନିକ ରୂପେ ସ୍ୱୀକୃତ ହେଲେ । ତାପରେ ନାନା ଦାର୍ଶନିକ ଗ୍ରନ୍ଥ, ନାଟକ ଓ ପତ୍ରିକା ମାଧ୍ୟମରେ ସେ ନିଜର ନୂତନ ମତବାଦ ପ୍ରଚାର କରିବାକୁ ଲାଗିଲେ । କେତେ ବର୍ଷ ଭିତରେ ତାଙ୍କର ଜନପ୍ରିୟତା ଓ ପ୍ରଭାବ ଅତ୍ୟାଶ୍ଚର୍ଯ୍ୟଭାବରେ ବୃଦ୍ଧି ପାଇଲା । ତାଙ୍କ ମତରେ, ମାନବୀୟ ଜୀବନରେ କୌଣସି ଲୋକାତୀତ ତାତ୍ପର୍ଯ୍ୟ ବା ଉଦ୍ଦେଶ୍ୟ ନାହିଁ । ବିଜ୍ଞାନବାଦୀ ଓ ସାମ୍ୟବାଦୀମାନଙ୍କର ଲୌକିକ ସ୍ୱପ୍ନ ଓ ସୁଖବାଦ ମଧ୍ୟ ତାଙ୍କ ମତରେ ଅସାର "ମଣିଷ ମୃତ୍ୟୁ ଓ ଶୂନ୍ୟତା ଅଭିମୁଖରେ ଧାବିତ ହେଉଛି । ଧର୍ମବିଶ୍ୱାସ କିମ୍ବା ସାମ୍ୟବାଦ ତଳେ ଆଶ୍ରୟ ନେଇ ସେ ନିଜକୁ ଖାଲି ପ୍ରତାରଣା କରେ । ଏହି ଚରମ ନୈରାଶ୍ୟର ସମ୍ମୁଖୀନ ହୋଇ ଯେଉଁ ମଣିଷ ପ୍ରକୃତରେ ନିଜର ଉଦ୍ଦେଶ୍ୟହୀନ ଅସ୍ତିତ୍ୱର ଗୋଟାଏ ମୂଲ୍ୟ ଅନୁସନ୍ଧାନ କରେ, ତାକୁ ସର୍ବାଗ୍ରେ ନିର୍ଭୀକ ଭାବରେ ସେହିସବୁ ପ୍ରଚଳିତ ମତବାଦର ଅଳୀକତା ସ୍ୱୀକାର କରିବାକୁ ହେବ । ନିଜ ନିଜର ବ୍ୟକ୍ତିସତ୍ତାର ସ୍ୱାତନ୍ତ୍ର୍ୟ ଓ ମାନବୀୟ ଔଚିତ୍ୟର ଅଭିବ୍ୟକ୍ତିରେ ତା ଜୀବନର ଗୋଟିଏ ମାତ୍ର ମୂଲ୍ୟବତ୍ତା ନିହିତ ରହିଛି ।" ସାର୍ତ୍ରଙ୍କର ଏହି ନେତିମୂଳକ ଜୀବନ ଦର୍ଶନର ଜନପ୍ରିୟତା ପଛରେ ଫରାସୀ ଜନସାଧାରଣଙ୍କର ବ୍ୟାପକ ହତାଶା ଓ ଅସ୍ଥିରତାର ଭାବ ଥିଲା । ତାହା ଛଡ଼ା ସେ ସକଳ ସାମାଜିକ ଓ ରାଷ୍ଟ୍ରନୈତିକ ଆଦର୍ଶ ଓ ମତବାଦ ତୀବ୍ର ଭାବରେ ସମାଲୋଚନା ଓ ନିନ୍ଦା କରୁଥିଲେ ବୋଲି ମହାଯୁଦ୍ଧର ଅବସାନ ସଙ୍ଗେ ସଙ୍ଗେ ବହୁ ଫରାସୀ ନାଗରିକ ତାଙ୍କ ଏହି ଭଙ୍ଗିବା ମନୋଭାବରେ ବିଶ୍ୱାସୀ ହୋଇଗଲେ ଓ ଅସ୍ତିବାଦୀ

ଦର୍ଶନ ସମ୍ବନ୍ଧରେ ଅନେକ ଲୋକ କିଛି ବୁଝି ନ ପାରୁଥିଲେ ସୁଦ୍ଧା, ମନର ଗ୍ଳାନି ଓ ହତାଶାର ତାଡ଼ନାରେ ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କରୁଥିଲେ । ବିଜ୍ଞାନ ଉପରେ ଯେଉଁମାନେ ଦିନେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିଥିଲେ କିମ୍ବା ସାମ୍ୟବାଦକୁ ଯେଉଁମାନେ ଦିନେ ଧର୍ମ ରୂପେ ଗ୍ରହଣ କରିଥିଲେ, ସେମାନଙ୍କ ଭିତରୁ ଅଧିକାଂଶ ବିଜ୍ଞାନ ବା ସାମ୍ୟବାଦ ସମ୍ବନ୍ଧରେ ସେମାନଙ୍କର ଆସ୍ଥା ହରାଇ ଅସ୍ତିବାଦ ଭିତରେ ସାମୟିକ ଭାବରେ ଆଶ୍ରୟ ନେଉଥିଲେ । ତାଙ୍କ ରଚନା-ବଳୀର ରୂଢ଼ତା ଓ ଅଶ୍ଳୀଳତା ଏବଂ ତାଙ୍କର ଉଗ୍ରବ୍ୟକ୍ତି ସ୍ୱାତନ୍ତ୍ର୍ୟ ଅନେକଙ୍କୁ ଅତିଷ୍ଠ କରି ପକାଉଛି । ତାଙ୍କ ଉପନ୍ୟାସ ଓ ଗଳ୍ପରେ ଜୀବନବୋଧ ବିଚିତ୍ର ରୂପେ ପ୍ରତିଷ୍ଠିତ ହୋଇଛି । କୌତୁକାନ୍ୱିତ ସଂଯମ, ସମ୍ଭୋଗମୁକ୍ତ ବୈଦଗ୍ଧ୍ୟ, ନିଃଶଙ୍କ ଜୀବନ-ଜିଜ୍ଞାସା ଏବଂ ତତୋଧିକ ନିଃଶଙ୍କୋଚ ପ୍ରକାଶର ସାମର୍ଥ୍ୟ ତାଙ୍କର ଚରିଣତ ରଚନାବଳୀକୁ ସତ୍ ସାହିତ୍ୟର ପର୍ଯ୍ୟାୟଭୁକ୍ତ କରି ପାରିଛି । ଏହି ଗ୍ରନ୍ଥରେ ସଂଯୋଜିତ 'କକ୍ଷ' ଗଳ୍ପଟି ତାର ସମ୍ୟକ୍ ପରିଚୟ ଦିଏ । ୧୯୬୪ ସାଲରେ ନୋବେଲ ପୁରସ୍କାରର ଅଧିକାରୀ ହୋଇଥିଲେ ସୁଦ୍ଧା ସେ ତାହା ଅବଲମ୍ବେ ପ୍ରତ୍ୟାଖ୍ୟାନ କରିଥିଲେ ।

ଫ୍ରାନ୍ସ ବିଳାସ ବ୍ୟସନର କେନ୍ଦ୍ରସ୍ଥଳୀ ହେଲେ ସୁଦ୍ଧା ବିଶ୍ୱ ସାହିତ୍ୟକୁ ଫରାସୀ କଥାକାରମାନଙ୍କର ଦାନ ଊଣା ନୁହେଁ । ସେହି ଅଫୁରନ୍ତ ଭଣ୍ଡାରରୁ ତିନିଜଣ ନୋବେଲ ପୁରସ୍କାରଧାରୀଙ୍କ ସମେତ ଷୋହଳ ଜଣ ବିଶିଷ୍ଟ ସାହିତ୍ୟିକଙ୍କର ନିର୍ବାଚିତ ଗଳ୍ପର ଅନୁବାଦ ଏହି ଗ୍ରନ୍ଥରେ ସନ୍ନିବେଶିତ ହୋଇଛି । ଏଥିରେ ନମୁନା କିମ୍ବା କାଳର ବିଭାଜନ ନାହିଁ । ସେସବୁ ନିଜେ ନିଜର ପ୍ରକୃଷ୍ଟ ପରିଚୟ ଦେବେ । ବିବିଧ ବୈଚିତ୍ର୍ୟ ଓ କଳା-ନୈପୁଣ୍ୟରେ ପରିପୂର୍ଣ୍ଣ ପ୍ରତ୍ୟେକଟି ଗଳ୍ପ ପାଠ କଲେ ହୃଦୟରେ ଅପୂର୍ବ ପୁଲକ ଜାତ

ହୁଏ । ଅଧୁନା କର୍ମବ୍ୟସ୍ତ ମଣିଷ ପକ୍ଷରେ ସୁଦୀର୍ଘ ଉପନ୍ୟାସ ପଠନ ସମ୍ଭବ ନୁହେଁ ବୋଲି ପୃଥିବୀର ଶ୍ରେଷ୍ଠ ଗଳ୍ପର ଆଦର କ୍ରମେ କ୍ରମେ ବୃଦ୍ଧି ପାଉଛି ।

ଅନୁବାଦ କାର୍ଯ୍ୟରେ ଶ୍ରେଷ୍ଠ ଗଳ୍ପର ପ୍ରାଣକେନ୍ଦ୍ର ନିଜସ୍ୱ ରଚନା ଭଙ୍ଗୀ ଅକ୍ଷୁର୍ଣ୍ଣ ରଖିବାକୁ ଯଥା ସମ୍ଭବ ଯତ୍ନ କରିଛି—କୌଣସି ଅଂଶ ସଂଯୋଜନ କିମ୍ବା ବିକଳନ କରି ନାହିଁ । ଫରାସୀ ସାହିତ୍ୟରେ ଅଗଣିତ ଉଚ୍ଚାଙ୍ଗ ଗଳ୍ପ ଭରପୂର ଅଛି । ତେଣୁ ସମ୍ପାଦକର ଦାୟିତ୍ୱ ଏ କ୍ଷେତ୍ରରେ ବିଶେଷ ଗୁରୁତର । ଯେଉଁ ଗଳ୍ପଗୁଡ଼ିକର ଆବେଦନ ଅନ୍ତରଙ୍ଗ ହେବାର ଯୋଗ୍ୟ ସେହିପରି କେତୋଟି ସରସ ଗଳ୍ପ ବିଶେଷ ଦକ୍ଷତା ସହକାରେ ନିର୍ବାଚିତ ଓ ଅନୂଦିତ ହୋଇଛି । ମାତ୍ର ସ୍ଥାନ ସଙ୍କୋଚନ ଦୃଷ୍ଟିରୁ ସମସ୍ତ ଶ୍ରେଣୀର ଲେଖକ ଏହି ସଂକଳନଟିରେ ସ୍ଥାନ ପାଇ ପାରିଲେ ନାହିଁ । ପରବର୍ତ୍ତି ଗ୍ରନ୍ଥରେ ସେମାନଙ୍କୁ ଯଥାଯଥ ଭାବରେ ଉପସ୍ଥାପିତ କରିବାର ବାସନା ଅବଶ୍ୟ ଅନ୍ତରରେ ପୋଷଣ କରିଛି ।

କଟକ

୫ ଡିସେମ୍ବର, ୧୯୬୪ — **ଲକ୍ଷ୍ମୀନାରାୟଣ ମହାନ୍ତି**

# ଭଲ ଲାଗି ମନ୍ଦ

"କୌଣସି ଗୋଟିଏ ଖୁବ୍ ଭଲ କାମର ଅଜୁହାତରେ ଶ୍ରେଷ୍ଠ ମନ୍ଦ କାମଟିଏ ବି ଠିକ୍ ନୁହେଁ, ଏହା ଗୋଟାଏ ମିଥ୍ୟା ନୀତି ବାକ୍ୟ ।"

ବିଖ୍ୟାତ ମହାପୁରୁଷ ସାଧୁ ଆଗଷ୍ଟାଇନଙ୍କର ଏହା ହିଁ ମତ । ସେ ସ୍ୱଲିଖିତ ଏକ ଭ୍ରମଣ କାହାଣୀରେ ତାହା ସ୍ପଷ୍ଟ ଭାବରେ ଲିପିବଦ୍ଧ କରିଛନ୍ତି—'ଭଗବାନଙ୍କ ନଗରୀ' ନାମକ ପୁସ୍ତକରେ ।

ହିପପୋରେ ଜଣେ ସାଧୁ ଥିଲେ । ସେ ଖ୍ରୀଷ୍ଟୀୟ ଭ୍ରାତୃ ସମ୍ପ୍ରଦାୟର ଜଣେ ବିଖ୍ୟାତ ପ୍ରତିଷ୍ଠାତା ଥିଲେ । ସେହି ଅଞ୍ଚଳର ସବୁ ସ୍ତ୍ରୀଲୋକଙ୍କର ମଧ୍ୟ ସେ ଧର୍ମପିତା ଥିଲେ । ଭଗବାନଙ୍କ ପ୍ରେରିତ ମହାପୁରୁଷ ବୋଲି ତାଙ୍କର ଯଥେଷ୍ଟ ସୁଖ୍ୟାତି ଥିଲା । ଭାଗ୍ୟ ଗଣନାରେ ବି ତାଙ୍କର ଅସାଧାରଣ ଜ୍ଞାନ ଥିଲା ।

ଦିନେ ଝିଅଟିଏ ତାଙ୍କ ପାଖକୁ ଆସିଲା । ତାହାର ନାମ ହେଉଛି କୋଜ ସ୍ୟାଂଟା । ସେହି ସାରା ମୁଲକରେ ଏମିତି ସୁନ୍ଦରୀ ଝିଅ ଆଉ ନ ଥିଲେ । ଝିଅଟିର ବାପ ମାଆ ଖାଣ୍ଟି ଧାର୍ମିକ । ଝିଅଟିକୁ ସେମାନେ ସେହି ରୀତିରେ ଲାଳନ ପାଳନ କରିଥିଲେ । ଅନେକ ପ୍ରେମିକ ମଧ୍ୟ ସନ୍ଧାନରେ ଆସି ତାହାର ଘର ପଟେ ଘୁରି ବୁଲିଲେ, କିନ୍ତୁ ଶିକ୍ଷା ଗୁଣରୁ ସେ କେବେ ହେଲେ ନିଜକୁ କାହାରି

ଠାରେ ହଜାଇ ଦେଇ ନାହିଁ । କେତେ ଦିନ ତଳେ କ୍ୟାପିଟନ୍ଥା ନାମକ ଜଣେ ହାଡ଼ ବାହାରିଥିବା ବୁଢ଼ା ସାଙ୍ଗରେ ତାହାର ବିବାହ ହେବ ବୋଲି ସମ୍ବନ୍ଧ ସ୍ଥିର ହୋଇଥିଲା । ସେ ଅବଶ୍ୟ ସ୍ୱିପପୋରେ ଜଣେ ବିଖ୍ୟାତ ଆଇନଜ୍ଞ । ସେ ଜଣେ ଖିଟଖିଟିଆ ରୁକ୍ଷ ଲୋକ, କଥାବାର୍ତ୍ତା ଯେ ଖାଲି ଅପ୍ରୀତିକର ସେତିକି ନୁହେଁ, ତାହା ଛଡ଼ା ସେ ଜଣେ ପକ୍‌କା ଗୃହବାଜ ଓ ଫାଟକାର । ତାହାର ମୁଖରେ ବିଷ ଓ ଅମୃତ ସମାନ ଭାବରେ ରହିଥିଲା । ସେ ଜଣେ ଭୟଙ୍କର ଈର୍ଷାପରାୟଣ ଲୋକ । ନିଜର ସ୍ତ୍ରୀର କୌଣସି ବନ୍ଧୁ ସହିତ ଭଲ ବ୍ୟବହାର କରିବା ତାହା ପକ୍ଷରେ ମରିଗଲେ ବି ଆଦୌ ସମ୍ଭବପର ନ ଥିଲା । କିନ୍ତୁ ଝିଅଟି ବିଚରା ସେହି ଲୋକଟିକୁ ଭଲ ପାଇବାକୁ ପ୍ରାଣ ପଣେ ଚେଷ୍ଟା କଲା । ସେ ତ ତାହାର ସ୍ୱାମୀ ହେବ । ସେ ମନ ପ୍ରାଣ ଢାଳି ଚେଷ୍ଟା କଲା ସତ, ମାତ୍ର କୌଣସି ମତେ ସେ ନିଜର ମନକୁ ମନାଇ ପାରିଲା ନାହିଁ ।

ସୁତରାଂ ସେ ତାହାର ସାଧୁ ବାବାଙ୍କ ପାଖକୁ ଜାଣିବାକୁ ଆସିଲା, ଏହି ବିବାହ ହେଲେ ଭଲ ହେବ କି ନା ।

ବୃଦ୍ଧ ଭବିଷ୍ୟତ୍ ବାଣୀ ଶୁଣାଇ କହିଲେ—"ତୁମର ଗୁଣ ଅନେକ ବିପଦ ଡାକି ଆଣିବ । ତୁମେ ତୁମର ସ୍ୱାମୀଙ୍କ ପ୍ରତି ତିନି ଥର ଅବିଶ୍ୱାସିନୀ ହେବ ଏବଂ ସେହି ସୂତ୍ରରେ ସାଧ୍ୱୀ ନାରୀର ମହିମା ଲାଭ କରିବ ।"

ଏହି କଥା ଶୁଣି ସରଳା କୋଞ୍ଜିପ୍ୟାଂଟା ଏକବାରେ ଭାଙ୍ଗି ପଡ଼ିଲା । କାନ୍ଦି କାନ୍ଦି ସେ ସବୁ କଥା ତାକୁ ବୁଝାଇ ଦେବାକୁ କହିଲା । କିନ୍ତୁ ଏତିକି ମାତ୍ର ସେ ଜାଣି ପାରିଲା ଯେ ତିନି ଥରର ଅର୍ଥ ଜଣେ ଲୋକ ସାଙ୍ଗରେ ନୁହେଁ, ତିନି ଥର ତିନୋଟି ବିଭିନ୍ନ ଘଟଣାରେ ।

କୋଜ ସ୍ୟାଂଟା ଏଥିରେ ପ୍ରବଳ ଆପତ୍ତି ଉଠାଇଲା, ଏପରିକି ସେ ସାଧୁ ବାବାଙ୍କୁ ଅପମାନ କରିବାକୁ ବି ପଛାଇଲା ନାହିଁ—ନା, ସେ କଦାପି ଏପରି ସାଧ୍ୱୀ ହେବାକୁ ଚାହେଁ ନା ।

କିଛି ଦିନ ପରେ ଖୁବ୍ ଆଡ଼ମ୍ବରରେ ତାହାର ବିବାହର ହୋଇଗଲା । ମୁଖ ବୁଜି ସେ ପାଖଆଖର ସବୁ ଥଟ୍ଟା ପରିହାସ ଖୁବ୍ ଲଜ୍ଜିତ ହୃଦୟରେ ସହ୍ୟ କଲା । କେତେ ଜଣ ସୁନ୍ଦର ଯୁବକଙ୍କ ସହିତ ସେ ରାତିରେ ନାଚିଲା ଏବଂ କଣ ଭାବି ଭୋରରୁ ଉଠି ପଡ଼ିଲା । ତାହାର ଚିନ୍ତାର କାରଣ ଅବଶ୍ୟ ପ୍ରଧାନତଃ ନିଜର ସ୍ୱାମୀ ନୁହେଁ, ରାଇବଲଡ଼ଜ ନାମକ ଆଉ ଜଣେ ଯୁବକ । କେତେ ବେଳୁ ଯେ ଏହି ତରୁଣଟି ତାହାର ମନ ଭିତରେ ରାଜ୍ୟ ବିସ୍ତାର କରି ସାରିଲାଣି, ତାହା ସେ ନିଜେ ବି ଜାଣି ପାରିଲା ନାହିଁ । ରାଇବଲଡ଼ଜ ଯେମିତି ସାକ୍ଷାତ କାମଦେବଙ୍କର ପ୍ରତିମୂର୍ତ୍ତି । ତାହାର ରୂପ ପ୍ରଣୟ-ପ୍ରବୃତ୍ତିତ ସରଳତାରେ ପରିପୂର୍ଣ୍ଣ—ସେ ଜଣେ ଲୀଳା-ଚତୁର ପ୍ରେମିକ ଯୁବକ । ସେ କାଞ୍ଚନ ଖିଆଲି ସତ, କିନ୍ତୁ ତାହା ନିଜର ଦରିଦ୍ର ବନ୍ଧୁମାନଙ୍କ ମଧ୍ୟରେ ସୀମାବଦ୍ଧ । ସମଗ୍ର ହ୍ୱିପପୋରେ ସେ ହେଉଛନ୍ତି ବକ୍ଷର ମାଣିକ । ତାହାର ପାଇଁ ସହରର ସବୁ ସ୍ତ୍ରୀଲୋକଙ୍କ ଭିତରେ ଲାଗି ରହିଥିଲା କଳି-ତକରାଳ ଓ ମନୋମାଳିନ୍ୟ । ହଠାତ୍ ରାଇବଲଡ଼ଜ କାହାର କାହାର ପ୍ରେମରେ ପଡ଼ି ଯାଉଥିଲା, କେତେକ ପରିମାଣରେ ନିଜର ଖିଆଲ ବଶତଃ । ଏତେବେଳେ ସେ କୋଜ ସ୍ୟାଂଟାକୁ ପ୍ରାଣ ଦେଇ ଭଲ ପାଇବାକୁ ଲାଗିଲା ଏବଂ ଜଣେ ଦୁର୍ଲଭ ନାରୀ ବୋଲି ସେ ତା ପାଇଁ କ୍ରମେ କ୍ରମେ ପାଗଳ ହୋଇଗଲା ।

ଜଣେ ବୁଦ୍ଧିମାନ ବ୍ୟକ୍ତି ଭଳି ସେ ପ୍ରଥମେ ନାନା ଦିଗରୁ କୋଜ ସ୍ୟାଂଟାର ସ୍ୱାମୀ ସହିତ ଭାବ ଜମାଇବାକୁ ଚେଷ୍ଟା କଲା ।

ସେ ତାହାର ଚେହେରା ଓ ତୀକ୍ଷ୍ଣ ବୁଦ୍ଧିର ଖୁବ୍ ପ୍ରଶଂସା କଲା, ତାଆସ ଖେଳରେ ବସି ସେ ଇଚ୍ଛା କରି ବରାବର ହାରିଲା ଏବଂ ନିତି ବିଶ୍ୱସ୍ତ ସୂତ୍ରରେ ତାକୁ ନିଜର ଗୋପନ କଥାସବୁ କହିଯିବାକୁ ଲାଗିଲା । କୋଜି ସ୍ୟାଂଠା ମଧ୍ୟ ଗାଇବଲଡଜ ପରି ଏମିତି ସୁନ୍ଦର ପୁରୁଷ କେବେ ଦେଖି ନ ଥିଲା । ସେ ନିଜେ ସଚେତନ ଭାବରେ ଏତେ କଥା ବୁଝି ନ ପାରିଥିଲେ ବି ତାହାର ପ୍ରଣୟରେ ବୁଡ଼ି ରହିଲା । ସେ ନିଜେ କିଛି ବୁଝି ନ ଥିଲା ସତ, କିନ୍ତୁ ତାହାର ସ୍ୱାମୀ ସବୁ କଥା ବୁଝି ପାରିଥିଲା । ସ୍ୱାମୀଟି ବୁଢ଼ା ହେଲେ ସୁଦ୍ଧା ତାହାର ମନ ଭିତରେ ସାଙ୍ଘାତିକ ସନ୍ଦେହ ରହିଥିଲା — ତାହାହେଲେ ତ ଖାଲି ତାହାର ପାଇଁ ସେ ଆସୁ ନ ଥିଲା ! କୌଣସି ଅଜୁହାତ ବାହାର କରି ସେ ଏଥର ଯୁବକଟି ସହିତ ଝଗଡ଼ା ଲଗାଇଲା ଏବଂ ତାକୁ ନିଜର ଘରର ସୀମା ମାଡ଼ିବାକୁ ବି ନିଷେଧ କରିଦେଲା ।

କୋଜି ସ୍ୟାଂଠା ଖୁବ୍ ଦୁଃଖିତ ହେଲା, କିନ୍ତୁ ମୁଖ ଖୋଲି କିଛି କହିବାକୁ ତାହାର ସାହସ ହେଲା ନାହିଁ । ଗାଇବଲଡଜ ସାମନାରେ ଠିଆ ହେଲା ଗୋଟାଏ ବଡ଼ ବାଧାର ପାହାଡ଼ । କିନ୍ତୁ କ୍ରମେ କ୍ରମେ ତାହାର କାମନା ଅତ୍ୟନ୍ତ ତୀବ୍ର ହୋଇ ପଡ଼ିଲା । ସବୁ ବାଧା ବିଘ୍ନ ଲଙ୍ଘନ କରି ତାକୁ ଟିକିଏ ଦେଖିବା ଲାଗି ସେ ଅଧୀର ହୋଇ ପଡ଼ିଲା । ସାଧୁ, ଫକିର, ଫେରିବାଲା, ବହୁରୂପୀ—କେତେ ପ୍ରକାରର ବେଶ ହୋଇ ଲୁଚି ଲୁଚି ସେ ତା ପାଖକୁ ଯିବାକୁ ଲାଗିଲା । ତଥାପି ତାହାର ପ୍ରିୟାର ମନରେ କୌଣସି ନିର୍ଦ୍ଦିଷ୍ଟ ପରିବର୍ତ୍ତନ ଆଣି ପାରିଲା ନାହିଁ । ଯଦି କୋଜି ସ୍ୟାଂଠା ତାହାର ପ୍ରଣୟୀ ସହିତ ହାତ ମିଳାଇ ଚାଲୁଥାନ୍ତା, ତାହାହେଲେ ସେମାନେ ଏମିତି ବ୍ୟବସ୍ଥା ବି କରି ପାରିଥାନ୍ତେ ଯେ ସ୍ୱାମୀର ସନ୍ଦେହ କରିବାର କୌଣସି କଥା ଉଠି ପାରି ନ ଥାନ୍ତା । ଝିଅଟିର ମନ

ତା ପ୍ରାଣ ବିରୁଦ୍ଧରେ ଖାଲି ମଥା ପିଟି ମରିବାକୁ ଲାଗିଲା । ମାତ୍ର ବାହାରୁ ତାହା କେହି ବୁଝିବାର ଜୋ ନ ଥିଲା । ତାହାର ମୁଖ ଉପରେ ଖାଲି କେମିତି ଗୋଟାଏ ମଳିନ ଛାୟା ଦେଖା ଯାଉଥିଲା । ତାହାର ସ୍ୱାମୀ ତାକୁ ଜଣେ ପାପିଷ୍ଠା ରମଣୀ ବୋଲି ମନେ କରୁଥିଲା ।

ବୁଢ଼ା ସ୍ୱାମୀଟି ଅତ୍ୟନ୍ତ ବଦମେଜାଜି ଥିଲା । ତାହାର ସ୍ତ୍ରୀର ସଚ୍ଚରିତ୍ର ଉପରେ ନିଜର ସମ୍ମାନ ପଦ୍ମ ପତ୍ର ଉପରେ ନୀର ଭଳି ଟଳଟଳ ହେଉଥିଲା । ତାହା ହୃଦୟଙ୍ଗମ କରି ସେ ସ୍ତ୍ରୀକୁ ଖୁବ୍ ଅପମାନ ଦେଲା ଏବଂ ନିଜର ଇଚ୍ଛା ଅନୁଯାୟୀ ଶାସ୍ତି ବି ଦେଲା । ତାହାର ଅପରାଧ ହେଉଛି, କାହାର ଦୃଷ୍ଟିରେ କୋଉ ସ୍ୟାଁଟା ସୁନ୍ଦର ଦିଶିଛି । ସେତେବେଳେ ସେହି ନାରୀଟିର ଅବସ୍ଥା କଣ, ଥରେ ଚିନ୍ତା କରି ଦେଖ ତ ! ଏକତରେ ମିଥ୍ୟା ବଦନାମ, ତା ଉପରେ ପୁଣି ସ୍ୱାମୀର ଯଥେଚ୍ଛ ଅତ୍ୟାଚାର—ଅଥଚ ଏହି ସ୍ୱାମୀ ନିକଟରେ ସେ ଏକାନ୍ତ ବିଶ୍ୱସ୍ତ । ଅନ୍ୟ ଦିଗରେ ପ୍ରଣୟର ତୁଷାନଳରେ ସେ ନିଜ ସହିତ ଦିନ ପରେ ଦିନ ଯୁଦ୍ଧ କରି ମରୁଛି ।

ଯଦି ତାହାର ପ୍ରଣୟୀ ତାହା ପାଖକୁ ନ ଆସେ, ତାହାହେଲେ ତାହାର ସ୍ୱାମୀ ମଧ୍ୟ ହୁଏତ ଏମିତି ବ୍ୟବହାର କରିବ ନାହିଁ, ଏବଂ ତାହା ଛଡ଼ା ପ୍ରଣୟର ପ୍ରଧୂମିତ ଶିଖା ବି ଧୀରେ ଧୀରେ ଲିଭିଯିବ । ଏହା ଭାବି ସେ ଦମ୍ଭ ଧରି ଖଣ୍ଡିଏ ଚିଠି ଲେଖିଲା ।

"ଆପଣଙ୍କ ଶୁଭ ବୁଦ୍ଧିକୁ ଲକ୍ଷ୍ୟ କରି ଲେଖୁଛି, ଆପଣ ମୋର ଦୁଃଖରେ ଆଉ ଇନ୍ଧନ ଯୋଗାଇବେ ନାହିଁ । ଆପଣଙ୍କର ପ୍ରେମ ହେତୁ ମୋର ସ୍ୱାମୀଙ୍କର ସନ୍ଦେହ ଜାତ ହୋଇଛି ଏବଂ ଦିନକୁ ଦିନ ତାଙ୍କର ଦୁର୍ବ୍ୟବହାର ବଢ଼ିବାରେ ଲାଗିଛି । କିନ୍ତୁ

ମୁଁ ଯେ ତାଙ୍କୁ ଶରୀର ଦାନ ପାଇଁ ମନା କରୁଛି । ମୋ ଜୀବନରେ ଏହା ହିଁ ହେଉଛି ଅଗ୍ନି ପରୀକ୍ଷା ! ଦୟା କରି ଆପଣ ଆଜି ଏଠାକୁ ଆସିବେ ନାହିଁ । ଯେଉଁ ପ୍ରେମ ଆପଣଙ୍କୁ ଅସୁଖୀ କରି ପକାଉଛି —ଏବଂ ମୋତେ ମଧ୍ୟ—ସେହି ପ୍ରେମକୁ ଲକ୍ଷ୍ୟ କରି ମୁଁ ଆପଣଙ୍କ ନିକଟରେ ପ୍ରାର୍ଥନା କରୁଛି ।"

ସରଳ ହୃଦୟା କୋଜ ସ୍ୟାଂଟା ଭାବି ପାରିଲା ନାହିଁ ତା ଚିଠିର ଫଳ କି ଆକାର ଧାରଣ କରିବ । ସଚ୍ଚୋତ୍ତ ପ୍ରଣୋଦିତ ହେଲେ ସୁଦ୍ଧା ଚିଠିଟି ଯେମିତି ଅଭାବ କରୁଣ ଓ ବ୍ୟଥାତୁର ହୋଇ ଯାଇଥିଲା । ତେଣୁ ଫଳ ହେଲା ବିପରୀତ । ନାରୀଟି ତାହା ବୁଝି ପାରି ନ ଥିଲା । ଯୁବକଟିର ବକ୍ଷରେ ଦୁଇ ଗୁଣ ବେଗରେ କାମନାର ନିଆଁ ଜଳି ଉଠିଲା । ତାହାର ପ୍ରବୃତ୍ତିମାନଙ୍କୁ ଥରେ ମାତ୍ର ପ୍ରାଣ ଭରି ଦେଖିବାର ଚେଷ୍ଟାରେ ଯଦି ତାହାର ମୃତ୍ୟୁ ହୁଏ, ବରଂ ତା ପକ୍ଷରେ ତାହା ହିଁ ହେଉଛି ଶ୍ରେଷ୍ଠ ପୁରସ୍କାର ।

କ୍ୟାପିଟେନ୍ ଅତିଶୟ ଧୂର୍ତ୍ତ ଥିଲା । ସବୁ ଆଡ଼େ ତାହାର କଡ଼ା ନଜର ଥିଲା । ତେଣୁ ସେ କେତେ ଜଣ ପକ୍କା ଗୋଇନ୍ଦା ରଖିଥିଲା । ଦିନେ ସେ ଜାଣି ପାରିଲା—ରାଇବଲଡଜ ଫକୀର ବେଶରେ ଅନୁଗ୍ରହ ଲାଭ ଆଶାରେ ତା ସ୍ତ୍ରୀ ପାଖକୁ ଆସୁଛି । କ୍ୟାପିଟେନ୍ ଭାବିଲା—ଏଥର ଉପାୟ ? ସାଧୁର ସତ୍କାର ଯେ ସତ ସ୍ୱାମୀ ପକ୍ଷରେ ସବୁ ଠାରୁ ବିପଜ୍ଜନକ !

ରାଇବଲଡଜଙ୍କୁ ମାରି ଘଉଡ଼ାଇଦେବା ପାଇଁ ସେ ଚାକର ବାକରଙ୍କୁ ନିର୍ଦ୍ଦେଶ ଦେଲା । ଯୁବକଟି ଘରେ ପ୍ରବେଶ କଲା ମାତ୍ରେ ସମସ୍ତେ ତାକୁ ମାଡ଼ିବସି ସାଦର ଅଭ୍ୟର୍ଥନା ଜଣାଇଲେ । ବିଚରା ଖାଲି ଚିତ୍କାର କରୁଥିଲା, ସାଧୁ ଫକୀରମାନଙ୍କ ଉପରେ ଏପରି ଅତ୍ୟାଚାର କରୁଛ କାହିଁକି ? କିନ୍ତୁ କିଏ କାହା କଥା ଶୁଣୁଛି ? ସେ ଏତେ

ମାଡ଼ ଖାଇଲା ଯେ ମୁଣ୍ଡରେ ଗୋଟାଏ ଆଘାତର ଫଳରେ ଦିନ ସାତଟା ପରେ ସେ ମରିଗଲା । ସହରର ସବୁ ସ୍ତ୍ରୀମାନେ ତାହା ପାଇଁ ଆଖିରୁ ଲୁହ ଗଡ଼ାଇଲେ । କୋଜ ସ୍ୟାଂଟା ବି କୌଣସି ମତେ ତାହାର ମନକୁ ଶାନ୍ତ ରଖି ପାରିଲା ନାହିଁ । ଏପରିକି କ୍ୟାପିଟୋ। ବି ଦୁଃଖିତ ହେଲା—ତାହା ଅବଶ୍ୟ ଅନ୍ୟ କାରଣରୁ । ଏହି ସୂତ୍ରରେ ସେ ଗୋଟାଏ ଅପ୍ରୀତିକର ଘଟଣାରେ ଜଡ଼ିତ ହୋଇଗଲା ।

ବର୍ତ୍ତୁରିକ ଏସିଦ୍ଧିନାସ ଗାଇବଲଡିଜର ଆତ୍ମୀୟ ଥିଲେ । ତେଣୁ ସେ ସ୍ଥିର କଲେ, ଏଥର ଏମିତି ବିଚାର କରିବେ ଯେ ଦେଶ ସାରା ସବୁ ଲୋକେ ଏକାବେଳେ ସ୍ତମ୍ଭିତ ହୋଇଯିବେ । ସମଗ୍ର ଦେଶରେ କ୍ୟାପିଟୋ ଭଳି ଧୂର୍ତ୍ତ ଓକିଲ ଆଉ ନ ଥିଲେ । ଏହି ବର୍ତ୍ତୁରିକଙ୍କ ସହିତ ତାହାର ବି ଆଗରୁ ଝଗଡ଼ା ହୋଇଥିଲା । ଏଥର ସେ ତାକୁ ଯେତେବେଳେ ହାତରେ ପାଇଛନ୍ତି, ତାକୁ ଫାଶିକାଠରେ ଝୁଲାଇ ପାରିଲେ ଯାଇ ନିଜର ମନସ୍କାମନା ପୂର୍ଣ୍ଣ ହେବ ।

କୋଜ ସ୍ୟାଂଟାର ଆଖି ଆଗରେ ନିହତ ହେଲା ତାହାର ପ୍ରଣୟୀ, ଆଉ ବର୍ତ୍ତମାନ ଆପଣାର ସ୍ୱାମୀ ବି ଫାଶିକାଠରେ ଝୁଲିବାକୁ ଯାଉଛି । ଅପରାଧ ହେଉଛି ତାହାର ସତୀତ୍ୱ ! ଯଦି ସେ ଗାଇବଲଡିଜ ପ୍ରତି ଟିକିଏ ସୁଦୃଷ୍ଟି ରଖିଥାନ୍ତା, ତାହାହେଲେ ନିଜର ସ୍ୱାମୀକୁ ବୁଦ୍ଧି ବଳରେ ଫାଙ୍କି ଦେଇ ହୋଇଥାନ୍ତା ।

ଏହିପରି ଭାବରେ ଫଳିଗଲା ଭବିଷ୍ୟତ୍ ବାଣୀର ପ୍ରଥମ ଭାଗଟା । କୋଜ ସ୍ୟାଂଟାର ଭୟଙ୍କର ଭାବନା ହେଲା—ତାହାହେଲେ ଶେଷ ଭାଗଟା ବି ସତ୍ୟ ହେବାକୁ ଯାଉଛି ! ଚିନ୍ତା କରି କରି ସେ ଶେଷରେ ବୁଝି ପାରିଲା— ନିଯୁକ୍ତିରେ ଗତି ଅଳଙ୍ଘମାୟୁ ! ତେଣୁ

ସେ ନିଜକୁ ଝିଅଟାଙ୍କ ହାତରେ ଛାଡ଼ିଦେଲା ଏବଂ ବିଚିତ୍ର ଉପାୟରେ ଘରର ରାଜ୍ୟରେ ଆସି ପହଞ୍ଚିଲା ।

ବିଗ୍ରରିକ ଜଣକ ଥିଲେ ଲୋଭୀ ଓ କାମୁକ— ଭ୍ରଷ୍ଟ ଚରିତ୍ର । ସେ ଆଦୌ ଆଇନର ଧାର ଧାରନ୍ତି ନାହିଁ । ସେ ଖୁବ୍ ବଦମିଜାଜୀ ଉପ୍ରଙ୍କର ଲୋକ ଥିଲେ । ସୁତରାଂ ହାପଘୋରରେ ପ୍ରତ୍ୟେକ ବାସୀ ହିଁ ତାଙ୍କ ସହିତ କିଛି ନା କିଛି ସମ୍ବନ୍ଧ ରଖିଥିଲେ ନିଜ ନିଜର ଅମଙ୍ଗଳ ଆଶଙ୍କାରେ ।

ବିଗ୍ରରିକ କୋଜ ସ୍ୟାଂଟାଙ୍କୁ ଡକାଇ ପଠାଇଲେ । ସେ ଛଳଛଳ ନୟନରେ ଆସି ଉପସ୍ଥିତ ହେଲା । ତେଣୁ ସେ ଆହୁରି ସୁନ୍ଦରୀ ଦିଶିଲା ।

"ଆପଣଙ୍କର ସ୍ୱାମୀ ଫାଶି ପାଇବାକୁ ଯାଉଛନ୍ତି । କିନ୍ତୁ ଆପଣ ଇଚ୍ଛା କଲେ, ତାଙ୍କୁ ବଞ୍ଚାଇ ପାରିବେ ।"

"ସେଥିପାଇଁ ମୁଁ ପ୍ରାଣ ଦେବାକୁ ପ୍ରସ୍ତୁତ ଅଛି ।"

"କିନ୍ତୁ ମୁଁ ତ ପ୍ରାଣ ଚାହେଁ ନା ।"

"ତାହାହେଲେ ମୋତେ କଣ କରିବାକୁ ହେବ ?"

"ଗୋଟିଏ ରାତି ପାଇଁ ମୁଁ ଆପଣଙ୍କୁ ଚାହେଁ ।"

"କିନ୍ତୁ ତାହା ତ ମୋ ହାତରେ ନାହିଁ । ରାତିରେ ମୁଁ ମୋ ସ୍ୱାମୀଙ୍କର ଅଧୀନ । ମୁଁ ମୋ ମୁଣ୍ଡ ଦେଇପାରେ, କିନ୍ତୁ ଇଜ୍ଜତ ଦେଇ ପାରିବି ନାହିଁ ।"

"ଧରନ୍ତୁ, ଯଦି ଆପଣଙ୍କର ସ୍ୱାମୀ ରାଜି ହୁଏ ?"

"ସେ ମାଲିକ । ଆପଣାର ଜିନିଷ ସେ ଯେମିତି ଖୁସି ବ୍ୟବହାର କରି ପାରନ୍ତି । କିନ୍ତୁ ମୁଁ ମୋ ସ୍ୱାମୀଙ୍କୁ ଜାଣେ । ସେ କୌଣସି ମତେ ଏଥିରେ ରାଜି ହେବେ ନାହିଁ । ବରଂ ସେ ଫାଶି ପାଇବେ, କିନ୍ତୁ ମୋ ଦେହରେ କେହି ହାତ ଦେବ ସେ ତାହା

କଦାପି ସହ୍ୟ କରିବେ ନାହିଁ ।"

"ଆଚ୍ଛା, ସେ କଥା ପରେ ଦେଖାଯିବ !" ବାଦୁରକ ରାଗି ଯାଇ କହିଲେ ।

ତତ୍କ୍ଷଣାତ୍ ଆସାମୀକୁ ତାଙ୍କ ସମ୍ମୁଖକୁ ଅଣାଗଲା । ସେ ଫାଶିକାଠରେ ଝୁଲିବାକୁ ଚାହେଁ, ନା ଭ୍ରଷ୍ଟା ନାରୀର ସ୍ୱାମୀ ହେବାକୁ ଚାହେଁ ? ଦ୍ୱିଧା ଦ୍ୱନ୍ଦ୍ୱର ଆଉ କୌଣସି ପ୍ରଶସ୍ତ କ୍ଷେତ୍ର ତା ଆଗରେ ଖୋଲା ନ ଥିଲା ।

ବୁଢ଼ା ଅବଶ୍ୟ ଗରରାଜି ହେଉଥିଲା । କିନ୍ତୁ ଶେଷ ଅବଧି ଏହିପରି ଅବସ୍ଥାରେ ସମସ୍ତଙ୍କର ଯାହା ହୁଏ, ତାହା ହିଁ ହେଲା ଏ କ୍ଷେତ୍ରରେ । ସ୍ତ୍ରୀ ଏହି ପ୍ରଥମ ଥର ପାଇଁ ନିଜ ଗୁଣରେ ତାହାର ସ୍ୱାମୀକୁ ବଞ୍ଚାଇଲା ।

ଠିକ୍ ସେହି ଦିନ କୋଜ ସ୍ୟାଂଗ୍‌ର ପୁଅ ସାଂଘାତିକ ଭାବରେ ବେମାର ପଡ଼ିଲା । ହ୍ୱିପପୋର କୌଣସି ଡାକ୍ତର ତାକୁ ଆରୋଗ୍ୟ କରି ପାରିଲେ ନାହିଁ । ଜଣେ ମାତ୍ର ଡାକ୍ତର ଅଛନ୍ତି, ଯେ ତାକୁ ଏହି ବିପଦରୁ ଉଦ୍ଧାର କରି ପାରନ୍ତି । ସେ ଥାଆନ୍ତି ଆକାଲରେ, ହ୍ୱିପପୋ ଠାରୁ କେତେ ମାଇଲ ଦୂରରେ । ସେହି ସମୟରେ ନିୟମ ଥିଲା, କୌଣସି ଡାକ୍ତର ନିଜ ସହରର ସୀମା ବାହାରେ ବ୍ୟବସାୟ କରି ପାରିବେ ନାହିଁ । ଅନ୍ୟ କୌଣସି ଉପାୟ ନ ଦେଖି କୋଜ ସ୍ୟାଂଗ୍ ନିଜେ ସେହି ସହର ଅଭିମୁଖରେ ଚାଲିଲା ସାଙ୍ଗରେ ଆପଣାର ଗେହ୍ଲା ଭାଇଟିକୁ ନେଇ ।

ବାଟରେ ଦସ୍ୟୁମାନେ ତାକୁ ଆକ୍ରମଣ କଲେ । ଦସ୍ୟୁ ସର୍ଦ୍ଦାରର ଆଖିରେ କୋଜ ସ୍ୟାଂଗ୍ ଅତି ସୁନ୍ଦର ଦିଶିଲା । ଦସ୍ୟୁମାନେ ତା ଭାଇକୁ ଖୁନ କରିବାକୁ ବସିଲେ । ଦସ୍ୟୁ ସର୍ଦ୍ଦାର

କୋଜ ସ୍ୟାଂଟା ପାଖକୁ ଆସି କହିଲା, ଯଦି ସେ ତାକୁ ଟିକିଏ ଅନୁଗ୍ରହ କରେ ତାହାହେଲେ ତା ଭାଇର ପ୍ରାଣ ରକ୍ଷା ହୋଇ ପାରିବ । ବେଶି କିଛି ନୁହେଁ, ଟିକିଏ ମାତ୍ର ଅନୁଗ୍ରହ ! ରାଜି ହୋଇଗଲେ ଏଠଣି ସବୁ ଠିକ୍ ହୋଇଯିବ । ଯେଉଁ ସ୍ୱାମୀକୁ ସେ ଭଲ ପାଏ ନାହିଁ, କୋଜ ସ୍ୟାଂଟା ତାହାର ଜୀବନ ରକ୍ଷା କରି ଆସିଛି, ଆଉ ବର୍ତ୍ତମାନ ତାହାର ପ୍ରାଣର ଭାଇକୁ ସେ ହରାଇବ ! ଖାଲି ଗୃହଆଡ଼କୁ ଗୃହିଁ ରହି ଦେଖିବ ? ବିଶେଷତଃ ନିଜ ପୁଅର ଅବସ୍ଥା ବି ଗୁରୁତର । ଗୋଟିଏ ମୁହୂର୍ତ୍ତ ବି ବର୍ତ୍ତମାନ ବିଳମ୍ବ କରିବା ଉଚିତ ନୁହେଁ । ସୁତରାଂ ସେ ନିଜକୁ ଭଗବାନଙ୍କ ହାତରେ ସମର୍ପଣ କରିଦେଲା । ତାହାର କର୍ତ୍ତବ୍ୟ ସେ ସମାପନ କଲା । ଏହା ହେଲା ଦ୍ୱିତୀୟ ଥର ।

ସେହି ଦିନ ସେ ଆକଲାର ଡାକ୍ତରଙ୍କ ପାଖରେ ଆସି ପହଞ୍ଚିଲା । ଏହି ଡାକ୍ତର ଜଣକ ଥିଲେ ଟିକିଏ ଉଚ୍ଚ ଧରଣର । ଟିକିଏ ସର୍ଦ୍ଦି ହେଲେ ବି ସେ ଝିଅମାନଙ୍କର ଗୁଡ଼ି ପରୀକ୍ଷା ନ କଲେ ଚଳେ ନାହିଁ—ଅର୍ଥାତ୍ ଯେତେବେଳେ କୌଣସି ବେମାର ନ ଥାଏ ! ସହରର ଅନେକଙ୍କର ସେ ବିଶ୍ୱସ୍ତ ବନ୍ଧୁ ଏବଂ ଅନେକ ତରୁଣୀଙ୍କର ପ୍ରଣୟୀ ! ସେ ଖୁବ୍ ଭଦ୍ର, ବିନୟୀ ଓ ଦରଦୀ ବ୍ୟକ୍ତି ଥିଲେ । ସେ ଡାକ୍ତର ସଂଘର ସଭାପତି ଥିଲେ । ବେଳେ ବେଳେ ଲୋକେ ବି ତାଙ୍କୁ ଅଙ୍କା ନ କରି ରହୁ ନ ଥିଲେ । କୋଜ ସ୍ୟାଂଟା ନିଜ ପୁଅର ରୋଗ ବିଷୟରେ ଡାକ୍ତରଙ୍କୁ ବୁଝାଇ କହିଲା ଏବଂ ତାଙ୍କ ହାତରେ ଖଣ୍ଡିଏ ହଜାରେ ଟଙ୍କାର ନୋଟ ଦେଲା ।

ଡାକ୍ତର ଦମ୍ଭ ଧରି କହିବାକୁ ଲାଗିଲେ, "କିନ୍ତୁ ଦେଖନ୍ତୁ, ପରିଶ୍ରମର ବିନିମୟରେ ମୋର ଅର୍ଥ ହିଁ କାମ୍ୟ ନୁହେଁ । ମୋର

ନିଜର ସମସ୍ତ ଧନ ସମ୍ପତ୍ତି ଆପଣଙ୍କ ପାଦ ତଳେ ଅଜାଡ଼ି ଦେଇ ପାରେ, ଯଦି ଆପଣ ନିଜେ ଗୋଟାଏ ଆରୋଗ୍ୟର ବ୍ୟବସ୍ଥା କରନ୍ତି । ଆପଣଙ୍କୁ ଦେଖି ମୋ ଭିତରେ ଯେଉଁ ଉନ୍ମତ୍ତତା ଜାତ ହୋଇଛି, ତାହା ଆପଣ ଦୂର କରି ଦିଅନ୍ତୁ । ମୁଁ ବି ଆପଣଙ୍କ ପୁଅର ବେମାରି ଅଚିରେ ଭଲ କରିଦେବି ।”

ଏପରି ଦାବୀ ଟିକିଏ ମାତ୍ରାଧିକ ସତ ! କିନ୍ତୁ ନିୟତି ତାଙ୍କୁ ବିଚିତ୍ର ଅବସ୍ଥା ଭିତରକୁ ଠେଲି ପଠାଇ ଦେଇଛି । ଡାକ୍ତର ଜଣକ ଏକଜିଦିଆ ଲୋକ – ତାଙ୍କର ଇପ୍‌ସିତ ବସ୍ତୁ ଛଡ଼ା ସେ ଆଉ କିଛି ଗ୍ରହଣ କରିବେ ନାହିଁ ।

କୋଜି ସ୍ୟାଂଟାର ସ୍ୱାମୀ ବି ଏକ୍ଷଣି ପାଖରେ ନାହିଁ ଯେ ସେ ତାଙ୍କୁ ଥରେ ଏ କଥା ପଚାରି ବୁଝିବ । କିନ୍ତୁ ଏଣେ କିପରି ବା ସେ ନିଜର ପୁଅକୁ, ତାହାର ନୟନ ମଣିକୁ ମରଣର ମୁହଁକୁ ଜାଣୁ ଜାଣୁ ଠେଲି ଦେବ ? ନିଜେ ବା ଟିକିଏ ଚେଷ୍ଟା ସେ କାହିଁକି ନ କରିବ ? ଆଦର୍ଶ ଭଉଣୀ ପରି ସେ ଜଣେ ଆଦର୍ଶ ଜନନୀ ହେବାକୁ ଚାହେଁ । ନିର୍ଦ୍ଧାରିତ ଦାବୀର ମୂଲ୍ୟରେ ସେ ତା ପୁଅର ରୋଗମୁକ୍ତି ଲାଭ କଲା । ଏହି ଶେଷ ଥର ।

ସେ ଭାଇକୁ ସାଙ୍ଗରେ ଧରି ହ୍ୱିପପୋକୁ ଫେରି ଆସିଲା । ବାଟ ସାରା ତାହାର ଭାଇଟି ତା ଭଉଣୀର ଅପୂର୍ବ ସାହସର ପ୍ରଶଂସା କରିବାକୁ ଲାଗିଲା । କାରଣ ତା ନିଜର ଜୀବନ ସେ ବି ବଞ୍ଚାଇଛି ।

ଦିନେ କୋଜି ସ୍ୟାଂଟା ଅତ୍ୟଧିକ ସାଧ୍ୱୀ ହେବାକୁ ଯିବା ଫଳରେ ଡାକି ଆଣିଥିଲା ନିଜ ପ୍ରଣୟୀର ମୃତ୍ୟୁ, ସ୍ୱାମୀକୁ ବି ପ୍ରାୟ ହରାଇବାକୁ ବସିଥିଲା । କିନ୍ତୁ ବିମୀତ ହୋଇ ସେ ତାହାର ଭାଇ ଓ ପୁଅର ପ୍ରାଣ ବଞ୍ଚାଇଛି । ଏହି ନାରୀଟି ଆପଣା ସମାଜ

ଭିତରେ ପାଇଲା ଅସୀମ ସମ୍ମାନ । ମୃତ୍ୟୁ ପରେ ତାକୁ ସାଧ୍ୱୀ ସମ୍ମାନରେ ସମ୍ମାନିତ କରାଗଲା । କାରଣ, ଦେହ ନିର୍ଯ୍ୟାତନାର ଭିତର ଦେଇ ସେ ତା ପ୍ରିୟ ପରିବାର ଭିତରେ ମଙ୍ଗଳ ପ୍ରତିଷ୍ଠା କରିଥିଲା ।

ସମସ୍ତେ ମିଳି ମିଶି ତାହାର ସ୍ମୃତି ସ୍ତମ୍ଭ ନିର୍ମାଣ କଲେ, ଏବଂ ସେଥିରେ ଲିପିବଦ୍ଧ ହେଲା—

"ମହାନ ମଙ୍ଗଳ ଉଦ୍ଦେଶ୍ୟରେ ଗୋଟାଏ ଶ୍ରେଷ୍ଠ ଅନ୍ୟାୟ ।"

— ଆରନ୍ୟେଷ୍ଟ ଦ୍ୟ ଭଲ୍‌ଟେୟାର

# ଚିଠି

ମହାଶୟ !

ଏଣୁ ତେଣୁ କଥା ରଚନା କରିବାରେ ଯେଉଁମାନେ ଆନନ୍ଦ ପାଆନ୍ତି, ମୁଁ ସେ ଧରଣର ଲୋକ ଆଦୌ ନୁହେଁ । କୌଣସି ସମ୍ବାଦ ଉପରେ ଆଲୋଚନା କରିବାକୁ ଇଚ୍ଛା କଲେ, ସାମରିକ ବା ରାଜନୈତିକ ବିଷୟ ହିଁ ମୋତେ ସବୁ ଠାରୁ ଭଲ ଲାଗେ । କାରଣ, ଏହିସବୁ ବିଷୟ ଭିତରେ କିଛି ନା କିଛି ସାର ବସ୍ତୁ ନିହିତ ଥାଏ । ତଥାପି ସହରର କିଛି ଘଟଣା ଓ କାହାଣୀ ଆପଣଙ୍କୁ ଶୁଣାଇବି ବୋଲି ଯେଉଁ ପ୍ରତିଶ୍ରୁତି ଦେଇଥିଲି, ତାହା ରକ୍ଷା କରିବା ପାଇଁ ମୁଁ ଏ ଚିଠି ଖଣ୍ଡିକ ଆପଣଙ୍କୁ ଲେଖୁଛି । ଯେଉଁ କାହାଣୀଟି ମୁଁ ଆଜି ଆପଣଙ୍କୁ ଶୁଣାଇବାକୁ ଯାଉଛି, ତାହା ଶୁଣି ଆପଣଙ୍କ ମନ ଭିତରେ କି ଭାବ ଜାତ ହେଲା, ତାହା ଜାଣିବା ମୋର ଦରକାର ନାହିଁ । ଖାଲି ଏତିକି ଆପଣଙ୍କୁ ଜଣାଇବା ପ୍ରୟୋଜନ ମନେ କରୁଛି ଯେ, ଯେଉଁ ଘଟଣାଟି ଆପଣଙ୍କୁ ଆଜି ଶୁଣାଉଛି, ତାହା ନଗ୍ନ ସତ୍ୟ ।

ଫ୍ଲାଲସିଦୋର ଓ ମୋ ଭିତରେ କି ପ୍ରକାର ବନ୍ଧୁତା ଅଛି, ସେ କଥା ଅବଶ୍ୟ ଆପଣଙ୍କୁ ଜଣା ଅଛି । ସୁତରାଂ ସେ ସମ୍ବନ୍ଧ

ବିଶ୍ୱାସରେ ତାଙ୍କ ମନର କିଛି ଗୋପନ କଥା ମୋତେ କହି ଥାଆନ୍ତି ଆପଣ ସେଥିରେ ନିଶ୍ଚୟ ଢଳେ ମାତ୍ର ବିସ୍ମିତ ହେବେ ନାହିଁ; କିନ୍ତୁ ମୁଁ ବିସ୍ମିତ ହୋଇଥିଲି, ଯେଉଁ ଦିନ ସେ ତାଙ୍କ ଈର୍ଷାର କଥା ମୋ ପାଖରେ ଖୋଲି କହିଲେ । ସତରେ, ତାଙ୍କ ମନ ଭିତରେ ଯେ ଈର୍ଷା ଜାତ ହୋଇପାରେ, ଏ କଥା ମୁଁ କଳ୍ପନାରେ ସୁଦ୍ଧା ଭାବି ପାରି ନ ଥିଲି । ଏମିତି ଫୁର୍ତ୍ତିବାଜ ଲୋକ, ଏମିତି ଖାମଖିଆଲି—ସଂସାରର ସବୁ କିଛି ସେ ଏତେ ବେଶୀ ବୁଝନ୍ତି—ତଥାପି ଈର୍ଷାର ଜ୍ୱାଳାରେ ସେ ଏପରି କାତର ହୋଇ ପଡ଼ିଲେ ଯେ ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ମୋର ଧାରଣା ଥିଲା ଏହିସବୁ କଥାରେ ସେ ବୋଧହୁଏ ମୋ ଠାରୁ ଯଥେଷ୍ଟ ବେଶୀ ଦୃଢ଼; କିନ୍ତୁ ପ୍ରକୃତରେ ତାହା ନୁହେଁ । ତଥାପି ମୁଁ ତାଙ୍କୁ ତାରିଫ ନ କରି ରହିପାରୁ ନି—ଈର୍ଷାର ଜ୍ୱାଳାରେ ମନେ ମନେ କାତର ହେଲେ ସୁଦ୍ଧା ବାହାରେ ସାଧାରଣ ଲୋକ ପରି ସେ କିଛି କରି ପକାଇ ନାହାନ୍ତି ।

କାହାଣୀଟି ଶୁଣାଇବା ଆଗରୁ ଯୁଲିସିଦୋର ମୋତେ ସତର୍କ କରି କହିଲେ—ମାମୁଲି କଥା ବୋଲି ଭାବି ମୋତେ କିନ୍ତୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କର ନାହିଁ,—ସେସବୁ ମାମୁଲି କଥା—ମୋ ପରି ଅବସ୍ଥାରେ ଅନେକ ସ୍ୱାମୀଙ୍କୁ ମୁଁ ନିଜେ କହିଛି କି ନା, ତେଣୁ ସେ ସବୁ କଥାର ମୂଲ୍ୟ କେତେ ତାହା ମୋତେ ଭଲ ଭାବରେ ଜଣା । ମୋ କଥା ଖାଲି ତୁମେ ଶୁଣିଯିବ,—ବାଧା ଦେଇ ମୋ ସ୍ତ୍ରୀର ଅବସ୍ଥା ସମ୍ବନ୍ଧରେ ମୋର ମନୋଭାବ ହାଲୁକା କରିବାକୁ ଚେଷ୍ଟା କରିବ ନାହିଁ ।

ମୁଁ ନୀରବରେ ତାଙ୍କ କଥା ଶୁଣିଯିବି ବୋଲି ପ୍ରତିଶ୍ରୁତି ଦେଇଁ ନୁ, ସେ କହିବାକୁ ଲାଗିଲେ—

ସ୍ତ୍ରୀର ପ୍ରେମରେ ଉଦ୍ବୁଦ୍ଧ ହେବା ଭଳି ମନର ଅବସ୍ଥା ଆଉ ମୋର ନାହିଁ,—ସେ କଥା ମୁଁ ନିଜେ ସ୍ୱୀକାର କରୁଛି ; କିନ୍ତୁ ତା ପ୍ରତି ଗଭୀର ଅନୁରାଗର ଭାବ ପୋଷଣ ନ କଲେ ସୁଦ୍ଧା ତାକୁ ଯେ କିଞ୍ଚିତ୍ ଶ୍ରଦ୍ଧାର ଚକ୍ଷୁରେ ମୁଁ ଦେଖୁ ନ ଥିଲି ତାହା ନୁହେଁ । ତାହାର ରୁଚି ଦେଖି ମୁଁ ସ୍ତମ୍ଭିତ ହୋଇଛି—ଖୋଜି ଖୋଜି ଶେଷରେ ସେ ଏପରି ଜଣେ ପୁରୁଷକୁ ବାଛି ନେଲା ! ଚବିଶ ବର୍ଷର ଜଣେ ତରୁଣୀ ମହିଳା— ମୁଁ ତାହାର ସ୍ୱାମୀ, ଯେତେବେଳେ ତାକୁ ଆଉ ପ୍ରେମ ଦେଇପାରୁ ନାହିଁ,—ସେତେବେଳେ ସେ ଯଦି ଅନ୍ୟ କୌଣସି ପୁରୁଷ ଠାରୁ ତାହା ପାଇବାକୁ ଚାହେଁ,—ସେଥିରେ ବାଧା ଦେବି; ଏତେ ବଡ଼ ମୂର୍ଖ ମୁଁ ନୁହେଁ । ନା, ଜଣେ ମଣିଷ ଉପରେ ଏତେ ବଡ଼ ଅବିଚାର ମୁଁ କୌଣସି ମତେ କରି ନ ପାରେ, ମାତ୍ର ମୋର ଆପତ୍ତି ଉଠୁଛି ତାହାର ନିର୍ବାଚନରେ—ଏତେ ଦିନ ହେଲା ତାହାର ଯେଉଁ ରୁଚିବୋଧ ଓ ବୁଦ୍ଧି ଶୁଦ୍ଧି ମୁଁ ଦେଖି ଆସିଛି, ସେଥିରୁ ମୋର ମନେ ହୋଇଥିଲା ସେ ନିଶ୍ଚୟ ଜଣେ ପ୍ରକୃତ ଭଦ୍ର ଶ୍ରେଣୀର ଲୋକକୁ ନିର୍ବାଚନ କରିବ—ଯାହାକୁ ମୁଁ ଅନ୍ତତଃ ଆଦର ଅଭ୍ୟର୍ଥନା କରି ଘରେ ବସାଇ ପାରିବି । ବୁଝି ପାରୁଛ ନା, ସ୍ୱାମୀ ହେଲେ ସୁଦ୍ଧା ମୁଁ ଆଦୌ ଅବିବେକୀ ନୁହେଁ ।

ମୁଁ ଜବାବ ଦେଲି—ସେ କଥା ତ ବୁଝି ପାରୁଛି ; କିନ୍ତୁ ମୁସ୍କିଲ ହେଉଛି ଯେ, ଯଦି ତୁମ ସ୍ତ୍ରୀ କୌଣସି ମତେ ଥରେ ନିର୍ବାଚନ କରି ସାରିଥାନ୍ତି, ତା'ପରେ ତୁମ ରୁଚି ସାଙ୍ଗରେ ଖାପ ଖୁଆଇ ନୂଆ କରି ଆଉ ଥରେ ନିର୍ବାଚନ କରିବା ତାଙ୍କ ପକ୍ଷରେ ତ ସମ୍ଭବ ହୋଇ ନ ପାରେ ।

ସ୍ମାଲସିହୋର ପୁଣି କହିଲେ—ସେ କଥା ଅବଶ୍ୟ ଠିକ୍; କିନ୍ତୁ ସତ କହିବାକୁ ଗଲେ, ମୋ ସ୍ତ୍ରୀ ଯେ ଜଣେ ପ୍ରେମିକ

ମନୋରଞ୍ଜନ କରୁଛି—ରାଗ ମୋର ସେଥିରେ ନୁହେଁ—ମୋର ରାଗ ହେଉଛି ସେହି ଲୋକଟାର ଢଙ୍ଗରଙ୍ଗ ଦେଖି । ମୋ ସାମନାରେ ସେ ଯେଉଁ ଢଙ୍ଗରେ ମୋ ସ୍ତ୍ରୀ ସାଙ୍ଗରେ କଥା କହେ, ତାହା ଦେଖି ମୋର ମନେ ହୁଏ ମୋତେ ଆଘାତ ଦେବା ହିଁ ଯେମିତି ତାହାର ମୂଳ ଲକ୍ଷ୍ୟ । ତାହାର ସେହି ଢଙ୍ଗ ଦେଖି ମୋ ମୁଣ୍ଡକୁ ପିତ୍ତ ଚଢ଼ି ଯାଏ । ଅସଲ କଥାଟା ଏତେ ଚରମ ସୀମାକୁ ଉଠି ଗଲାଣି ଯେ, ସେସବୁ ନିଜ ଆଖି ଆଗରେ ଦେଖି ମିଜାଜ ଠିକ୍ ରଖିବା ମୋ ପକ୍ଷରେ ରୀତିମତ କଷ୍ଟକର ହୋଇ ଉଠୁଛି । ଖାଲି ଭୟ ହେଉଛି, ଗୋଟାଏ କିଛି କାଣ୍ଡ ବସି ଘଟାଇଲି କି—କିନ୍ତୁ ପର ମୁହୂର୍ତ୍ତରେ ନିଜକୁ ସମ୍ଭାଳି ନେଉଛି । ମୋ ସ୍ତ୍ରୀର ଚାଲି ଚଳଣ ଦେଖି ମନେ ହୁଏ—ସେ ବି ମୋ ମାନସିକ ଉତ୍ତେଜନାର ଭାବ ଲକ୍ଷ୍ୟ କରୁଛି । ତଥାପି ତା ହାବଭାବରେ ମାତ୍ର ପରିବର୍ତ୍ତନ ମୁଁ ଦେଖି ପାରୁ ନାହିଁ । ବାସ୍ତବିକ ସେ ନିଶାରେ ଏମିତି ମତ୍ତ ହୋଇ ଯାଇଛି ଯେ ମୋ ସୁଖଦୁଃଖ କଥା ଭାବିବାକୁ ତାହାର ଟିକିଏ ଫୁରସତ ନାହିଁ ।

ବନ୍ଧୁ ପ୍ରଥମେ ମୋତେ କଥା କହିବାକୁ ବାରଣ କରି ଦେଇଥିଲେ—ତେଣୁ ମୁଁ କିଛି କଥା କହି ପାରୁ ନ ଥିଲି । ଆପଣ ତ ଜାଣନ୍ତି—କିଭଳି ଅଦ୍ଭୁତ ଅସାମାଜିକ ଲୋକ ସେହି ପ୍ରେମିକଟି । ଶେଷକୁ ବନ୍ଧୁଙ୍କ ସ୍ତ୍ରୀ ତାକୁ ବାଛି ନେଇଛନ୍ତି ଦେଖି ଭିତରେ ମୋ ମନ ଭିତରଟା କେମିତିକା ହେଉଥିଲା—ଏବଂ ସେହି କଥା ମୁଁ ବନ୍ଧୁଙ୍କୁ ଜଣାଇବାକୁ ଚାହୁଁଥିଲି; କିନ୍ତୁ ତାହା ତ ହେବାର ମୋଟେ ଉପାୟ ନାହିଁ । କହିବାକୁ ଗଲେ ବନ୍ଧୁଙ୍କର କଷ୍ଟ ବଢ଼ିବ ପଛକେ କମିବ ନାହିଁ । ଫ୍ଲାଲସିଦୋର ମଧ୍ୟ ମୋର ଅବସ୍ଥା ଦେଖି ମୋ ମନ କଥା ବୁଝି ପାରି କହିଲେ—ତୁମକୁ ମୋ

ସଣ ରହିଲି, ମୋତେ କିଛି କଥା କୁହ ନାହିଁ । କାହାର ଠାରୁ କୌଣସି ଉପଦେଶ ମୋର ଦରକାର ନାହିଁ । ମନର ଦୁଃଖ କାହାର ଆଗରେ ପ୍ରକାଶ କରି ଅନ୍ତରର ଭାରଟା ଖାଲି ଟିକିଏ ଲଘବ କରିବାକୁ ଚାହେଁ; ଆଜି ଏହି ଧରଣର କଥା ଶୁଣାଇବାକୁ ତୁମ ଠାରୁ ଆଉ ଭଲ ଲୋକ ମୋର କେହି ନାହିଁ । ସତରେ, କି କଦର୍ଯ୍ୟ ଅବସ୍ଥାରେ ଯେ ମୁଁ ପଡ଼ିଛି ଭାଇ, ସେ କଥା ତୁମକୁ କ'ଣ କହିବି ! ସେହି ନିର୍ବୋଧ ପ୍ରେମିକଟାକୁ ଘରେ ପଶିବାକୁ ଦେବା ଯେମିତି ଅପମାନଜନକ—ତାକୁ ଦେଖିଲା କ୍ଷଣି ଯେମିତି ମୋର ଆତ୍ମ ସମ୍ମାନରେ ଆଘାତ ଲାଗେ—, ଏ ଆତ୍ମ ସମ୍ମାନ ମାନେ ସାଧାରଣ ଲୋକର ଆତ୍ମ ସମ୍ମାନ କଥା ମୁଁ କହୁ ନାହିଁ । ତାଙ୍କୁ ଦେଖିଲେ ମାର୍ଜିତ ରୁଚି ଶିକ୍ଷିତା ନାରୀମାନଙ୍କ ସାଙ୍ଗରେ ମିଳାମିଶା କରିବା ବିଷୟରେ ଉଦାର ମତ ପୋଷଣକାରୀ ଭଦ୍ରଲୋକର ଆତ୍ମ ସମ୍ମାନରେ ଆଘାତ ଲାଗେ ।

ପ୍ରଥମ ଦିନ ତାଙ୍କ ଠାରୁ ଏହିସବୁ କଥା ଶୁଣି ସତରେ ମୁଁ ଭାବି ପାରିଲି ନାହିଁ କ'ଣ କରାଯାଇ ପାରେ । ଆମେ ରାସ୍ତାରେ କଥା ହେଉଥିଲୁ । ବାଟରେ ଚାଲି କରି ଯାଉଁ ଯାଉଁ ନିଶ୍ଚିନ୍ତରେ ଓ ନିର୍ବିଘ୍ନରେ କଥା କହିବା ଲାଗି ସେ ମୋତେ 'ପ୍ଲାଲି ଦୁ ରୁୟେଲ'କୁ ନେଇଗଲେ । ଫେରି ଆସି ଅନେକ ଭାବି ଚିନ୍ତି ମୁଁ ସ୍ଥିର କଲି ତାଙ୍କ ସ୍ତ୍ରୀ ସାଙ୍ଗରେ ଥରେ ଦେଖା କରିବା ମୋର ନିତାନ୍ତ ଦରକାର । ମୁଁ ଯେଉଁସବୁ କଥା ଜାଣିଲି, ତହିଁରୁ କିଛି ତାଙ୍କୁ ଜଣାଇ ସାବଧାନ କରି ଦେବାକୁ ହେବ । ତାଙ୍କ ସ୍ୱାମୀଙ୍କ ପ୍ରତି ଓ ତହିଁ ସଙ୍ଗେ ସଙ୍ଗେ ତାଙ୍କ ନିଜ ପ୍ରତି ବି କର୍ତ୍ତବ୍ୟ ସମ୍ପର୍କରେ ତାଙ୍କୁ ଟିକିଏ ସଚେତନ କରି ଦେବାକୁ ପଡ଼ିବ । ସ୍ଥିର କଲି ସିନା; କିନ୍ତୁ ଏସବୁ କଥା ତାଙ୍କୁ କହିବାର ସୁଯୋଗ ମୁଁ ଆଦୌ ପାଉ

ନ ଥିଲ, ଯଦିଓ ତାଙ୍କ ସ୍ତ୍ରୀ ସାଙ୍ଗରେ ମୋର ସାକ୍ଷାତ୍ ହୁଏ । ଫ୍ଲାସିଦୋର ସେତେବେଳେ ସେହି ଘରେ ବସିଥାନ୍ତି—ସେ କୌଣସି ମତେ ବାହାର ଯାନ୍ତି ନାହିଁ— ସେହି ଘରୁ । ସେ ଥିବା ବେଳେ ତାଙ୍କ ସ୍ତ୍ରୀକୁ ଚୁପି ଚୁପି କୌଣସି କଥା କୁହା ଯାଇ ନ ପାରେ—କାରଣ ଫ୍ଲାସିଦୋର ମୋତେ ନିଶ୍ଚୟ ସନ୍ଦେହ କରିବେ ।

ଫ୍ଲାସିଦୋର ପ୍ରେମିକର ଆଚରଣ ସମ୍ବନ୍ଧରେ ଯାହା କହିଥିଲେ, ତାହା ମୁଁ ନିଜ ଆଖିରେ ଦେଖିବାକୁ ଲଗିଲ । ସେ ସବୁବେଳେ ତାଙ୍କ ସ୍ତ୍ରୀ ପାଖରେ ବସିଥାଏ—ଥରେ ହେଲେ କୁଆଡେ଼ ଯାଏନା— ଅନୁଚ୍ଚ ସ୍ୱରରେ କଥା କହେ, ଏବଂ ତା ଛଡ଼ା ମହିଳାଟି ଆଡ଼କୁ ଏମିତି ଭଙ୍ଗୀରେ ଅନାଏ, ଯାହାକୁ କୌଣସି ମତେ ସମର୍ଥନ କରିଯାଇ ନ ପାରେ । ଫ୍ଲାସିଦୋରଙ୍କ ଠାରୁ ମୁଁ ଆଗରୁ ସବୁ କଥା ଶୁଣିଛି । ତେଣୁ ପ୍ରତି ମୁହୂର୍ତ୍ତରେ ମୋର ଭୟ ହେଉଥିଲ, ଯଦି ସେ ଆତ୍ମସଂଯମ ହରାଇ ପକାନ୍ତି । ଆଖି ଆଗରେ ମୁଁ ନିଜେ ଯାହା ଦେଖିଲି, ତାହା ଦେଖିଲେ ସ୍ୱାମୀ କଥା ଛାଡ଼, ଯେ କୌଣସି ଲୋକର ଧୈର୍ଯ୍ୟଚ୍ୟୁତି ଘଟିବାର ସମ୍ଭାବନା । ତାଙ୍କ ଘରୁ ବି ମୁଁ ବୁଝି ଆସିଲି, ଫ୍ଲାସିଦୋରଙ୍କ ଅଭିଯୋଗ ଆଦୌ ହେଲେ ମିଥ୍ୟା ନୁହେଁ । ବନ୍ଧୁଙ୍କର ଧୈର୍ଯ୍ୟ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି, ଆଉ ତା ଠାରୁ ବେଶୀ ଆଶ୍ଚର୍ଯ୍ୟ ହେଲି ସେହି ଦୁଇ ଜଣଙ୍କର ଅବିବେଚନା ଦେଖି । ସେମାନଙ୍କର ବୁଦ୍ଧିସୁଦ୍ଧି ଯେମିତି ଏକାବେଳକେ ଲୋପ ପାଇ ଯାଇଛି । ଏହିସବୁ କଥା ଦେଖି ଶୁଣି ମୋର କେବଳ ମନେ ହେବାକୁ ଲଗିଲ, ଥରେ ବନ୍ଧୁପତ୍ନୀଙ୍କ ସହିତ ଶୀଘ୍ର ଦେଖା କରିବା ମୋର ନିହାତି ଦରକାର । ଗଳ୍ପ ପଢିବା ଦିନ ଦିପହରେ ତାଙ୍କ ସାଙ୍ଗରେ ଦେଖା କରିବାକୁ ଯିବା

ଲାଗି ଚେଷ୍ଟା କରୁଥିଲି—କାରଣ, ଭାବୁଥିଲି ଏତିକି ବେଳେ ସେ ଏକା ଥାଇ ପାରନ୍ତି—ଘରୁ ବାହାରିବାକୁ ବସିଛି, ଏହି ସମୟରେ ମୋର ଗୃହର ବନ୍ଧୁ ସ୍ୱାମିଙ୍କ ସାଙ୍ଗରେ ଧରି ହାଜର ହୋଇଗଲା । ବନ୍ଧୁ ଯେଉଁ ଚେହେରା ନେଇ ଘର ଭିତରେ ପ୍ରବେଶ କଲେ, ତାହା ଦେଖି ମୁଁ ଏକବାରେ ହତଭମ୍ବ ହୋଇ ଗଲି । ତାଙ୍କ ଆଖି ଓ ମୁହଁରେ ଯେମିତି ଏକା ସଙ୍ଗରେ ନିଦାରୁଣ ଦୁଃଖ, ଭୟ ଓ ବିଜୟର ଭାବ ଫୁଟି ଉଠିଥିଲା ।

ଗୃହଟି ଘରୁ ବାହାରିଯିବା ମାତ୍ରେ ମୁଁ ସ୍ୱାମିଙ୍କୁ ପଚାରିଲି—କଥା କ'ଣ ? ତୁମର ଆଖି ଓ ମୁହଁର ଅବସ୍ଥା ଦେଖି ମୋତେ ତ ଭାରି ଡର ଲାଗୁଛି !

ଏକ ଅଦ୍ଭୁତ ବିଷାଦାଚ୍ଛନ୍ନ ପରିତୃପ୍ତିର ସ୍ୱରରେ ବନ୍ଧୁ ଉତ୍ତର ଦେଲେ—ଭାଇ, ଆଉ କୌଣସି ସନ୍ଦେହ ନାହିଁ । ମୋ କଥା ହିଁ ଠିକ୍ । ସବୁ କିଛି ପାଣି ପରି ପରିଷ୍କାର ହୋଇ ଯାଇଛି । ସେହି ପ୍ରେମିକ ହିଁ ଶେଷରେ ଜୟଲାଭ କଲା ! ମୁଁ ଭାବୁଥିଲି, କଥାଟା ଅବଶ୍ୟ ଏମିତି କିଛି ବେଶୀ ଦୂର ଗଡ଼ି ଯାଇ ନ ଥିବ । କାରଣ, ମୋର ଧାରଣା ଥିଲା, ଯେଉଁ ମହିଳାର ତିଳେ ହେଲେ କାଣ୍ଡଜ୍ଞାନ ଥିବ ସେ କଦାପି ଏମିତି ପୁରୁଷ ସାଙ୍ଗରେ ବେଶୀ ଦିନ ଚଳି ପାରିବ ନାହିଁ । କିନ୍ତୁ ଏଥର ଦେଖୁଛି, ମୋର ଧାରଣା ଭୁଲ, ସେହି ପ୍ରେମିକ ହିଁ ଜିତିଲା, ଏବଂ ଏଇଥି ଲାଗି ଶେଷକୁ ମୋର ସ୍ତ୍ରୀକୁ ଅଶେଷ ଦୁଃଖ ଭୋଗ କରିବାକୁ ହେବ । ଏଭଳି ଘଟଣାରେ କୌଣସି ପ୍ରକାର ସୁଫଳ ତ ହୁଏନା, ବରଂ ଶେଷକୁ ଏକ ରକମ ମହାମାରୀ କାଣ୍ଡ ଘଟେ ।

ତା'ପରେ ସେ ମୋ ହାତକୁ ଖଣ୍ଡିଏ ଚିଠି ବଢ଼ାଇ ଦେଇ କହିଲେ—ଏଇ ନିଅ, ପଢ଼ି ଦେଖ, ଆଉ ଠିକଣାଟା ଉପରେ ଦୃଷ୍ଟି ପକାଅ ।

ଦେଖିଲି ଚିଠି ଉପରେ ପ୍ରେମିକର ନାମ ଓ ଠିକଣା ଲେଖା ହୋଇଛି । କୌଣସି କଥା ଗୋପନ ରଖିବାକୁ ତିଳେ ମାତ୍ର ଚେଷ୍ଟା ନାହିଁ ।

ପ୍ରାୟ ଚିତ୍କାର କରି ମୁଁ କହି ପକାଇଲି—ଏ କ'ଣ ? କ'ଣ କରିଛ ତୁମେ ? ତୁମ ହାତକୁ ଏ ଚିଠିଟା ବା କିପରି ଆସିଲା ?

ଏହା କହିବା ସଙ୍ଗେ ସଙ୍ଗେ ମୋର ମନେ ହେଲା, ବୋଧହୁଏ ବନ୍ଧୁ ତାଙ୍କ ସ୍ତ୍ରୀ କମ୍ବା ପ୍ରେମିକକୁ ଖୁନ୍ କରି ଆସିଛନ୍ତି ।

ବନ୍ଧୁ ଅତିଶୟ ଧୀର ଶାନ୍ତ କଣ୍ଠରେ ଜବାବ ଦେଲେ—ବ୍ୟସ୍ତ ହୁଅ ନାହିଁ, କହୁଛି । ଘଟଣା ଚକ୍ରରେ ଚିଠିଟା ଆସି ମୋ ହାତରେ ପଡ଼ିଛି । ପ୍ରାୟ ଘଣ୍ଟାକ ଆଗରୁ ଗୋଟାଏ ବିଶେଷ କାମରେ ମୁଁ ନିକଟସ୍ଥ ଜଣେ ଭଦ୍ରଲୋକର ଘରକୁ ଯାଉଥିଲି । ଘରଟା ପାଖରେ ଥିବାରୁ ଗାଡ଼ିରେ ନ ଯାଇ ଚାଲିକରି ଯାଉଥିଲି । ଆଜି ପାଗଟା ଖୁବ୍ ଚମତ୍କାର ଥିବାରୁ ମନ ଭିତରେ ନାନା ପ୍ରକାର କଳ୍ପନାର ମଧୁର ଚିତ୍ର ଆଙ୍କି ଯାଉଥିଲି । ହଠାତ୍ ସାମନାରେ ଜଣେ 'ସ୍ୟାଭଯ୍ନ' ବାସୀକୁ ଦେଖିଲି, ତାହାର ହାତରେ ଖଣ୍ଡିଏ ଚିଠି । ଲୋକଟି ମୋତେ ଦେଖି କହିଲା—ଦେଖନ୍ତୁ ତ, ମହାଶୟ, ଏ ଠିକଣାଟା, ଜାଗାଟା କେଉଁଠି କହି ପାରିବେ ? ···ତୁମେ ଟିକିଏ ଭାବି ଦେଖ ତ, ଏ ହସ୍ତାକ୍ଷର ମୋର ସ୍ତ୍ରୀର ଯୁଝା ଜାଣିପାରି ମୋର ମନର ଅବସ୍ଥା ସେତେବେଳେ କ'ଣ ହୋଇଥିବ !···'ସ୍ୟାଭଯ୍ନ'-ବାସୀକୁ ମୋ ପଛେ ପଛେ ଆସିବାକୁ କହି ମୁଁ ଗୋଟିଏ କଫିଖାନା ଭିତରକୁ ପଶିଗଲି । ସେଠାରେ ଲେଖିବାର ସରଞ୍ଜାମସବୁ ଟେବୁଲ ଉପରେ ଥିଲା ।

ପଚାରିଲି—ତା ପରେ ?

ବନ୍ଧୁ କହିବାକୁ ଲାଗିଲେ—ଭଗବାନଙ୍କ ଜଣା, ଏ ଚିଠିଟା ଉତାରିବା ପାଇଁ ମୁଁ କି କଷ୍ଟ ପାଇଛି। କୌଣସି ନାରୀର ଏତେ ପ୍ରବଳ ଆବେଗଭରା ଚିଠି ତ ମୁଁ କେବେ ହେଲେ ଦେଖି ନାହିଁ। ତୁମେ ନିଜେ ଦେଖ, ପ୍ରେମରେ ପଡ଼ି ତାହାର ମୁଣ୍ଡ କିପରି ଖରାପ ହୋଇଯାଇଛି—ନ ହେଲେ ଆଖି ଆଗରେ ଯେଉଁ ଉକାଶଟା ପଡ଼ିବ ତା ହାତରେ ଏମିତି ଚିଠି ପଠାଇବାକୁ କେହି କ'ଣ କେବେ ଚେଷ୍ଟା କରେ!...କିନ୍ତୁ କାଲି ସେହି ପ୍ରେମିକ ତା ମନକୁ ପୂରାପୂରି ଜୟ କରି ପକାଇଛି। ଚିଠିଟା ପଢ଼, ପଢ଼ିଲେ ସବୁ କଥା କଳେ କଳେ ଜାଣି ପାରିବ। ଆଜି ଦେଖ, ମୋ ଉପରେ କେମିତି ରାଗ ପ୍ରକାଶ କରିଛି — ମୋ ନିଜ ଘରେ ପ୍ରବେଶ କରି ମୁଁ ସେମାନଙ୍କ ପ୍ରେମାଳାପରେ ବିଘ୍ନ ଘଟାଇଛି—ଏହା ମୋର ଅପରାଧ।... କିନ୍ତୁ ମୁଁ ବା କେମିତି ଜାଣିବି ସେମାନଙ୍କର କେଉଁଥିରେ ବ୍ୟାଘାତ କଲି ବୁଝି ପାରୁ ନାହିଁ। ଯେତେବେଳେ ମୁଁ ଘରେ ଗୋଡ଼ ଦେଲି, ସେତେବେଳେ ସେ ଦୁହେଁ କଥା ହେଉଥିଲେ ସତ, କିନ୍ତୁ ତାହା ତ କୌଣସି ଗୋପନୀୟ ପ୍ରେମାଳାପ ବୋଲି ମୋର ମନେ ହେଲା ନାହିଁ। ଅତି ସାଧାରଣ ମାମୁଲି ବାଜେ କଥା ସେମାନେ ହେଉଥିଲେ ବୋଲି ବରଂ ମୋର ମନେ ହେଲା...ଛାଡ଼, ଏହି ସାଂଘାତିକ ଚିଠିଟା ପୂରାପୂରି ଉତାରି ସାରି, ଅସଲି ଖଣ୍ଡିକ ରଖି, 'ସ୍ୱାଭିସ୍' ବାସୀ ଭିଖାରୀକୁ କିଛି ଅର୍ଥ ପୁରସ୍କାର ଦେଇ ତା ହାତରେ ନକଲି ଚିଠି ଖଣ୍ଡିକ ଯଥା ସ୍ଥାନକୁ ପଠାଇ ଦେଇଛି। ଏକ୍ଷଣି ତ କ'ଣ ତୁମେ କହିବାକୁ ଚାହଁ, ମୋର ଅଭିଯୋଗ ଭିତ୍ତିହୀନ ?

ତା ପରେ ମୁଁ ସେହି ସାଂଘାତିକ ଚିଠି ଖଣ୍ଡିକ ପଢ଼ି ଦେଖିଲି। ଚିଠିଟିରେ ଏମିତି ସବୁ କଥା ଲେଖା ହୋଇଛି, ଯଦ୍ଦ୍ୱାରା ଯେ କୌଣସି ସ୍ୱାମୀ ଖାଲି ମର୍ମାହତ ନୁହେଁ, ଏକବାରେ ପାଗଳ

ହୋଇ ଯାଇପାରେ । ମୁଁ ଅବଶ୍ୟ ଗୋଟି ଖଣ୍ଡିକ ବନ୍ଧୁଙ୍କୁ ଆଜ ଫେରାଇ ଦେଲି ନାହିଁ, ଆଜ ବନ୍ଧୁଙ୍କର ଯେଉଁଭଳି ଅବସ୍ଥା ସେଥିରେ ତାଙ୍କୁ ଏକା ଛାଡ଼ି ଦେବା ବି ମୁଁ ସମୀଚୀନ ବୋଧ କଲି ନାହିଁ । ସୁତରାଂ ତାଙ୍କୁ ସାଙ୍ଗରେ ନେଇ ମୁଁ ତାଙ୍କ ସ୍ତ୍ରୀ ସାଙ୍ଗରେ ଦେଖା କରିବାକୁ ଗଲି । ସେତେବେଳେ ମୋର ମନର ଅବସ୍ଥା କ'ଣ, ଥରେ ଭାବି ଦେଖନ୍ତୁ ତ !............ଦୈବ ଯୋଗକୁ ସେତେବେଳେ ଭଦ୍ର ମହିଳା ଘରେ ଉପସ୍ଥିତ ଥିଲେ । ମୋତେ ତାଙ୍କ ସ୍ୱାମୀଙ୍କ ସାଙ୍ଗରେ ଆସିବାର ଦେଖି ତାଙ୍କର ସେହି ସ୍ୱଭାବ ସୁଲଭ ମଧୁର ହସରେ ପ୍ରଫୁଲ୍ଲ ଚିତ୍ତରେ ସେ ଆମ୍ଭମାନଙ୍କୁ ସମ୍ବର୍ଦ୍ଧନା ଜଣାଇଲେ ; କିନ୍ତୁ ତାଙ୍କର ଏହି ପ୍ରଫୁଲ୍ଲତା ଆଉ ବେଶୀ କ୍ଷଣ ରହିବା ସମ୍ଭବ ହେଲା ନାହିଁ, କାରଣ ତାଙ୍କର ଉତ୍ତେଜିତ ସ୍ୱାମୀ ସେତେବେଳେ ତାଙ୍କୁ ପ୍ରାୟ କୁତ୍ସିତ ଭାଷାରେ ତିରସ୍କାର କରିବାକୁ ଲାଗିଲେ । ସେହି ଦୋଷାବହ ତିରସ୍କାରରେ ମର୍ମାହତ ହୋଇ ଭଦ୍ର ମହିଳା ଥର ଥର ହୋଇ ଚଉକିରେ ଟଳି ଟଳି ପଡ଼ିଗଲେ । ସ୍ୱାମୀଙ୍କର ନିଦାରୁଣ କଟୂକ୍ତି ଶୁଣି ବେଦନାରେ ସେ ଏକାବେଳେ ସ୍ତମ୍ଭୀତ ହୋଇ ଯାଇଥିଲେ । ନୟନରେ ତାଙ୍କର ଟୋପାଏ ହେଲେ ଲୋତକ ନ ଥିଲା । ସେ ଅନେକ ଦୋଷରେ ଦୋଷୀ ହେଲେ ସୁଦ୍ଧା ତାଙ୍କର ଏହି ଅବସ୍ଥା ଦେଖି ମୋର କେମିତି ଅନୁକମ୍ପା ଜାତ ହେବାକୁ ଲାଗିଲା—ମୁଁ ତାଙ୍କୁ ଉଠାଇ ସାନ୍ତ୍ୱନା ଦେବା ଲାଗି ତାଙ୍କ ପାଖକୁ ଗଲି ।

ମହିଳାଟି ମୋତେ ପାଖରେ ଦେଖି ଉତ୍ତେଜିତ କଣ୍ଠରେ ଅନୁଯୋଗର ସ୍ୱରରେ କହିଲେ—ମୋ ପାଖରେ ଠିଆ ହୋଇ ଆପଣ ମୋର ଏହି ଅପମାନ ସହ୍ୟ କରୁଛନ୍ତି ? ମୁଁ ଆଜ

କେଉଁଠି ? ଆପଣଙ୍କୁ କ'ଣ ମୁଁ ବନ୍ଧୁ ବୋଲି ଦାବୀ କରିପାରେ ନା ?

ଫ୍ଲାନ୍‌ସିଦୋର ମଧ୍ୟ ତତ୍‌କ୍ଷଣାତ୍ ସେହିପରି ଉତ୍ତେଜିତ କଣ୍ଠରେ କହି ପକାଇଲେ—ହଁ, ହଁ, ସେ ଆମ ଦୁହିଁଙ୍କର ବନ୍ଧୁ ଥିଲେ ।

ଏହି କଦର୍ଯ୍ୟ ନାଟକର ଯେଉଁଥିରେ ଅବସାନ ଘଟିବ ସେହିପରି ଦୁଇ ଜଣଙ୍କ ଭିତରେ ଗୋଟାଏ ଆପୋଷ ସମାଧାନ କରିବା ପାଇଁ ମୁଁ ଯଥାସାଧ୍ୟ ଚେଷ୍ଟା କରିବାକୁ ଲାଗିଲି, ଏବଂ ମୋର ଚେଷ୍ଟାରେ କିଛି ଫଳ ହେଲା ବୋଲି ବୋଧ ହେଲା । କିନ୍ତୁ କିଛି ଫ୍ଲାନ୍‌ସିଦୋରଙ୍କୁ ବନ୍ଦ କରିବା ବଡ଼ ମୁସ୍କିଲ । ସେ ତାଙ୍କ ସ୍ତ୍ରୀର ଅପରାଧର ଯେଉଁ ପ୍ରମାଣ ପାଇଛନ୍ତି, ତା'ର ଉପରେ ବାରମ୍ବାର ଅଭିଯୋଗ ଆଣିବାରୁ ସେ କୌଣସି ମତେ ନିବୃତ୍ତ ହେଉ ନାହାନ୍ତି । ଆଉ ଏଣେ ତାଙ୍କ ସ୍ତ୍ରୀ ବି କୌଣସି ମତେ ଦୋଷ ସ୍ୱୀକାର କରୁ ନାହାନ୍ତି । ତାଙ୍କର ଏହି ଦୃଢ଼ତା ଦେଖି ସତରେ ମୁଁ ଅବାକ ହୋଇଗଲି । ଚିଠି କଥା ଉଲ୍ଲେଖ କରିହେଲେ ସୁଦ୍ଧା ସେ ଦୃଢ଼ ସ୍ୱରରେ କହିଲେ, ସେ ନିର୍ଦ୍ଦୋଷ । ଏହି ସବୁ କଥା ଦେଖି ଶୁଣି ମୋର ମନେ ହେଲା—ଅତ୍ୟନ୍ତ କଠିନ ହେଲେ ସୁଦ୍ଧା ଏହି ମୁସ୍କିଲ ଘଟଣାରୁ ଉଦ୍ଧାର ପାଇବା ପାଇଁ ସେ କୌଣସି ଉପାୟ ବାହାର କରିଛନ୍ତି । ଅବଶେଷରେ ଫ୍ଲାନ୍‌ସିଦୋରଙ୍କ ବାରମ୍ବାର ଅଭିଯୋଗ ହେତୁ ମୁଁ ତାଙ୍କୁ ଚିଠିଟି କାଢ଼ି ଦେଖାଇଲି ।

ବନ୍ଧୁପତ୍ନୀ ଚିଠି ଖଣ୍ଡିକ ଆଡ଼କୁ ଥରେ ମାତ୍ର ଚାହିଁ ଦେଇ ଦୃପ୍ତ କଣ୍ଠରେ କହିଲେ—ଏ ଚିଠି ମୋର ନୁହେଁ । ଫ୍ଲାନ୍‌ସିଦୋର ଏମିତି କଥା କପରି ଭାବି ପାରିଲେ ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।

କିନ୍ତୁ ଫ୍ରାଲ୍ସିଦୋର ସ୍ତ୍ରୀର ଏ ଉତ୍ତର ଶୁଣି ଟିକିଏ ହେଲେ ବିସ୍ମିତ ହେଲେ ନାହିଁ । ସେ ବରଂ ମନେ କଲେ, ତାଙ୍କ ସ୍ତ୍ରୀର ପରାଜୟ ସ୍ୱୀକାର କରିନେବା ଛଡ଼ା ଅନ୍ୟ କିଛି ଉପାୟ ନାହିଁ । ମୋର ନିଜର ବି ଠିକ୍ ଏହି କଥା ମନେ ହେଲା । ତଥାପି ଗତ୍ୟନ୍ତର ନ ଦେଖି ମୁଁ ତାଙ୍କ ସ୍ତ୍ରୀର ଉକ୍ତି ଉପରେ ଜୋର ଦେଇ କଥାବାର୍ତ୍ତା କରିବାକୁ ଲାଗିଲି । କିନ୍ତୁ ମୋତେ ବେଶୀ କିଛି କଥା ଆଉ କହିବାକୁ ପଡ଼ିଲା ନାହିଁ । ସେତେବେଳେ ବନ୍ଧୁ ପତ୍ନୀ ମୋତେ ବାଧା ଦେଇ ଆମ ଦୁଇ ଜଣ ଶୁଣିଲା ଭଳି କହିବାକୁ ଲାଗିଲେ ।

"ମୋ ସ୍ୱାମୀଙ୍କୁ ମୁଁ ଚିର ଦିନ ଭଲ ପାଇ ଆସିଛି । କିନ୍ତୁ ବହୁ ଦିନ ହେଲା ମୁଁ ତାଙ୍କ ଠାରୁ ଆଉ ଆଗର ସେହି ଭଲପାଇବା ପାଉ ନାହିଁ । ଏଥି ପାଇଁ ମୋର ମନଃକଷ୍ଟର ସୀମା ନାହିଁ । କିନ୍ତୁ ସେ କଦାପି କହି ପାରିବେ ନାହିଁ ଯେ ଏହି ଅବହେଳା ଲାଗି ମୁଁ କେଉଁ ଦିନ ହେଲେ ତାଙ୍କୁ ଦୋଷ ଦେଇଛି । କାହିଁକି ଦେବି ? ମୁଁ ଜାଣେ, ଏଥିରେ କୌଣସି ଫଳ ହେବ ନାହିଁ । ମୋର ଏକମାତ୍ର ଉଦ୍ଦେଶ୍ୟ ହେଉଛି, ତାଙ୍କ ମନ ଭିତରେ ଈର୍ଷା ଉଦ୍ରେକ କରାଇ ତାଙ୍କ ଭଲପାଇବା ଫେରି ପାଇବାକୁ ଚେଷ୍ଟା କରିବା—ଏ ପଥରେ ବିପଦ ଅଛି ତାହା ଜାଣି ସୁଦ୍ଧା ବିପଦ କଥା ଭାବି ମୁଁ ଏପରି ଲୋକଙ୍କୁ ମୋ ପ୍ରୟୋଜନ ସିଦ୍ଧି ପାଇଁ ନିର୍ବାଚନ କରି ନେଇଥିଲି ଯେ, ଯେଉଁମାନେ ମୋତେ ଖୁବ୍ ଭଲ ଭାବରେ ଜାଣନ୍ତି । ସେମାନଙ୍କ ଭିତରୁ କେହି ଜଣେ ହେଲେ ଭାବି ପାରିବେ ନାହିଁ ଯେ ଏପରି ଜଣେ ଲୋକ ଦ୍ୱାରା ମୋର କୌଣସି ଅନିଷ୍ଟ ହୋଇପାରେ । ସେହି ଭଦ୍ରଲୋକ ନିଜେ ବି ସହଜରେ ମୋର ପରିକଳ୍ପନା ଅନୁଯାୟୀ କାମ କରିବାକୁ ରାଜି ହୋଇଥିଲେ । କିନ୍ତୁ ତା' ସାଙ୍ଗରେ ମିଳାମିଶା କରିବାରୁ ଫ୍ରାଲ୍ସିଦୋର କପରି କଷ୍ଟ ଅନୁଭବ କରୁଛନ୍ତି—କାଳି

ଯେତେବେଳେ ମୁଁ ତାହା ସ୍ୱଚକ୍ଷୁରେ ଦେଖିଲି—ତତ୍‌କ୍ଷଣାତ୍
କାଲି ମୋର ଚାକରବାକରଙ୍କୁ ହୁକୁମ ଦେଇଦେଲି; ଯଦି ସେହି
ଭଦ୍ରଲୋକ ମୋ ସାଙ୍ଗରେ ଦେଖା କରିବାକୁ ଆସେ ତାହେଲେ
ତାଙ୍କୁ କହିଦେବ ମୋ ସାଙ୍ଗରେ ଦେଖା ହୋଇ ପାରିବ ନାହିଁ ।
ଆଜି ଏ ହୁକୁମ ମଧ୍ୟ ମୁଁ ସେହି ଭଦ୍ରଲୋକ ସାମନାରେ ଦେଇଛି,
ଯଦ୍ୱାରା ସେ ମଧ୍ୟ ମୋ ମନୋଗତ ଭାବ ନ ଜାଣିବାର ଛଳନା
କରି ନ ପାରୁ । ଚାକରବାକରଙ୍କୁ ଡାକ ପଚାରିଲେ ଯଦି ସେମାନେ
ଏ କଥା ଅସ୍ୱୀକାର କରନ୍ତି ; ତାହାହେଲେ ମୁଁ ବରଂ ଶୁଣିବାକୁ
ରାଜି ଅଛି, ଏ ରକମ ଜଘନ୍ୟ ଚିଠି ମୋ ଦ୍ୱାରା ଲେଖା ସମ୍ଭବ ।
ହଁ, ତେବେ ଏ ହାତଲେଖାଟା ଯେ ମୋ ହସ୍ତାକ୍ଷର ପରି ସେ
କଥା ମୁଁ ମାନିବାକୁ ରାଜି ଅଛି ।

ତା'ପରେ ମହିଳାଟି ତାଙ୍କ ସ୍ୱାମୀ ଆଡ଼କୁ ନିରୁତ୍ତରରେ
କଠୋର ଦୃଷ୍ଟି ନିକ୍ଷେପ କରି କହି ପକାଇଲେ—କିନ୍ତୁ ମୋର
ହସ୍ତାକ୍ଷର ଓ ଏହି ଲେଖା ଭିତରେ ଯେଉଁ ପାର୍ଥକ୍ୟ ଟିକକ ରହି
ଯାଇଛି, ତାହା ତ ତୁମ ଦୃଷ୍ଟିରୁ ଏଡ଼ାଇ ଯିବାର କଥା ନୁହେଁ ।
···ଏକ୍ଷଣି ବି କ'ଣ ତୁମେ କହିବାକୁ ଚାହ—ଏ ମୋର
ହାତଲେଖା ?

ସହସା ମ୍ଲାଲସେଦୋର କହି ପକାଇଲେ—ହାୟ ଭଗବାନ !
ଏବେ ବୁଝି ପାରିଲି । ନା, ଏ ତୁମର ହାତଲେଖା ନୁହେଁ ।

କିଛି କ୍ଷଣ ସମସ୍ତେ ନୀରବ ରହିଲେ । ତା'ପରେ ମ୍ଲାଲସେଦୋର
ହଠାତ୍ ଉଠିପଡ଼ି ତାଙ୍କ ସ୍ତ୍ରୀର ପାଦ ଉପରେ ପଡ଼ିଯାଇ ମିନତିର
ସ୍ୱରରେ କ୍ଷମା ମାଗିବାକୁ ଲାଗିଲେ । ଏହା ଦେଖି ମୁଁ ଏକବାରେ
ବିସ୍ମିତ ହୋଇଗଲି । ବନ୍ଧୁ ପତ୍ନୀ ଅବଶ୍ୟ ଅତି ସହଜ ମଧୁର
ଭାବରେ ତାଙ୍କର ଯଥା କର୍ତ୍ତବ୍ୟ ପାଳନ କଲେ । ତା'ପରେ ମୁଁ

ସେମାନଙ୍କ ନିକଟରୁ ବିଦାୟ ନେବାକୁ ବସିବାରୁ, ଫ୍ଲାନ୍ସିଦୋର ଆଜି କିଛି ସମୟ ତାଙ୍କ ସ୍ତ୍ରୀ ପାଖରେ ରହିବାକୁ ମୋତେ କହିଲେ ।

ବନ୍ଧୁ ପତ୍ନୀ ମୋ ଆଡ଼କୁ ଅନାଇ ମୃଦୁ ହସି କହିଲେ—କିନ୍ତୁ ଏ ଯାଏ ବି କଥା ଶେଷ ହୋଇ ନାହିଁ । ଆପଣଙ୍କୁ ସବୁ ଖୋଲି କରି କହୁଛି ।

ଏହା ଶୁଣିବା ମାତ୍ରେ ଫ୍ଲାନ୍ସିଦୋର ବିଶେଷ ଉତ୍ତେଜନା ସହକାରେ ଦ୍ରୁତ ଗତିରେ ଘରୁ ପଳାଇଗଲେ । ଏଥର ନିର୍ବାଧରେ ସବୁ କଥା ଶୁଣି ହେବ ଭାବି ମୁଁ ବି ବନ୍ଧୁ ପତ୍ନୀଙ୍କୁ ସବୁ କଥା ଫିଟାଇ କହିବାକୁ ଅନୁରୋଧ କଲି ।

ତା'ପରେ ବନ୍ଧୁ ପତ୍ନୀ କହିଲେ—ମୁଁ ଆଜି ଯେଉଁ କଥା ଆପଣଙ୍କୁ କହିବାକୁ ଯାଉଛି, ସେ କଥା ଏକମାତ୍ର ଆପଣଙ୍କ ଛଡ଼ା ଅନ୍ୟ କାହାକୁ ମୁଁ କହି ନ ପାରେ । କଥାଟା ହେଉଛି—ଚିଠିଟା ଯେ ମୁଁ ଲେଖି ନାହିଁ ସେ କଥା ଜାଣିବା ଆଗରୁ ଫ୍ଲାନ୍ସିଦୋରଙ୍କର ଯେମିତି ମନଃକଷ୍ଟ ହେଉଥିଲା, ଏବେ ବି ତାଙ୍କର ସେମିତି ମନଦୁଃଖ ହେଉଛି ।

ମୁଁ ଜବାବ ଦେଲି—କଥାଟା ଠିକ୍ ଭାବରେ ବୁଝି ପାରିଲି ନାହିଁ ।

ଖୋଲି କରି ନ କହିଲେ ଆପଣ କିପରି ବୁଝି ପାରିବେ ? କଥାଟା ହେଉଛି—ଫ୍ଲାନ୍ସିଦୋର ଅତି ମାତ୍ରାରେ ତେରେସିର ପ୍ରେମରେ ପଡ଼ିଛନ୍ତି । ଆଜି ଏହି ଚିଠିଟି ଯେ କି ଧରଣର ତାହା ଆପଣଙ୍କୁ ନିଶ୍ଚୟ ମାଲୁମ ଥିବ । ବୁଝିଲେ, ସେହି ଚିଠିଟି ଏ ଚିଠି ଲେଖିଛି । ଆମ ଦୁହିଁଙ୍କର ହସ୍ତାକ୍ଷର ପ୍ରାୟ ସମାନ—ଖୁବ୍ କମ୍ ତଫାତ୍ ଅଛି—ମୋ ସ୍ୱାମୀଙ୍କ ନଜରରେ ଏହି ପାର୍ଥକ୍ୟ ଧରା

ପଡ଼ ନାହିଁ । ଖାଲି ଈର୍ଷାରେ ତାଙ୍କ ଆଖିରେ ଧୂଆଁବାଣ ଲାଗି ଯାଇଥିଲା । ତେଣୁ ହସ୍ତାକ୍ଷରର ଏହି ମେଳ—ଉପରେ ଭଦ୍ରଲୋକର ଠିକଣା ଲେଖା ହୋଇଛି, ତା ଉପରେ ମନର ଏହି ଈର୍ଷା, ସବୁ କିଛି ମିଶିଯାଇ ମୋ କଥା ତାଙ୍କୁ ସ୍ମରଣ କରାଇ ଦେଇଥିଲା—ସେ ଚେଫିସର କଥା ଆଦୌ ଭାବି ପାରିଲେ ନାହିଁ । ଅଥଚ ଏ ସବୁ ହିଁ ତାଙ୍କର ଲାଗି ।

ମୁଁ ଜବାବ ଦେଲି—ଏବେ ସବୁ କଥା ବୁଝି ପାରିଲି ।

ମହିଳାଟି କହିଲେ —ନା, ଏକ୍ଷଣି ବି ଆପଣଙ୍କର ବୁଝିବାକୁ ଢେର୍ ବାକି ଅଛି । ଯା ଭିତରେ ଆହୁରି ଗୋଟିଏ କଥା ରହିଛି । ସେହି କଥାଟି ହେଉଛି, ଭଦ୍ରଲୋକଟି ଅତି ମାତ୍ରାରେ ଚେଫିସର ପ୍ରେମରେ ପଡ଼ିଛି । ବାହାରେ ଯେ ସେ ମୋ ପ୍ରତି ଅନୁରାଗ ଦେଖାଇବାର ଛଳନା କରୁଛି, ତାହା କେବଳ ନିଜର ପ୍ରେମିକା ଠାରୁ ସ୍ପାଲ୍ସିଦୋରଙ୍କୁ ଘୁଞ୍ଚାଇ ଦେବା ପାଇଁ ଚେଷ୍ଟା ଏବଂ ଏଇଥି ଯୋଗୁଁ ମୁଁ ବି ସାଙ୍ଗରେ ମିଶିବାର ଛଳନା କରୁଥିଲି । ଏକ୍ଷଣି ମୋର ଅନୁରୋଧ, ଆପଣ ଆମ ଏଠାରେ କିଛି ଦିନ ରହନ୍ତୁ । କାରଣ କୌଣସି ପୁରୁଷ ଯେତେବେଳେ କୌଣସି ନାରୀର ବିଶ୍ୱାସଘାତକତା ଦ୍ୱାରା ଆହତ ହୁଏ, ସେତେବେଳେ ଜଣେ ସଚ୍ଚା ବନ୍ଧୁର ସାହଚର୍ଯ୍ୟ ତାହାର ଏକାନ୍ତ ପ୍ରୟୋଜନ । ଗୋଟିଏ ଦିଗରୁ ସ୍ପାଲ୍ସିଦୋର ଏକ୍ଷଣି ଶାନ୍ତ ହୋଇ ପାରିଛନ୍ତି ସତ ; କିନ୍ତୁ ଆଉ ଜଣକ ସମ୍ବନ୍ଧରେ ସେ ଯେଉଁ କଥା ଜାଣି ପାରିଛନ୍ତି, ସେହି ଦିଗରୁ ସେ ମଥା ଠିକ୍ ରଖି ପାରିବେ ନାହିଁ ।

ଏହିପରି ଭାବରେ ବନ୍ଧୁ ପତ୍ନୀଙ୍କ ସାଙ୍ଗରେ ନାନା ପ୍ରକାର କଥା ହେଉଁ ହେଉଁ ସ୍ପାଲ୍ସିଦୋର ଫେରି ଆସିଲେ ଏବଂ କହିଲେ —ମୁଁ ଏକ୍ଷଣି ଚେଫିସ ପାଖରୁ ଆସୁଛି । ତା' ଚିଠି ତାକୁ ଫେରାଇ

ଦେଇ ମୁଁ ତା' ସାଙ୍ଗରେ ସମସ୍ତ ସମ୍ପର୍କ ତୁଟାଇ ଦେଇ ଆସିଛି । ...ଆରେ ଭାଇ, କ'ଣ କହିବି, ତାହାର ଗୃହର ଚାକର ମୋତେ ତା' ଘର ଭିତରକୁ ଛାଡ଼ି ନ ଦିଅନ୍ତି । ଚେଫିସ ଘରେ ଅଛି—ସେହି ଭଦ୍ରଲୋକଟିର ଗାଡ଼ିଟା ବି ବାହାରେ ରହିଛି, ଦେଖିଲି । ମୋର ନକଲି ଚିଠିଟା ପାଇ ସେ ହୁଏତ ଉପୁରେ ଧାଇଁ ଆସିଛି—ଚେଫିସକୁ ସାବଧାନ କରିଦେବାକୁ କିମ୍ବା କିଛି ପରାମର୍ଶ ଦେବାକୁ ।

ମୁଁ କହିଲି—ସେମାନଙ୍କ କାର୍ଯ୍ୟ କଳାପରେ ମୁଁ କିନ୍ତୁ ଖୁବ୍ ଖୁସି ହୋଇଛି । ସେମାନେ ତୁମ ସାଙ୍ଗରେ ଆଉ ଦେଖା କରିବେ ନାହିଁ । ଏହା ତୁମର ମହା ସୌଭାଗ୍ୟର ବିଷୟ ।

ଫ୍ରାଲସିଦୋର ଟିକିଏ ଆଗରୁ ଯେଉଁ ଆଘାତ ପାଇ ଫେରି ଆସିଲେ, ତଦ୍ଦ୍ୱାରା ସେ ମୋ କଥାର ଯୌକ୍ତିକତା ଯେ ସେତେବେଳେ ଉପଲବ୍ଧି କରିବେ, ତାହା ଅବଶ୍ୟ ଆଶା କରାଯାଇ ନ ପାରେ । ତଥାପି ମଝିରେ ମଝିରେ ସେ ଏମିତି ଭାବ ଦେଖାଇବାକୁ ଲାଗିଲେ ଯେ ସେମାନଙ୍କର କୌଣସି କଥା ସେ ଆଉ ଗ୍ରାହ୍ୟ କରୁ ନାହାନ୍ତି । ଆଉ ସେତେବେଳେ ଚେଫିସ ପ୍ରତି ତାଙ୍କ ମନ ଭିତରେ ଯେଉଁ ଘୃଣାର ଭାବ ଜାତ ହୋଇଥିଲା, ତାକୁ ଔଦାସୀନ୍ୟରେ ରୂପାନ୍ତରିତ କରିବା ସକାଶେ ମୁଁ ଯତ୍ପରୋନାସ୍ତି ଚେଷ୍ଟା କରିବାକୁ ଲାଗିଲି । କାରଣ ଫ୍ରାଲ୍ସ ଦେ'ରଙ୍କ ଘୃଣା ପାଇବାର ଯୋଗ୍ୟତା ସୁଦ୍ଧା ଚେଫିସ ଠାରେ ନାହିଁ । ଅଥଚ ନିଜ ସ୍ତ୍ରୀର ତୁଳନା କରାଯାଇ ନ ପାରେ । ସ୍ୱାମୀ ଉପରେ ଅଯଥା ପ୍ରାଧାନ୍ୟ ବିସ୍ତାର କରିବାର ଇଚ୍ଛା ତାଙ୍କର କେବେ ହେଲେ ନାହିଁ । ଆଉ, ଯେଉଁ ସ୍ୱାମୀ ତାଙ୍କୁ ଅବହେଳା କରି ତାଙ୍କ ପ୍ରତି ଅନ୍ୟାୟ ଆଚରଣ କରିବାକୁ ଯାଉଥିଲେ, ସେ ତାଙ୍କ ପ୍ରତି ତିଳେ ମାତ୍ର କ୍ରୋଧ ପୋଷଣ କରି ନାହାନ୍ତି । ସେ

ମନରୁ ଏସବୁ କଥା ଏକାବେଳେ ପୋଛି ପକାଇଛନ୍ତି । ମୁଁ ତାଙ୍କୁ ପ୍ରଶଂସା ନ କରି ରହି ପାରୁ ନ । ତାଙ୍କ ସ୍ୱାମୀଙ୍କୁ ମୁଁ ଖାଲି ସାନ୍ତ୍ୱନା ଦେଉଛି ।

ମହାଶୟା, ନାଗରିକ ଜୀବନ ବିଷୟରେ କୌଣସି ଗୋଟିଏ କଥା ମୋ ଠାରୁ ଆପଣ ଶୁଣିବାକୁ ଚାହିଁଥିଲେ ବୋଲି ମୁଁ ଏ ଚିଠି ଖଣ୍ଡିକ ଲେଖିଲି । ଆଶା କରେଁ, ଆପଣ ଏହାକୁ ଗୋଟିଏ ଶୁଣା କଥା ବୋଲି ମନେ କରିବେ । ଏହି ଘଟଣାରେ ମୁଁ ଏତେ ଦିନ ଯାଏ ବ୍ୟସ୍ତ ଥିଲି ।

—କେମତ୍ ଦ୍ୟ କେଲାସ୍

# ଦୁଇ ଭଉଣୀ

ଗତ ଶୀତ ଋତୁରେ ଦୁଇ ଭଉଣୀଙ୍କ ସହିତ ମୋର ପରିଚୟ ହୋଇଥିଲା । ପ୍ରାୟ ନିତି ସେମାନଙ୍କ ସହିତ ଭେଟ ହେଉଥିଲା । କେଉଁଠି ସେମାନଙ୍କ ଭିତରୁ ଜଣକୁ ଦେଖିଲେ ପରିଷ୍କାର ଭାବରେ ଠଉରାଇ ହେଉଥିଲା, ନିଶ୍ଚୟ ଅନ୍ୟଟି ନିକଟରେ କେଉଁଠି ଅଛି । ତେଣୁ ଲୋକେ ସେମାନଙ୍କର ନାମ ଦେଇଥିଲେ ମାଣିକଯୋଡ଼ ।

ଜଣେ ଗୌରତନୁ, ଅପରଟି ଶ୍ୟାମବର୍ଣ୍ଣା । ଯଦିଓ ଯମଜ, ତଥାପି ସେମାନଙ୍କ ଭିତରେ ଏତିକି ମାତ୍ର ମେଳ ଥିଲା ଯେ, ସେମାନଙ୍କୁ ଦେଖିବା ମାତ୍ରେ ପ୍ରେମରେ ନ ପଡ଼ି ଅନ୍ୟ ଗତି ନ ଥିଲା । କାରଣ ଏମିତି ଦୁଇଟି ଉଚ୍ଚାଟକ ଅଥଚ ପରସ୍ପର ସହିତ ଏତେ ଫରକ ଥିବା ଝିଅ ବୋଧହୁଏ ଏ ସଂସାରରେ ଆଉ କେଉଁଠି ଦେଖା ଯାଆନ୍ତି ନାହିଁ । ଆଶ୍ଚର୍ଯ୍ୟର ବିଷୟ, ତଥାପି ଦୁଇ ଜଣଙ୍କର କ୍ଷୀର-ନୀର ଭାବ ଥିଲା । ସ୍ତ୍ରୀ ଜାତି, ସୁତରାଂ ସମ୍ଭବତଃ ବିରୋଧ ଯେ କି ଅଳଙ୍କାର, ଗୋଟିକ ପାଖରେ ଅନ୍ୟଟି ଯେ କିପରି ଦିଶୁଥିଲା, ତାହା ସେମାନେ ସ୍ପଷ୍ଟ ଭାବରେ ଜାଣି ପାରିଥିଲେ ; କିମ୍ବା ହୋଇପାରେ, ସେମାନଙ୍କର ପରସ୍ପର ପ୍ରତି ଭ୍ରଗଯୁଷ୍ଠା ବାସ୍ତବିକ । ତେବେ ଯେତେବେଳେ ଦୁହେଁ ଏକାଠି ହେଲେ ବୈଲକ୍ଷ୍ୟ

ହେତୁ ସେମାନଙ୍କର ରୂପ ବେଶି ଫୁଟି ଉଠେ, ସେତେବେଳେ ମୋ ମତରେ ସେମାନଙ୍କର ଯୋଡ଼ ବାନ୍ଧିବାର ଭିତର ମୂଳ କାରଣଟା ହେଲା ସେଇଆ । କାରଣ ସମ-ବୟସୀ ଓ ସମାନ-ସୁନ୍ଦରୀ ଦୁଇଟି ଭଉଣୀ ଯେ ପରସ୍ପର ପରସ୍ପରର ଦୃଷ୍ଟିରେ ହୀନ ନ ଥିଲେ, ଏହା ସ୍ୱୀକାର କରିବା ବଡ଼ କଠିନ; କିନ୍ତୁ ବ୍ୟବହାରରେ ତାର ବିପରୀତ ଦେଖାଯାଏ । ଯେଉଁଠାକୁ ଯାଉଥିଲି ଦେଖି ପାରୁଥିଲି ସଦା ବେଳେ ଦୁହେଁ ଏକାଠି—ଏ ଯେମିତି ତାହାର ଛାଇ; ତିଳେ ମାତ୍ର ଛାଡ଼ବାଡ଼ ନାହିଁ, କେତେବେଳେ ଘରର ଗୋଟିଏ କୋଣରେ ଦୁଇ ସଖୀ ଠେଲାଠେଲି-ଭାବ ଦେଖାଇ ଗଦ୍‌ଗଦ ହେଉଥିଲେ—କେତେବେଳେ ଦେହକୁ ଦେହ ଲଗାଇ ଗୋଟିଏ ଶୋଫାରେ ଆଉଜି ବସି ରହୁ-ଥିଲେ । ମୋ ନିକଟରେ ଏହି କଥାଟି ଭାରି ଅଦ୍‌ଭୁତ ଜଣା ଯାଉଥିଲା । ଆମ ନବ-ଯୁବକଙ୍କ ଦଳଟି ମଧ୍ୟ ପୂରାପୂରି ହତାଶ ହୋଇ ପଡ଼ୁଥିଲେ । କାରଣ ନଣାକୁ ଏପରି ଗୋଟିଏ କଥା କୁହାଯାଇ ନ ପାରେ, ଯାହା ହିବା ନ ଶୁଣି ପାରେ ; ଆଉ ନଣାର ଦୃଷ୍ଟି ଏଡ଼ାଇ ହିବାର ହାତରେ ଦୁଇ ଧାଡ଼ି ଲେଖା ଗୁଞ୍ଜି ଦେବ ଏ ସାହସ କାହାର ? —ଆମ ପାଞ୍ଚ ଜଣଙ୍କର ଏହିସବୁ ନିଷ୍ଫଳ ଚେଷ୍ଟା ଦେଖି ସେମାନଙ୍କୁ ଭାରି ମଜା ଲାଗୁଥିଲା, ଅତି ଶ୍ରେଷ୍ଠ ଶ୍ରେଣୀ ସ୍କୁଲପିଲାଙ୍କ ପରି ସେମାନେ ହସି ହସି ଗଡ଼ି ଯାଉଥିଲେ—ଏହା ହିଁ ସେମାନଙ୍କର ନିତିଦିନିଆ ଆମୋଦ ଥିଲା ; ପ୍ରଥମେ ଜଣକୁ ନଗୁଇ ଏବଂ ତାହାର ଆଶା ବଢ଼ାଇ, ଶେଷରେ କେଉଁଠି ଥଟ୍ଟା କରିବା, କେଉଁଠି ବା ନାରୀ-ସୁଲଭ ରାଗ ଦେଖାଇ ସେହି ଆଶା ଭାଙ୍ଗି ଦେବା । ଯେତେବେଳେ ଏହି ହତଭାଗା ବିଚାରୀମାନେ ମନକଥା ମନରେ ମାରି ବହୁ କଷ୍ଟରେ ଲିଖିତ ସେମାନଙ୍କର ଚତୁର୍ଦ୍ଦଶପଦୀ କବିତା କମ୍ପା ପ୍ରଣୟ-ଚିଠାଉ ମୁହଁ ଆମ୍ବିଲା କରି ଧୀରେ ଧୀରେ ପୁଞ୍ଜି

ପକେଟରେ ପୂର୍ଣ୍ଣ, ସେତେବେଳେ ସେମାନଙ୍କର ଚେହେରା ଦେଖିବା ଭଳି ଜିନିଷ ହୋଇଯାଏ ! ମୋର ଜଣେ ବନ୍ଧୁକୁ ସେମାନେ ଏପରି ଅପଦସ୍ତ କରିଥିଲେ ଯେ, ତା ପରେ ହପ୍ତାଏ ଖଣ୍ଡେ ସେ ନିଜର ବେଶଭୂଷାରେ ଏତେ ଖାତିରଗ ହୋଇ ପଡ଼ିଲା ଯେ ତାଙ୍କୁ ବିବାହିତ ବୋଲି ଭ୍ରମ ହେଲା । ଆଉ ପାଞ୍ଚ ଜଣଙ୍କ ପରି ମୁଁ ବି ସେମାନଙ୍କ ନିକଟରେ ପ୍ରଜାପତି ସଦୃଶ ବ୍ୟବହାର ଆରମ୍ଭ କରିଦେଲି । ଥରେ ଉଡ଼ି ଦିବା ପାଖକୁ ଯାଏ ତ, ପୁଣି ଉଡ଼ି ନିଶା ପାଖକୁ ଚାଲିଆସେ; କିନ୍ତୁ ସେହି ଉଡା ହିଁ ସାର, ଫଳ କିଛି ହେଲା ନାହିଁ । କିଛି ଦିନ ପରେ ଏମିତି ଭିଡ଼ିଗଲି ଯେ, ମନେ ମନେ ବନ୍ଧୁ ଶ୍ରୀଯୁକ୍ତ —କାଲେ ନିଜର ବେଶଭୂଷାର ଗୁଳଚକ୍ୟରେ କାମଟା ହାସଲ କରିନେବେ, ଏହି ଉପରେ ସେତେବେଳେ ଆଉ ମରି ହେଲା ନାହିଁ । ତାହା ଛଡ଼ା ମୋର ନୂଆ ଆଦରର ପୋଷାକଟା ପିନ୍ଧି ଦୁଇ ଦିନ ବାହା-ରିକୁ ନ ଯାଇ ବା କପରି ମରନ୍ତି ।— ସୁତରାଂ ମୋର ଆତ୍ମହତ୍ୟାଟା କିଛି ଦିନ ପାଇଁ ମୂଲତବି ରଖିବାକୁ ହେଲା ; କିନ୍ତୁ ଆଜି ଯାଏ ବୁଝି ପାରିଲି ନାହିଁ, ସେହି କାମଟା ଠିକ୍ ହୋଇଥିଲା କି ଭୁଲ ହୋଇଥିଲା ।

ଦିନେ ନିଜର ମନ ଖୋଜି ପାଇଲା ବେଳକୁ ଦେଖିଲି ସର୍ବନାଶ ! ମୁଁ ଦୁଇ ଭଉଣୀଙ୍କୁ ଏକା ସାଙ୍ଗରେ ଭଲ ପାଉଛି ! କି ଲଜ୍ଜାକର କଥା; କିନ୍ତୁ କଥାଟା ସତ, ଜଣକୁ ନୁହେଁ, ଦୁଇ ଜଣଙ୍କୁ, ସମାନ ଭାବରେ । ଶ୍ରୀମତୀ—ଏ କଥା ଶୁଣିଲେ ନିଃସନ୍ଦେହରେ ଟିକିଏ ଓଠ ବଙ୍କାଇ କହିବେ— 'ପାପିଷ୍ଠ !' କିନ୍ତୁ ଆପଣମାନେ ସମସ୍ତେ ଜାଣନ୍ତି ମୋ ପରି ଜଣେ ନିଷ୍ପାପ ଲୋକ ଆଉ ଦୁନିଆରେ ନାହିଁ । ତେବେ କଥା କ'ଣ କି, ପୁରୁଷର ମନ ନାରୀ-ଜାତିର ମନ ଭଳି ଏତେ ବିଚିତ୍ର ଓ ଏତେ ଅଦ୍ଭୁତ ନ ହେଲେ ସୁଦ୍ଧା ଟିକିଏ

ଅଦ୍ଭୁତ ଜିନିଷ । ସେମାନଙ୍କର ଯେ କେତେବେଳେ କି ଅବସ୍ଥା ହୁଏ, ତାହା କେହି କହି ପାରିବ ନାହିଁ । ଏପରିକି ଶ୍ରୀମତୀ ମଧ କହି ପାରିବେ ନାହିଁ । ହୁଏତ ମୁଁ ବି ଏହା ଶୁଣିଛି ଯେ ଦିନେ ନା ଦିନେ ତାହା ପ୍ରତି ପ୍ରଣୟାସକ୍ତ ହୋଇ ପାରେ ।

ନଣା ଦେଖିବାକୁ ଲମ୍ବ ପତଳ, ମଥାରୁ ପାଦ ଯାଏ ଲହ-ଲହ ହେଉଛି । ଆଉ ଆଖି ! ଦୁନିଆରେ ସେ ଆଖିର ଆଉ ପଟାନ୍ତର ନାହିଁ । ଭ୍ରୂ ଦୁଇଟି ଯେମିତି ତୁଳିରେ ଅଙ୍କିତ ! ହିବାର ତୋଳା ନାକ । ବର୍ଣ୍ଣ ଶ୍ୟାମ ; କିନ୍ତୁ ତାହା ଉଜ୍ଜ୍ୱଳ ଉତ୍ତପ୍ତ ଶ୍ୟାମ । ହାତ ଦୁଇଟି ନିଖୁଣ । ବାହୁ ଯୁଗଳ ଟିକିଏ କୃଶ, ଚମତ୍କାର ସୁନ୍ଦର । ଆଉ ବାହୁର ପାଖଆଖ ଏବେ ନୂତନ ବୟସରେ ଯେତେ ଦୂର ସମ୍ଭବ ପରିପୁଷ୍ଟ । ଯୌବନ ବି ଦେହରେ ଭରପୂର ହୋଇ ଯିବାକୁ ଟିକିଏ ସମୟ ନିଏ । କିଏ ନ ଜାଣେ, ଥୟ ନ ଧରିଲେ ଆତ୍ମ ଭୁଲ କରି ପାରେ ନାହିଁ ଗୋଟିଏ କଥାରେ, ସେ ହେଉଛି ସ୍ୱର୍ଗର ଦେବୀ ।

ଏପରି ଝିଅକୁ ଭଲ ପାଇ କ'ଣ ଭୁଲ୍ କରିଥିଲି ?

ଆଗରୁ କହିଛି ହିବାର ରଙ୍ଗ ଫରଣ, ତାକାଉ ମଲମଲି ଭଳି ଶୁଭ୍ର, ସ୍ୱଚ୍ଛ ଓ ସୁକୁମାର । ଆଖି ଦୁଇଟି ନୀର ପରି ପରିଷ୍କାର ଓ ଗଭୀର । ମଥାଏ କେଶ, ଘନ, ଦୀର୍ଘ, ରେଶମ ପରି ଫର ଫର ସେହି କେଶ ନିଶ୍ୱାସର ଭାର ସହି ପାରୁ ନ ଥିଲା, ମୁହଁର ଚାରି ପଟେ ଉଡ଼ି ଖେଳେଇ ହୋଇ ପଡ଼ୁଥିଲା । ତାହା ଛଡ଼ା ଦୁଇଟି କୋମଳ ପାଦ, ବକ୍ଷ ଓ କଟୀ । ହଠାତ୍ ଦେଖିଲେ ପରୀ ବୋଲି ଭ୍ରମ ହୁଏ ।

ଶୁଣି କ'ଣ ମନେ କରୁଛ ? ପ୍ରେମର ଉପଯୁକ୍ତ ପାତ୍ରୀ ନୁହେଁ କି ? ଆଉ ଦିନେ, ମନ ଭିତରେ ଭଲ ଭାବରେ ତଲେଇ ଦେଖିଲି (କଥା ଆହୁରି ଭୟାନକ) ସେ ହିବା ନଣା ଦୁହିଁଙ୍କ ଭିତରୁ ଜଣକୁ

ବି ମୁଁ ଭଲ ପାଏ ନାହିଁ । ଖାଲି ଦିବାକୁ ଦେଖି ମୋର ମନ ମାନେ ନାହିଁ । ଭଉଣୀ ଛଡ଼ା ନିଶା ଯେମିତି ଅଲଗା ମଣିଷ— ଏକବାରେ ରସ-ସ୍ୱାଦ ହୀନ, କିନ୍ତୁ ପୁଣି ଦୁହେଁ ଏକାଠି ହେଲେ ଉଭୟଙ୍କ ପ୍ରତି ମୋର ପ୍ରେମ ବି ଫେରି ଆସୁଥିଲା । ବୁଝିଲି ମୋର ମନ ଶ୍ୟାମାର ରୂପରେ ଭୁଲି ନାହିଁ କି ଗୌରୀର ରୂପରେ ବି ନୁହେଁ । ଦୁଇ ଭଉଣୀଙ୍କର ଦୁଇଟି ବିଭିନ୍ନ ପ୍ରକାରର ସୌନ୍ଦର୍ଯ୍ୟର ମିଳନ ମୋର ମୋହର କାରଣ । ମୁଁ ଜଣେ ମନ-ଗଢ଼ା ଯୁବତୀର ଉପାସନା କରୁଛି । ସେ ଦିବା ନୁହେଁ କି ନିଶା ବି ନୁହେଁ; କିନ୍ତୁ ଏହାର ଅଧେ ଓ ତାହାର ଅଧେ ଦେଇ ସେ ନିର୍ମିତ । ଦୁଇଟି ସୁନ୍ଦରୀ ଯୁବତୀ-ମିଥୁନର ସହବାସ-ଜାତ ଗୋଟିଏ ବିଚିତ୍ର ମାନସୀ ମୂର୍ତ୍ତି । ଜଣକ ଠାରୁ ତାହାର ହସ ସଂଗ୍ରହ, ଆଉ ଅପର ଠାରୁ ତୀବ୍ର କଟାକ୍ଷ । ଗୌରୀର ବିଷାଦ ଓ ଶ୍ୟାମାର ପ୍ରଫୁଲ୍ଲତା ସେଥିରେ ଏକାଠି ମିଳିତ । ଦୁଇ ଜଣ ଏକାଠି ହେଲେ ହିଁ ଏହି ଅପୂର୍ବ ଅବର୍ଣ୍ଣନୀୟା ମାୟା-ସୁନ୍ଦରୀ ମୋତେ ଛଳନା କରିବାକୁ ଆସେ । ଦୁଇ ଭଉଣୀଙ୍କର ଯୋଡ଼ି ଭାଙ୍ଗିବା କ୍ଷଣି ସେ ହାଓ୍ୱାରେ ମିଳାଇ ଯାଏ । କ୍ରମେ କଳ୍ପନାରେ ଦୁଇ ଭଉଣୀଙ୍କୁ ତରଳାଇ କରି, ଗୋଟିଏ ଗୁଞ୍ଚରେ ପକାଇ ଝିଅଟିଏ ଗଢ଼ି ତାକୁ ଭଲ ପାଇବାକୁ ଆରମ୍ଭ କଲି । ଯେଉଁ ଦିନ ସେମାନେ ମୋର ଭଲ ପାଇବାର ଧାରା ବୁଝି ପାରିଲେ, —କହିବା ବାହୁଲ୍ୟ ତାହା ବୁଝିବାକୁ ବେଶି ଡେରି ହେଲା ନାହିଁ, ସେହି ଦିନରୁ ସେମାନଙ୍କର ମୋ ପ୍ରତି ଟିକିଏ ବିଶେଷ ରକମ ଆକର୍ଷଣ ଦେଖିବାକୁ ପାଇଲି । ଖୁବ୍ ଭଲ ଭାବରେ ଜଣା ଯିବାକୁ ଲାଗିଲା ଯେ, ଅନ୍ୟମାନଙ୍କ ଅପେକ୍ଷା ମୁଁ ସେମାନଙ୍କ ମନ ପାଖକୁ କେତେକ ପରିମାଣରେ ଆଗେଇ ଆସିଛି ।

ଇତି ମଧ୍ୟରେ ମୁଁ ଦିବା ଓ ନିଶାର ମାଆଙ୍କ ସହିତ ବନ୍ଧୁତା ସ୍ଥାପନ କରି ସାରିଥିଲି । ବେଳ ନାହିଁ ଅବେଳ ନାହିଁ,

ଯେତେବେଳେ ମୋର ଖୁସି ସେମାନଙ୍କ ଘରକୁ ଯାଉଥିଲି । ସେଠାରେ ସମସ୍ତେ ମୋତେ ନାମ ଧରି ଡାକୁଥିଲେ । ଝିଅମାନେ ଛବି ଆଙ୍କୁଥିଲେ; ଆଜି ମୁଁ ତା ଉପରେ ମୋର ତୂଳି ଚଳାଉଥିଲି । ମୁଁ ନ ହେଲେ ସେମାନଙ୍କର ଗାନ ବାଜଣା ଜମୁ ନ ଥିଲା ; କିନ୍ତୁ ମୋର ଅବସ୍ଥା ଏମିତି ହେଲା ଯେ, ମୋର ସଙ୍ଗିନୀ ଦୁଇଟି ଦେବକନ୍ୟା ହେଲେ କ'ଣ ହେବ ସେମାନଙ୍କର ବାସସ୍ଥାନ ନରକରେ ଥିଲା ।

ସେମାନଙ୍କର ସଙ୍ଗସୁଖ ମୋ ନିକଟରେ ଯେତିକି ମଧୁର ଥିଲା, ସେତିକି ଯନ୍ତ୍ରଣାଦାୟକ ମଧ୍ୟ । ମୁଁ ବସି ବସି ଛବି ଆଙ୍କୁଥିଲି । ଦୁଇ ଭଉଣୀ ଦୁଇ ପାଖରେ ମୋର କାନ୍ଧ ଉପରେ ଈଷତ୍ ଝୁଙ୍କି ପଡ଼ି ଏକ ମନରେ ତାହା ଦେଖୁଥିଲେ । ସେମାନଙ୍କ ହୃଦୟର ଧଡ଼ପଡ଼ ଶବ୍ଦ ମୋ ପକ୍ଷରେ, ସେମାନଙ୍କର ନିଶ୍ୱାସ-ପ୍ରଶ୍ୱାସ ମୋର ମଥାର ବାଳ ଭିତରେ ଅନୁଭବ କରୁଥିଲି । ଜୀବନରେ ବୋଧହୁଏ ଏତେ ଖରାପ ଛବି ଆଉ କେବେ ଆଙ୍କି ନ ଥିଲି ; କିନ୍ତୁ ସେମାନେ କହୁଥିଲେ 'ଅତି ଚମତ୍କାର' । କେତେବେଳେ ବା ଘରର କୋଣରେ, ଘରଦ୍ୱାର ଅନ୍ତରାଳରେ, ଜଣେ ଡାହାଣରେ ତ ଅନ୍ୟଟି ବାମରେ, ମଝିରେ ମୁଁ, ତିନି ଜଣ ବସି କାକାତୁଆ ପରି ଅନର୍ଗଳ ବକି ଯାଉଥିଲୁ । କ'ଣ ଯେ କଥା ହେଉଥିଲୁ, ତାର କୌଣସି ଅର୍ଥ ନାହିଁ । ସେମାନେ ଦୁହେଁ ଯାକ ପ୍ରାୟ ଏକ ସାଙ୍ଗରେ କଥା କହୁଥିଲେ । ମୁଁ କେତେବେଳେ ନିଶାର କଥାର ଜବାବ ବିଭାକୁ ଦେଉଥିଲି ତ କେତେବେଳେ ବିଭାର କଥାର ଜବାବ ନିଶାକୁ ଦେଉଥିଲି । ହସ ଖୁସିର କଥା ଯେ ବେଶି କିଛି ହେଉଥିଲା ତାହା ବି ମନେ ହେଉ ନାହିଁ, ତଥାପି ମଝିରେ ମଝିରେ ଆମେ ହସି ହସି ଗଡ଼ି ଯାଉଥିଲୁଁ । ଏହି ଅବସରରେ ମୋର ସ୍ତ୍ରୀ ଆଉ

ଗୋଟାଏ କୋଣରେ ବସି ପାଞ୍ଚ ବର୍ଷ ତଳର ଖଣ୍ଡିଏ ପୁରୁଣା ଖବରକାଗଜ ଏକ ମନରେ ପଢ଼ୁଥିଲା, ନୋହିଲେ ଚୌକିରେ ବସି ଟିକଏ ଢୁଲାଇ ପଡ଼ୁଥିଲା ।

ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ ମୋର ଅବସ୍ଥା ଦେଖି ଆଜି ପାଞ୍ଚ ଜଣଙ୍କ ଭିତରୁ ଲାଳ ଗଡ଼ୁଥିଲା ଏବଂ ଅନ୍ୟମାନେ ହିଂସା କରୁଥିଲେ । ଏମିତି ଲୋଭନୀୟ ଅବସ୍ଥା କେହି କେବେ ସ୍ୱପ୍ନରେ ବି କଳନା କରି ନ ଥିଲେ । ମୁଁ କିନ୍ତୁ ଭିତରେ ଭିତରେ ପୂରା ମାତ୍ରାରେ ସୁଖୀ ନ ଥିଲି । ଯଦି କେତେବେଳେ ଆଦର କରି ବାର ମୁଖ ଚୁମ୍ବନ କରୁଥିଲି, ମନେ ହେଉଥିଲା ଯେମିତି ଗୋଟାଏ କ ଅଭାବ ରହିଗଲା, ତାହା ଯେମିତି ଷୋଳ ଅଣା ଚୁମ୍ବନ ନୁହେଁ । ଯଦି ତତ୍‌କ୍ଷଣାତ୍ ଫେରିପଡ଼ି ନଣାର ମୁଖ ଚୁମ୍ବନ କଲି ତ ଜଣା ଯାଉଥିଲା ତାହା କେବଳ ପୂର୍ବ ଚୁମ୍ବନର ପୁନରୁକ୍ତି । ଦୁଇ ଜଣଙ୍କର ମୁଖ ଏକଠି କରିନେଇ ଏକ ବାଣରେ ଦୁଇଟି ପକ୍ଷୀ ମାରି ନ ପାରିଲେ ମୋର ଆଉ ପରିତୃପ୍ତ ହେବାର ସମ୍ଭାବନା ନ ଥିଲା ; କିନ୍ତୁ ଏହି ଇଚ୍ଛା ହେବା ଯେତେ ସହଜ, ଚରିତାର୍ଥ କରିବା ଅବଶ୍ୟ ସେତେ ସହଜ ନୁହେଁ । ଆଶ୍ଚର୍ଯ୍ୟର ବିଷୟ ଏହା ଯେ, ଦୁହିଁଙ୍କ ଭିତରେ ସଉତୁଣୀ ଭାବର ଲକ୍ଷଣ ତିଳେ ମାତ୍ର ନ ଥିଲା । ଅବଶ୍ୟ ଦୁଇ ଜଣ ଯାକ ମୋ ଠାରୁ ସମାନ ଆଦର-ଯତ୍ନ ପାଉଥିଲେ । ମୋର କୌଣସି ଦିଗରେ ପକ୍ଷପାତ ନ ଥିଲା—ତଥାପି ! ଜାଣେ ନା ସେମାନେ ମୋ ଉପରେ ଯେ ଭଲ ମୋହ ବିସ୍ତାର କରୁଥିଲେ ପରସ୍ପର ପରସ୍ପର ଉପରେ ବି ସେମିତି କରୁଥିଲେ କି ନା; କିନ୍ତୁ ତାହା ଛଡ଼ା ଆଉ କି କାରଣରୁ ଉଭୟଙ୍କ ଭିତରେ ଏମିତି ସଦ୍‌ଭାବ ସମ୍ଭବ ହୋଇ ପାରନ୍ତା ? ଜଣକର ବିରହରେ ଅନ୍ୟଟି ଏକବାରେ ଝାଉଁଳି ପଡ଼ୁଥିଲା । ମୋର

ବିଶ୍ୱାସ, ସେମାନେ ମନେ ମନେ ଦୃଢ଼ ଭାବରେ ଜାଣିଥିଲେ ଯେ ପରସ୍ପର ପରସ୍ପରର ଅର୍ଦ୍ଧେ ମାତ୍ର, ଦୁହେଁ ଏକାଠି ହେଲେ ଯାଇ ପୂର୍ଣ୍ଣ ଭାବରେ ଗୋଟାଏ ଜୀବ ହେଉଥିଲେ । ବୋଧହୁଏ ଯେଉଁ ରାତିରେ ମାତୃ-ଗର୍ଭରେ ସେମାନଙ୍କ ଜୀବନର ପ୍ରଥମ ସୂତ୍ରପାତ ହେଲା, ସମ୍ଭବ ହେବା ବିଷୟରେ ବ୍ରହ୍ମା ଅବହିତ ନ ଥିବାରୁ ଦୂତର ହାତରେ ଗୋଟିଏ ମାତ୍ର ଆତ୍ମା ପଠାଇ ଦେଇଥିଲେ ; ଏବଂ ସେହି ଭଦ୍ରଲୋକ ପୃଥିବୀକୁ ଆସି ଯେତେବେଳେ ତାହାର ଭୁଲ୍ ଠଉରାଇ ପାରିଲା, ସେତେବେଳେ ପୁଣି ଏତେ ଦୂର ବ୍ରହ୍ମଲୋକକୁ ଆଉ ଗୋଟାଏ ଆତ୍ମାର ସନ୍ଧାନରେ କିଏ ଫେରି ଯାଉଛି ବୋଲି ଭାବି ଯେଉଁଟି ସାଙ୍ଗରେ ନେଇ ଆସିଥିଲା ସେଇଟିକୁ ଅଧାଅଧି ଭାଗ କରି ଦୁଇ ଜଣଙ୍କୁ ଦେଇଗଲା । ମୋ ମନ ଭିତରେ ଅନ୍ତତଃ ଏହି ସଂସ୍କାର ଏପରି ଦୃଢ଼ବଦ୍ଧ ହୋଇ ରହିଥିଲା ଯେ, ମୁଁ ସେମାନଙ୍କର ନାମ ବଦଳାଇ ଗୋଟିଏ ମାତ୍ର ନାମ ଦେଇଥିଲି ।

ଦିବା-ନିଶାର ମନର ଅବସ୍ଥା ବି ମୋର ପରି ଅସହ୍ୟ ହୋଇ ଯାଉଥିଲା । ସେମାନେ ବି ବରାବର ମୋର ପରି ଯନ୍ତ୍ରଣା ଭୋଗ କରୁଥିଲେ । ଦିନେ ଜାଣେ ନା ଯୁକ୍ତି ଛଳରେ କିମ୍ବା ଏମିତି ଆପଣା ଖୁଆଁକୁ, ଦୁଇ ଜଣ ଦୁଇ ପାଖରୁ ନକ୍ଷତ୍ର ପରି ଖସି ଆସି ମୋର ଗଳା ବେଷ୍ଟନ କଲେ । ମୁଁ ଗୋଟାଏ ଆଡ଼କୁ ଟିକିଏ ହଲି ଜଣକୁ ଆଦର କରିବାର ଉପକ୍ରମ କରୁଛି, ଏମିତି ସମୟରେ ଦୁଇ ଭଉଣୀ ଯୁଗପତ୍ ମୋର ଦୁଇ ଗଣ୍ଡ ସ୍ଥଳରେ ଦୁଇଟି ଅଧର ସ୍ଥାପନ କଲେ । ସେ ଦିନ ସେମାନଙ୍କ ଆଖିରୁ ନିଆଁ ବାହାରୁଥିଲା । ମୋର ଛାତି ଭିତରର ହୃତ୍‌ପିଣ୍ଡଟା ଏମିତି ଧଡ଼ପଡ଼ ହେଉଥିଲା ଯେ ମନେ ହେଲା, ବୋଧହୁଏ ଭାଙ୍ଗି ଯିବ । ସେମାନେ ତୀର ବେଗରେ ଧାଇଁ ଆସିଥିଲେ ବୋଲି ଖୁବ୍ ସମ୍ଭବତଃ ଏହିସବୁ ଲକ୍ଷଣ ଦେଖା

ହୋଇଥିଲା ; କିନ୍ତୁ ସେ ଦିନ ମୁଁ ଅନ୍ୟ ରକମ ବୁଝିଥିଲି । ଏମିତି ଫୁର୍ତ୍ତି ଓ ଏମିତି ଅସଂଯମର ଭାବ ମୁଁ ଆଗରୁ କେବେ ସେମାନଙ୍କ ମୁଖରେ ଦେଖି ନ ଥିଲି । ସେଇଟି ଦୁଇଟି ଚୁମ୍ବନର ଫଳ ଗୋଟିଏ ମାତ୍ର ଅନୁଭୂତି । ଫଳରେ ସେଇ ଦୁଇଟି ଚୁମ୍ବନ ଦୁଇ ନୁହେଁ, ଦୁଇ ମିଶି ଏକ ; ଏ ଚୁମ୍ବନ ଦିବାର ନୁହେଁ କି ନିଶାର ବି ନୁହେଁ ; କିନ୍ତୁ ଉଭୟର ମିଳନରେ ଯେଉଁ ମାୟା-କୁମାରୀଟି ସୃଷ୍ଟି ହୋଇଥିଲା, ତାହାର । ସେ ଦିନ ଖାଣ୍ଟି ସୁଖ କାହାକୁ କହନ୍ତି, ଅନ୍ତତଃ ତିନି ସେକେଣ୍ଡ ପାଇଁ ମୁଁ ତାହା ଅନୁଭବ କରିଥିଲି; କିନ୍ତୁ ହଠାତ୍ ମୋର ମନେ ପଡ଼ିଲା ଯେ ମୁଁ ପୁରୁଷ ଏବଂ ଯେଉଁ ପୁରୁଷ ତଳେ ଦେଖିଲେ ବି ଅପଣର ଗୁମର ବୁଝେ ସେ କଦାପି ସ୍ତ୍ରୀ ଜାତିର ଏମିତି ବିପରୀତ ରୀତିକୁ ପ୍ରଶ୍ରୟ ଦେଇ ପାରିବ ନାହିଁ । ସେତେବେଳେ ମୁଁ ଦିବାର ଗୋଟିଏ ଓ ନିଶାର ଗୋଟିଏ, ଏମିତି ଦୁଇଟି ହାତ ଆଣି ପରସ୍ପରର ଆଙ୍ଗୁଳିକୁ ଏକାଠି କରି ମୋର ମୁଖ ଉପରକୁ ନେଇ ଆସିଲି । ଏହି ଉପାୟରେ ମୁଁ ସେମାନଙ୍କ ଆଦରର ପ୍ରତିଦାନ ଦେଲି । ଦିବା ଓ ନିଶା ଏକା ସଙ୍ଗରେ ନିଜର ହାତରେ ମୋର ଅଧରର ସ୍ପର୍ଶ ଅନୁଭବ କଲେ ।

ଆପଣମାନେ ବୋଧହୁଏ ମନେ ମନେ ହସୁଛନ୍ତି ଏବଂ ଭାବୁଛନ୍ତି ମୁଁ ନିତାନ୍ତ ପାଗଳ, ଆଉ ଦୁଇଟି ଷୋଡ଼ଶୀ ସୁନ୍ଦରୀର ପ୍ରେମ ଲାଭିବା ସେମିତି କିଛି ବିପଦ ନୁହେଁ; କିନ୍ତୁ ମୁଁ ଜୀବନରେ ଏମିତି ଜ୍ୱାଳାରେ ଆଉ ଜଳି ନାହିଁ । ମୁଁ ଚାହିଁଥିଲେ ଦିବା ମୋର ହୋଇ ପାରିଥାନ୍ତା କିମ୍ବା ଚାହିଁଥିଲେ ନିଶା ମୋର ହୋଇ ପାରି-ଥାନ୍ତା; କିନ୍ତୁ ଏମାନଙ୍କ ଭିତରୁ ଜଣକୁ ନେଇ ବି ମୁଁ ସୁଖୀ ହୋଇପାରି ନ ଥାନ୍ତି । ଯାହା ଅସମ୍ଭବ ମୁଁ ତାହା ହିଁ ଚାହେଁ,— ଦୁଇ ଜଣଙ୍କୁ ଏକା ସାଙ୍ଗରେ ଏକ ସମୟରେ । ଦେଖି ପାରୁଥିବେ ଅବଶ୍ୟ, ସେତେବେଳେ ମୋ ମଥା ଠିକ୍ ନ ଥିଲା ।

ଏତିକି ବେଳେ ଇଉ-କା-ଲି ନାମରେ ଖଣ୍ଡିଏ ଚୀନା ଉପନ୍ୟାସ ମୋ ହାତରେ ଆସି ପଡ଼ିଲା । ତାର ପ୍ରଥମ ଦୁଇ ଘର ଖଣ୍ଡ କୌଣସି ମତେ ଝାଳ ନାଳ ହୋଇ ପାର କଲି । ଖାଲି ଚାହା ପିଆଲା, ଖାଲି ବଗ ଓ ଖାଲି ପାଇସର ବର୍ଣ୍ଣନା ପଢ଼ି ପଢ଼ି ପ୍ରାଣ ବେହାଲ ହୋଇ ଯାଇଥିଲା । ତାପରେ ଯେଉଁଠି ଶ୍ରୀଯୁକ୍ତ ସୀ-ଇଉପି, ବି. ଏ. ଗୋଟିଏ ଖୁଡ଼ୁତା କି ମାମୁଁ ଝିଅ-ଭଉଣୀଙ୍କ ପ୍ରେମରେ ଅନେକ ଦିନ ହେଲା ବୁଡ଼ି ରହିଥିଲେ, ଏମିତି ସମୟରେ ହ'ଓ-ମ-ଲି ନାମକ ଆଉ ଗୋଟିଏ ଖୁଡ଼ୁତା କି ମାମୁଁ ଝିଅ ଭଉଣୀର ପ୍ରେମରେ ବି ପଡ଼ିଗଲେ । ସେହି ଯୁଗଳ ପ୍ରେମର ଉପାଖ୍ୟାନ ମୋତେ ଏମିତି ଚମତ୍କାର ଲାଗିଲା ଯେ ସେହି ବହିଟି ଆଉ ଛାଡ଼ି ପାରିଲି ନାହିଁ । ଶେଷରେ କ'ଣ ଜାଣିବା ପାଇଁ ଆଗ୍ରହ ସହକାରେ ଏକନିଶ୍ୱାସକେ ବହିଟି ପଢ଼ି ଯିବାକୁ ଲାଗିଲି । ଶେଷରେ ସୀ-ଇଉପି ସାଙ୍ଗରେ ଦୁଇ ଜଣଙ୍କର ବିବାହ ହୋଇଗଲା । ମୋ କଥା ଯଦି ବିଶ୍ୱାସ କରିବେ ତ ମୁଁ କହିପାରେ ଯେ, ହଠାତ୍ ଦେଖିଲି ଚୀନା ହେବାର ପ୍ରଚଣ୍ଡ ଆଗ୍ରହ ମୋର ହୋଇଛି—ଖାଲି ନିର୍ବିବାଦରେ ଦୁଇଟି ବିବାହ କରିବାର ଲୋଭରେ । ବର୍ତ୍ତମାନ ଇଉ-କା-ଲି ଭଳି ଆଉ କୌଣସି ବହି ମୋତେ ସେତେ ଭଲ ଲାଗେ ନାହିଁ । ଦଶ ଥର ହେଲେ ବି ସେ ବହିଟି ମୁଁ ହାତରୁ ଛାଡ଼ିଲି ନାହିଁ । ଦିନକୁ ଦିନ ମୋର ଅବସ୍ଥା ଆହୁରି ଅସହ୍ୟ ହୋଇ ପଡ଼ିଲା । ଶେଷକୁ ଦିନେ ଏପାଖ କି ସେପାଖ ଯାହା ହେବାର ଗୋଟାଏ ହେଉ ସ୍ଥିର କରି, ସେହି ଆପଦକୁ ଦୂର କରିବା ପାଇଁ ହୁଏ ତ ଦିବା ନୋହିଲେ ନିଶା ଜଣକୁ ହେଲେ ବିବାହ କରିବି ବୋଲି ଦୃଢ଼ ସଙ୍କଳ୍ପ ହୋଇ ସେମାନଙ୍କ ଘରେ ଯାଇ ପହଞ୍ଚିଲି । ମାଆଙ୍କ ସହିତ ସାକ୍ଷାତ୍ ହେଲା । ତତ୍‌କ୍ଷଣାତ୍

ମୁଁ ଆରମ୍ଭ କଲି—"ମୋର ଇଚ୍ଛା, ଆପଣଙ୍କର ଗୋଟିଏ ଝିଅକୁ ବିଭା ହେବା; କିନ୍ତୁ ସେମାନେ ଉଭୟ ରୂପ-ଗୁଣରେ ଅତୁଳନୀୟା,—ତେଣୁ ଦୁହିଁଙ୍କ ଭିତରୁ କାହାକୁ ବିବାହ କରିବି ସେଠିକ ଠାଲି ସ୍ଥିର କରି ପାରୁ ନାହିଁ।"

"ଏ ବିଷୟରେ ମୁଁ ବି ଠିକ୍ ତୁମରି ପରି। ମୁଁ ବି ଜାଣେ ନା, ଦୁହିଁଙ୍କ ଭିତରୁ କାହାକୁ ମୁଁ ବେଶି ଭଲ ପାଏ। ତେବେ ଏକ୍ଷଣି ମୋର ଝିଅମାନେ ସାନ, ଆଉ କିଛି ଦିନ ପରେ ସେମାନଙ୍କର ବିବାହ ହେଲେ କିଛି କ୍ଷତି ନାହିଁ। ଠିକ୍ ସମୟରେ ଆଶା କରେଁ, ତୁମେ ଜଣକର ବିଷୟ ସ୍ଥିର କରିବ।"

ସେ ଦିନ ସେଇଠି ମୁଁ ଅଟକି ଗଲି। ତିନି ମାସ ଗଲା, ଚାରି ମାସ ଗଲା, ମୁଁ କୌଣସି ମତେ ମୋର ମତ ସ୍ଥିର କରି ପାରିଲି ନାହିଁ। ବଡ଼ ଅଡୁଆରେ ପଡ଼ିଗଲି। ଏମିତି ହେଲା ଯେ, ଯାହାକୁ ହେଲେ ଜଣକୁ ବିବାହ ନ କଲେ ମୋର ଆଉ ଚଳିବ ନାହିଁ, ଅଥଚ କାହାକୁ ବିବାହ କରିବି ତାହା ବି ସ୍ଥିର କରି ପାରିଲି ନାହିଁ। ସୁତରାଂ ଦେଶ ଭ୍ରମଣରେ ବାହାରି ପଡ଼ିବାକୁ ମନସ୍ଥ କଲି। ଝିଅମାନେ ଏହା ଶୁଣି ଆଖିରୁ ଲୁହ ଗଡ଼ାଇଲେ। ମାଆ ମୋ ଆଡ଼କୁ ଖାଲି କରୁଣ ଦୃଷ୍ଟିରେ ଢ଼େର ବେଳ ଯାଏ ଅନାଇ ରହିଲେ। ସେହି ଚାହାଣି ମୁଁ ଜୀବନରେ ପାସୋରି ପାରିବି ନାହିଁ। ସେହି ଚାହାଣିର ଅର୍ଥ—ମୁଁ ତୁମର ଅବସ୍ଥା ବୁଝି ପାରୁଛି, ତୁମେ ବିଚରା କି ବିପଦରେ ପଡ଼ିଛ। ଯେତେବେଳେ ମୁଁ ଚାଲି ଆସିଲି, ସେତେବେଳେ ଝିଅମାନେ ମୋ ସାଙ୍ଗରେ ଦାଣ୍ଡ ଦୁଆର ଯାଏ ଆସିଲେ, ଏବଂ ଦୁହେଁ ନିଜ ନିଜର ମଥାରୁ ଦୁଇ ଗୋଛା କେଶ ଆଣି ମୋ ହାତରେ ଦେଲେ। ମୋ ଆଖିରୁ କେବେ ଲୁହ ବହେ ନାହିଁ,—ସେ ଦିନ ବି ବହିଲା ନାହିଁ, କିନ୍ତୁ—ଛାଡ଼, ସେ

ସବୁ ଇତିହାସ କହି ଆଉ କ'ଣ ହେବ ? ମୁଁ ଯେଉଁ ଛଅ ମାସ ବିଦେଶରେ ଥିଲି ସେହି କେଶ ଗୁଚ୍ଛ ଗୁଣ୍ଡିରେ ଧରି ବୁଲୁଥିଲି ।

ଫେରିଆସି ଶୁଣିଲି, ଦୁହିଁଙ୍କର ବିବାହ ହୋଇ ଯାଇଛି । ଜଣକର ସ୍ୱାମୀ ପଇଁଚାଳିଶ ବର୍ଷ ବୟସ୍କ ଜଣେ ଜମିଦାର,—ପ୍ରକାଣ୍ଡ ପୁରୁଷ, ଯେମିତି ଲମ୍ବା, ସେମିତି ମୋଟା,—ଆଉ ଆରଟି ଜଣେ ଜଜ କି ମାଜିଷ୍ଟ୍ରେଟ୍, କମ୍ବା ସେହି ରକମ ଆଉ କେଉଁ ମଣିଷର ହାତରେ ପଡ଼ିଛି । ଶୁଣିବାକୁ ପାଇଲି, ତାହାର ଆଖି ଓ ନାକ ଠିକ୍ ଜବା ଫୁଲ ପରି ।

କହିବା ବାହୁଲ୍ୟ, ଏହି ଦୁଇଟି ପଶୁଙ୍କ ବିଷୟରେ ଯେତେବେଳେ କଥା କହେଁ, ସେତେବେଳେ ମୋର ଭାଷାଟା ଠିକ୍ ଭଦ୍ର ଧରଣର ହୁଏ ନାହିଁ । ଗୋଟିଏ ଆତ୍ମା ଓ ଦୁଇଟି ଦେହରେ ଗଠିତ ଏହି ସୁନ୍ଦରୀ ଯୁଗଳକୁ ବିଚ୍ଛିନ୍ନ କରିବାରେ ପାପିଷ୍ଠମାନଙ୍କର ଟିକେ ହେଲେ ଦ୍ୱିଧା ଜାତ ହେଲା ନାହିଁ । ଶେଷ କଥା, ଇହ ଜଗତରେ କବିତ୍ୱ ବୋଲି ଗୋଟାଏ ଜିନଷ ଆଉ ନାହିଁ । ପୃଥିବୀଟା ଯେତେ ସବୁ ଅରସିକଙ୍କ ହାତରେ ପଡ଼ିଛି ।

— ଥେୟୋଫିଲ ଗୋତୟେ

# ସ୍ୱର୍ଗସୁଖ

ମୋ ମାଉସୀ ମୋତେ ଗୋଟିଏ ବିରାଡ଼ି ଉପହାର ଦେଇଥିଲେ । ଏଭଳି ଖରାପ ଜୀବ ସାତ ଜନ୍ମରେ ବି କେହି ଦେଖି ନ ଥିବେ ।

ଶୀତ କାଳ । ସନ୍ଧ୍ୟା ବେଳେ ଚୁଲି କଡରେ ବସି ନିଆଁ ପୋହଉଛି, ସେହି ବିରାଡ଼ିଟି ମୋ ଆଗରେ ତାର ଗୋଟିଏ ମନୋରମ କାହାଣୀ ବର୍ଣ୍ଣନା କଲା ।

— ୧ —

ସେତେବେଳେ ମୋର ବୟସ ଦୁଇ ବର୍ଷ ହେବ । ମୁଁ ବେଶ ମୋଟାସୋଟା ଓ ନଧର ଦିଶୁଥିଲି । ବୟସ କମ ହେଲେ କଣ ହେବ, ବଡ଼ ବଡ଼ ଜାନୁଆରଙ୍କ ପରି ମୋର ବି ଘରେ ଦଣ୍ଡେ ହେଲେ ରହିବାକୁ ମନ ଟିକେ ନ ଥିଲା । ତଥାପି ମୋର କପାଳ ଖୁବ୍ ଭଲ ଯେ ତୁମର ମାଉସୀଙ୍କର ଆଶ୍ରୟ ପାଇଥିଲି । ବୁଢ଼ୀଟି ଖୁବ୍ ଭଲ ଲୋକ । ସେ ମୋତେ ଅଶେଷ ଆଦର ଯତ୍ନ କରୁଥିଲେ । ଆଲମାରିର ଉପର ଥାକରେ ମୋର ଚମତ୍କାର ନରମ ଶେଯ

ପଡ଼ିଥିଲି ଏବଂ ତା ଉପରେ ତିନି ପରସ୍ତ ହୋଇ ଗୁଦର ବିଛା ଯାଇଥିଲା । ସେହି ଘରର ଭଲ ଭଲ ଖାଇବା ଜିନିଷ ବି ମୋତେ ବରାବର ଦିଆ ଯାଉଥିଲା—ଗ୍ରେଟି, ଝୋଲ, ଇତ୍ୟାଦି । ସେସବୁ କଥା କହି ଆଜି କି ଫଳ ହେବ ? ଖାଲି ମାଂସ, ସୁସ୍ୱାଦୁ ଚଟକା ମାଂସ ନିତି ମୋ କପାଳରେ ଜୁଟୁଥିଲା ।

ହଁ, ମନ ଏହି ବିଳାସ ବ୍ୟସନର ପ୍ରାଚୁର୍ଯ୍ୟରେ ରହି ସୁଦ୍ଧା ମୋର ଜୀବନରେ ଗୋଟାଏ ଆଶା ଓ ଗୋଟାଏ ସ୍ୱପ୍ନ ଥିଲା । ଖାଲି ଅନବରତ ମୁଁ ଭାବୁଥିଲି ମନେ ମନେ, ଖୋଲା ଝରକା ବାଟେ କୌଣସି ମତେ ଖସି ପଳାଇଲେ ଛାତ ଉପରେ ମନ ସୁଖରେ ବୁଲି ପାରନ୍ତି ! ଏଠିକାର ଆଦର-ଯତ୍ନ ମୋତେ ଆଜି ଆଦୌ ଭଲ ଲାଗୁ ନ ଥିଲା । କୋମଳ ବିଛଣା ମୋତେ ବିଷ ଭଳି ମାଲୁମ ହେଉଥିଲା । ମୋର ମୋଟା ସୋଟା ଚେହେରା ମୋତେ ପୀଡ଼ା ଦେଉଥିଲା । ସୁଖରେ ଦିନ କଟୁଥିଲେ ସୁଦ୍ଧା ପ୍ରତି ମୁହୂର୍ତ୍ତରେ ମୁଁ ଗୋଟାଏ ଅଶ୍ୱସ୍ତି ବୋଧ କରୁଥିଲି ।

ଦିନେ ଝରକା ବାଟେ ମୁଣ୍ଡ ଗଳାଇ ପଡ଼ିଶା ଘରର ଛାତରେ ଯାହା ଦେଖିଲି; ତୁମକୁ କହୁଛି । ଦେଖିଲି, ଆନନ୍ଦରେ ଆତ୍ମହରା ହୋଇ ଗୃରିଟା ବିରାଡ଼ି ଲାଞ୍ଜ ଟେକି ନିଜ ନିଜ ଭିତରେ ମଗାମରି ଗଡ଼ାଗଡ଼ି ହେଉଛନ୍ତି । ମୁଁ କେବେ ହେଲେ କଳ୍ପନା ବି କରି ନ ଥିଲି ଯେ ଏହିପରି ଗୋଟାଏ ଦୃଶ୍ୟ ଦିନେ ଦେଖିବି । ସେହି ଦିନ ଠାରୁ ମୋ ମନ ଭିତରେ ଗୋଟାଏ ଦୃଢ଼ ଧାରଣା ଜାତ ହେଲା ଯେ ଏହି ଆବଦ୍ଧ ଝରକାର ସେ ପଟେ ଖୋଲା ଛାତ ଉପରେ ହିଁ ରହିଛି ଜୀବନର ଯେତେସବୁ ସୁଖ ସମ୍ପଦ ।

ତେଣୁ ଏଠାରୁ ଖସି ପଳାଇବା ପାଇଁ ମନେ ମନେ ଫନ୍ଦୀ ପାଞ୍ଚିବାକୁ ଲାଗିଲି । ଚଟକା ମାଂସ ଛଡ଼ା ବି ଜୀବନରେ ଆଉ

ଗୋଟାଏ ବିଚିତ୍ର ଅଛି —ଅଛି ସେହି ଅଜଣା ରାଜ୍ୟ ଓ ଅଛି ସେହି ମହତ୍ ଆଦର୍ଶ ।

ଦିନେ ଘରର ଲୋକେ ଭାଣ୍ଡଶାଳର ଝରକା ବନ୍ଦ କରିବାକୁ ଭୁଲି ଯାଇଥିଲେ । ସେହି ସୁଯୋଗରେ ମୁଁ ପଡ଼ଶା ଘରର ଛାତ ଉପରକୁ ଡେଇଁ ପଡ଼ିଲି ।

—୨—

ଆଃ, କି ଚମତ୍କାର ଛାତ ସେ ! କାର୍ଣ୍ଣିଶ ପାଖରେ ଲମ୍ବା ଲମ୍ବା ପାଣି ନଳରୁ ମନ ମତାଣିଆ ବାସନା ଆସୁଥାଏ । ସେହି ନଳ ପାଖକୁ ମୁଁ ଚାଲିଗଲି । ସେଠାର ନରମ କାଦୁଅ ଉପରେ ମୋର ପାଦ ଲାଖି ଯାଉଥିଲା । ସେତେବେଳେ ମୋର ମନେ ହେଉଥିଲା, ମୁଁ ଯେମିତି ମଖମଲ ଶେଯ ଉପରେ ବିଚରଣ କରୁଛି ।

ତୁମ ପାଖରେ କୌଣସି କଥା ଲୁଚାଇବି ନାହିଁ । ସତରେ ସେହି ଅପୂର୍ବ ଆନନ୍ଦ ମୋର ସର୍ବାଙ୍ଗରେ ଶିହରଣ ଆଣିଦେଲା । ଏବେ ବି ମୋର ମନେ ଅଛି, ହଠାତ୍ ଡରରେ ଥରେ ଓଲଟି ପଡ଼ିବା ଉପରେ ହୋଇ ଯାଇଥିଲି ! ଛାତ-ଘରର ଉପରୁ କେମିତିକା ଗୋଟାଏ ଘର୍ ଘର୍ ଶବ୍ଦ କରି ତିନୋଟି ବିରାଡ଼ି ମାଡି ଆସିଲେ । ଭୟରେ ତ ମୁଁ ପ୍ରାୟ ମୂର୍ଚ୍ଛା ଯିବା ଉପରେ ଥିଲି । ସେମାନେ ମୋତେ କପଟ ବୋକା ଭାବି ଠିକ୍ ମୋ ମୁହଁ ସାମନାରେ ଆସି ମ୍ୟାଉଁ ମ୍ୟାଉଁ କରିବାକୁ ଲାଗିଲେ । ଏହି ଆମୋଦ ପ୍ରିୟ ବିରାଡ଼ିଙ୍କ ଭିତରୁ କେହି ହେଲେ ମୋପରି ଅଳସୁଆ ବା ମୋଟାସୋଟା ନ ଥିଲେ । ଖରାରେ ତତଲା ଛାତରେ ମୁଁ ପେଣ୍ଡୁ ପରି ଗଡ଼ାଗଡ଼ି ହେଉଥାଏ, ଆଉ ସେମାନେ ମୋତେ କେନ୍ଦ୍ର କରି ଥଟ୍ଟା ପରିହାସ କରିବାରେ ଲାଗିଥାନ୍ତି । କିନ୍ତୁ ସେହି ଦଳର ଗୋଟାଏ ବଙ୍କା ବିରାଡ଼ି ସହିତ ମୋର ଖୁବ୍ ଭାବ ହୋଇଗଲା । ମୋର ସବୁ ରକମ ଶିକ୍ଷାର

ଘର ସେ ଆଗ୍ରହରେ ଗ୍ରହଣ କଲା । ମୁଁ ମଧ୍ୟ ତାହାର ସବୁ ପ୍ରସ୍ତାବକୁ କୃତଜ୍ଞତା ସହକାରେ ସମର୍ଥନ କଲି ।

କେଉଁଠି ରହିଲା ତୁମ ମାଉସୀର ଆଦର ? ବର୍ତ୍ତମାନ ନର୍ଦ୍ଦମାରୁ ଖାଦ୍ୟ ଖୁଣ୍ଟି ଖାଇବାକୁ ଲାଗିଲି । କିନ୍ତୁ ଚିନି ମିଶା ଦୁଧ ତ କେବେହେଲେ ଏମିତି ମିଠା ଓ ସୁଆଦିଆ ଲାଗୁ ନ ଥିଲା ! ଯେବେ ମୁଁ ଖାଦ୍ୟ ଖୋଜୁଛି, ଏତିକି ବେଳେ ହଠାତ୍ ଗୋଟାଏ ମାଈ ବିରାଡ଼ି ମୋ ପାଖ ଦେଇ ଚାଲିଗଲା । କି ଲୋଭନୀୟ ତାହାର ଚେହେରା ! ତାକୁ ଦେଖିଲା କ୍ଷଣି ମୋ ମନ ଭିତରେ ଯେ କଣ ହେବାକୁ ଲାଗିଲା, ମୁଁ ତାହା ତୁମକୁ ବୁଝାଇ କହି ପାରିବି ନାହିଁ । ଏପରି ସୁନ୍ଦରୀ ଜୀବ କେବଳ ସ୍ୱପ୍ନରେ ଦେଖିଛି, ବାସ୍ତବରେ ଯେ ତାହା ହୋଇପାରେ ମୁଁ ତାହା କଳ୍ପନା କରି ନ ଥିଲି ।

ଏହି ଆଗନ୍ତୁକକୁ ଅଭ୍ୟର୍ଥନା କରିବା ପାଇଁ ମୁଁ ଆଗେଇ ଗଲି । ମୋର ତିନି ସାଥୀ ବି ମୋ ସାଙ୍ଗରେ ଥିଲେ । ସମସ୍ତଙ୍କ ଆଗରେ ମୁଁ ଚାଲିଥାଏ ବିରାଡ଼ି ସୁନ୍ଦରୀକୁ ସମ୍ମାନ ଜଣାଇବା ପାଇଁ, ଠିକ୍ ଏତିକି ବେଳେ କିଏ ମୋର ବେକଟା କାମୁଡ଼ି ଧରିଲା । ଯନ୍ତ୍ରଣାରେ ମୁଁ ଚିତ୍କାର କରିବାକୁ ଲାଗିଲି ।

ଏହି ଘଟଣାର ଟିକିଏ ପରେ ମୋତେ ଅନ୍ୟ ଜାଗାକୁ ଡାକି ନେଇ ସେହି ବିଜ୍ଞ ବିରାଡ଼ିଟି କହିଲା, "ଏମିତି କେତେ ସୁନ୍ଦରୀ ଦେଖିବାକୁ ପାଇବ, ଟିକିଏ ଥୟ ଧର !"

— ୩ —

ଘଣ୍ଟାଏ ଖଣ୍ଡେ ଏପଟ ସେପଟ ଚାଲିବୁଲି କରିବା ଫଳରେ ମୋତେ ଭୋକ ଲାଗିଲା—ପ୍ରଚଣ୍ଡ ଭୋକ । ବନ୍ଧୁକୁ ପଚାରିଲି—ରୋଷେଇ ଘରେ କିଛି ଖାଇବା ଜିନିଷ ଅଛି ?

ସେ ଗମ୍ଭୀର ଭାବରେ ଜବାବ ଦେଲା—ତୁମ ନଜରରେ କିଛି ପଡ଼ୁଛି ?

ତାହାର କଥା ଶୁଣି ମୁଁ ମହା ଭାବନାରେ ପଡ଼ିଗଲି । ଘରଆଡ଼େ ତନ୍ନତନ୍ନ କରି ଖୋଜିଲେ ସୁଦ୍ଧା ମୁଁ କିଛି ଦେଖିବାକୁ ପାଇଲି ନାହିଁ । ଶେଷରେ ଦେଖିଲି—ରୋଷେଇ ଘରେ ବସି ଜଣେ ସ୍ତ୍ରୀ ଲୋକ ଖାଦ୍ୟ ସାମଗ୍ରୀ ତିଆରି କରୁଛି, ଆଉ ତା ପାଖରେ ଟେବୁଲ ଉପରେ ଗୋଟାଏ ଟିଙ୍ଗ ଡ଼ ମାଛର କାଟଲେଟ ପଡ଼ି ରହିଛି । ଦେଖିଲେ ଯେ କୌଣସି ଲୋକର ପାଟିରୁ ଲାଳ ଗଡ଼ିବ । 'ଏଥର ଗୋଟାଏ ଜିନିଷ ମିଳିଲା', ମନେ ମନେ ଏହା ଭାବି ଟେବୁଲ ଉପରକୁ କୁଦି ପଡ଼ି କାଟଲେଟଟି ଧରି ମୁଁ ଚମ୍ପଟ ମାରିଲି । କିନ୍ତୁ ସ୍ତ୍ରୀ ଲୋକଟି ମୋତେ ଦେଖିଲା ମାତ୍ରେ ଗୋଟାଏ ଝାଡ଼ୁଣୀରେ ବଡ଼ ଜୋରରେ ପାହାରେ ପକାଇଲା । କାଟଲେଟଟା ସେଇଠି ଛାଡ଼ିଦେଇ ମୁଁ ପ୍ରାଣ ବିକଳରେ ଦୌଡ଼ି ପଳାଇଗଲି ।

ପ୍ରବୀଣ ବିରାଡ଼ିଟା ମୋତେ କହିଲା—ନଜର ଇଲାକା ବାହାରକୁ ଯାଅ କାହିଁକି ? ଟେବୁଲ ଉପରେ ସେହି ଯେ ଚପ୍ କାଟଲେଟ ଦେଖୁଛ, ସେସବୁ ତ ଆଉ ଆମ୍ଭମାନଙ୍କ ପାଇଁ ନୁହେଁ । ତୁମର ଖାଇବା ଜିନିଷ ରହିଛି ସେହି ନର୍ଦ୍ଦମାରେ ।

ମୁଁ ଆଗରୁ ବୁଝି ନ ଥିଲି, ସେହି ସବୁ ଉପାଦେୟ ଖାଦ୍ୟ ପଦାର୍ଥଗୁଡ଼ିକ ଆମ ପାଇଁ ନୁହେଁ । ଭୋକରେ ମୋର ପେଟ ପୋଡ଼ି ଯାଉଥିଲା । ବନ୍ଧୁଟିର କଥା ଶୁଣି ମୁଁ ଆହୁରି ହତାଶ ହୋଇ ପଡ଼ିଲି ।

ସେହି ବନ୍ଧୁଟି ପୁଣି ଜଣେ ଦାର୍ଶନିକ ପରି ନିର୍ବିକାର ଚିତ୍ତରେ କହି ଯିବାକୁ ଲାଗିଲା—ରାତି ଯାଏ କିଛି ନ ଖାଇ ରହିବାକୁ ହେବ । ତାପରେ ରାସ୍ତା କଡରେ ଅଳିଆ ଗଦା ଘାଣ୍ଟି ଯଦି କିଛି ଖାଦ୍ୟ

ପଦାର୍ଥ ମିଳେ, ତାହାହେଲେ ତାହା ସୌଭାଗ୍ୟ ବୋଲି ମନେ କରିବାକୁ ହେବ ।

ଏଣେ ମୋର ଦଶା କାହିଲ ହେବା ଉପରେ । ଏତେ ବେଳ ଯାଏ ନ ଖାଇ ଉପାସରେ ରହିବାକୁ ପଡ଼ିବ, ଭାବିଲା କ୍ଷଣି ମୁଁ ପ୍ରାୟ ମୂର୍ଚ୍ଛା ଯିବା ଉପରେ ହୋଇଗଲି !

— ୪ —

ରାତି ହୋଇଗଲା । ବାହାରେ ଟପ ଟପ ହୋଇ ମେଘ ପଡ଼ୁଥାଏ । ଟିକିଏ ହେମାଳ ବି ଜଣା ଯାଉଥାଏ । ହଠାତ୍ ଦମକାଏ ପବନ ଆସି ମେଘକୁ କୁଆଡ଼େ ଉଡ଼ାଇ ନେଇଗଲା ।

ଆମେ ଛାତ ଉପରୁ ତଳକୁ ଓହ୍ଲାଇ ଆସିଲୁ । କି ଜଘନ୍ୟ କଦର୍ଯ୍ୟ ରାସ୍ତା ! କେଉଁଠି ସେହି ଦିନର ଆଲୁଅ ଆଉ ଝରି ପଡ଼ୁଥିବା ଛାତ—ଆରାମରେ ଛାତ ଉପରେ ବସି ସେହି ଖରା ପୋହିବା ବା କାହିଁ ! ସନ୍ତସନ୍ତିଆ ଖସଡ଼ା ରାସ୍ତାରେ ବରାବର ଗୋଡ଼ ଖସରି ଯାଉଥିଲା ।

ଆଗରୁ ସେହି ନରମ ଶେଯ କଥା ମନେ ପଡ଼ିବା ମାତ୍ରେ ମୋର ଅନୁଶୋଚନା ଜାତ ହେଲା । ରାସ୍ତାରେ ଗୋଡ଼ ଦେଲା କ୍ଷଣି ମୋର ବନ୍ଧୁ ଭୟରେ ଖିଚଡ଼ସ୍ତ ହୋଇଗଲା । ତାହାର ଶରୀର ଥରିବାକୁ ଲାଗିଲା । ସେ ଏକା କୁଦାକେ ଗୋଟିଏ ଘର ଭିତରକୁ ପଶିଗଲା । ମୋତେ ବି ତାହାର ପଛେ ପଛେ ଯିବାକୁ ପଡ଼ିଲା । ତାପରେ ଗୋଟାଏ ଅନ୍ଧକାର କୋଣରେ ଲୁଚି ଯାଇ ସେ ଆରାମରେ ଘୁଙ୍ଗୁଡ଼ି ମାରିବାକୁ ଲାଗିଲା ।

ମୁଁ ବନ୍ଧୁକୁ ପଚାରିଲି—ପଳାଇ ଆସିଲ କାହିଁକି ?

ମଥାରେ ଝୁଣ୍ଟି ଓ ହାତରେ ଲାଠି ଧରି ସେହି ଯେ ଲୋକଟି ଏଣେ ଆସୁଛି, ଦେଖି ପାରିଲ ନାହିଁ ?

ମୁଁ ଜବାବ ଦେଲି—ହଁ, ଦେଖିଛି ।

କିନ୍ତୁ ଆମକୁ ଦେଖି ପାରିଥିଲେ ସେ ଗୋଟାଏ ପାହାରରେ ମଥାଟା ଦୁଇ ଫାଳ କରି ଦେଇଥାନ୍ତା ଏବଂ ତାପରେ ନେଇଯାଇ ରାନ୍ଧି ଖାଇଥାନ୍ତା ।

ଏଁ, ରାନ୍ଧି ଖାଇଥାନ୍ତା !—ମୁଁ ଭୟରେ ଚମକି ପଡ଼ିଲି । ତାହାହେଲେ ଏହିସବୁ ରାସ୍ତା ଆମ ପାଇଁ ନୁହେଁ ? ସବୁ ସେମାନଙ୍କର ? ଆମେ ନ ଖାଇ ମରୁଛୁ, ଆଉ ସେମାନେ ଆମକୁ ରାନ୍ଧି ଖାଇବେ ?

—୫—

ପ୍ରତି ଘର ସାମନାରେ ପାହାଡ଼ ଆକାରରେ ଅଳିଆ ଗଦା ହୋଇଥିଲା । ଗଭୀର ନୈରାଶ୍ୟରେ ସେଠାକୁ ଚାଲି କିଛି ଖାଇବା ଜିନିଷ ଖୋଜି ବାହାର କରିବା ପାଇଁ । ଅନେକ କଷ୍ଟରେ ଖଣ୍ଡିଏ ଦୁଇ ଖଣ୍ଡ ହାଡ଼ ତା ଭିତରୁ ଟାଣି ବାହାର କଲି । କିନ୍ତୁ ସେଥିରେ ରଞ୍ଜେ ହେଲେ ମାଂସ ନ ଥିଲା । ସେତେବେଳେ ମର୍ମେ ମର୍ମେ ଅନୁଭବ କଲି, ଦୁଧ ଓ ମାଂସ କି ସୁସ୍ୱାଦୁ !

କିନ୍ତୁ ମୋର ବନ୍ଧୁଟି ଅତି ଉତ୍ସାହରେ ସେହି ଅଳିଆ ଗଦା ଘାଣ୍ଟି ଘାଣ୍ଟି ଫେରି ଆସିଲା । ଖୋଜି ଯାଏ ଖୋଜି ଖୋଜି ମୁଁ ହାଇରାଣ ହୋଇଗଲି । ପ୍ରତି ଗଳି କନ୍ଦରେ ପଶି ଦେଖିଲି, ସବୁଠି ସେହି ଏକ ଅବସ୍ଥା । ପ୍ରାୟ ଦଶ ଘଣ୍ଟା ମୁଁ ଅନବରତ ବର୍ଷାରେ ଭିଜିଲି । ଶୀତରେ ଦେହଟା କମ୍ପୁଥାଏ । ଚୂଲୀକୁ ଯାଉ ଏ ବାଟ, ଚୂଲୀକୁ ଯାଉ ଏମିତି ସ୍ୱାଧୀନତା । ଯଦି ସେହି ବନ୍ଦୀ ଜୀବନ ପୁଣି ଫେରି ପାଆନ୍ତି !

ମୁଁ ଏହିପରି ଭାବିବାକୁ ଲାଗିଲି ।

ସାରା ରାତିର କ୍ଳାନ୍ତିରେ ମୋର ଗୋଡ଼ ଟଳୁଥିଲା ।

ଗୋଟାଏ ଅଦ୍ଭୁତ ଭଙ୍ଗୀରେ ଗୁହାଁ ବନ୍ଧୁଟି ମୋତେ ପଚାରିଲା—କି ହେ, ପେଟ ପୂରିଲା ତ ?

ସ୍ୱେର ହେଉ ନ ହେଉଣୁ ତାହାର ଏହି ପ୍ରଥମ ପ୍ରଶ୍ନ ଶୁଣି ମୁଁ ବିସ୍ମିତ ହୋଇଗଲି ।

ମୁଁ ଜବାବ ଦେଲି—ହଁ, ପୂରିଛି ।

ତାହାହେଲେ ଏଥର ଘରକୁ ଫେରିଯିବ ?

ଯିବି, ନିଶ୍ଚୟ ଯିବି । କିନ୍ତୁ ଏକ୍ଷଣି ଘର ଖୋଜି ପାଇବି କିପରି ?

ହଁ, ଯାଅ । ତୁମର ଏହି ବିପୁଳ ବପୁ ଦେଖି ମୁଁ ମୂଳରୁ ଠିକ୍ ଠଉରାଇ ପାରିଥିଲି, ଏପରି ସ୍ୱାଧୀନ ଜୀବନ ତୁମ ପକ୍ଷରେ ଅସହ୍ୟ ହେବ । ତୁମର ଘର ମୁଁ ଦେଖିଛି । ଚାଲ, ପହଞ୍ଚାଇ ଦେଇ ଆସିବି—ସେହି ବଙ୍କା ବିରାଡ଼ିଟି ସ୍ୱାଭାବିକ ଭାବରେ କହି ଯାଉଥିଲା ।

ସେହି ଘରର ଦୁଆର ମୁହଁରେ ପହଞ୍ଚି ସେ କହିଲା—ତାହା ହେଲେ ମୁଁ ଯାଉଛି ।

ନା, ନା, ତୁମେ ଚାଲିଗଲେ ହେବ ? ଏମିତି ଭାବରେ କଣ ତୁମ ବିନା ବଞ୍ଚି ହେବ ? ତୁମକୁ ମୋ ସଙ୍ଗରେ ଆସିବାକୁ ହେବ । ଆମେ ଦୁହେଁ ଏକାଠି ରହିବା । ତଟକା ମାଂସ ଖାଇବାକୁ ପାଇବା । ଆସ । ମୋର ମୁନିବ ଭାରି ଭଲ ଲୋକ ।

କିନ୍ତୁ ବନ୍ଧୁ ହଠାତ୍ ମୋତେ ଅଟକାଇ ଦେଇ ରୁକ୍ଷ ଭାବରେ କହି ପକାଇଲେ—ଚୁପ୍ କର । ତୁମେ ଗୋଟାଏ ମୂର୍ଖ । ତୁମର ସେହି ନରମ ଗଦି ଶେଯ ମୋ ପକ୍ଷରେ ଅପମୃତ୍ୟୁ ସାଙ୍ଗରେ ସମାନ । ଏମିତି ଜୀବନ ତୁମ ପରି ପୋଷା ବିରାଡ଼ିଙ୍କୁ ସାଜେ । ସ୍ୱାଧୀନ ବିରାଡ଼ିମାନେ ବନ୍ଦୀ ଜୀବନର ବିନିମୟରେ ତଟକା ମାଂସ

ଓ ନରମ ବନ୍ଧଣୀକୁ ନିତାନ୍ତ ତୁଚ୍ଛ ମନେ କରନ୍ତି । ଥାଅ ବନ୍ଧୁ, ମୁଁ ଯାଉଛି ।

ପୁଣି ସେ ଚଢ଼ିଗଲା ସେହି ସ୍ତୂପ ଉପରକୁ । ନବୋଦିତ ସୂର୍ଯ୍ୟଙ୍କର ଉଜ୍ଜ୍ୱଳ କିରଣରେ ତାହାର ଦୀର୍ଘ ଶୀର୍ଣ୍ଣ ଦେହ ଝଲସି ଉଠିଲା । ମୁଁ ତାକୁ ଅନାଇ ଦେଖୁଥିଲି ।

ଘରେ ଗୋଡ଼ ଦେଲାକ୍ଷଣି ତୁମର ମାଉସୀ ମୋତେ ଗୋଟାଏ ବେତରେ ନିର୍ଧୂମ ପିଟିବାକୁ ଲାଗିଲେ । କିନ୍ତୁ ସେହି ପ୍ରହାର ମୋତେ ଆଦର ପରି ବୋଧ ହେଉଥିଲା । ଆଶ୍ରମରେ ରହିବାକୁ ପାଇଲେ ମାଡ଼ ଖାଇବା ଯେ କିପରି ସୁଖକର, ତାହା ତୁମେ ଅନୁଭବ କରି ପାରିବ ନାହିଁ !

ତାଙ୍କର ପ୍ରତି ଆଘାତର ସଙ୍ଗେ ସଙ୍ଗେ ଲୁବ୍‌ଧଭାବରେ ମୋର ମନେ ପଡ଼ୁଥିଲା, ଏହା ପରେ ତ ସେ ବଳେ ବଳେ ମୋତେ ମାଂସ ଖାଇବାକୁ ଦେବେ !

ଏଥର ବିରାଡ଼ିଟି ଖରାରେ ଦେହ ଦେଖାଇ କହି ପକାଇଲା— ପ୍ରକୃତ ସୁଖ ବା ଇପ୍‌ସିତ ସ୍ୱର୍ଗ ଅଛି ସେହି ରୁଦ୍ଧ ଘରେ; ଯେଉଁଠି ମାଡ଼ ଖାଇଲା ପରେ ବି ଜୁଟେ ତଟକା ମାଂସ ।

ମୁଁ ବିରାଡ଼ି ସହିତ ଏକମତ !

—ଏମିଲ୍ ଜୋଲା

# ଗୁପ୍ତଚର

ତାହାର ନାମ ଷ୍ଟେନ । ପ୍ୟାରି ସହରର ବାଳକଟିଏ । ଦେଖିବାକୁ ଧୂସର ଓ ରୋଗଣା ଏବଂ ବୟସ ଅନ୍ଦାଜ ଦଶ କି ପନ୍ଦର । ତାହାର ମାଆ ମରି ଯାଇଛି, ମାତ୍ର ବାପା ଜୀବିତ ଅଛି । ଯୌବ-ନରେ ବାପା ନୌବାହିନୀରେ କାର୍ଯ୍ୟ କରୁଥିଲା, ବର୍ତ୍ତମାନ ସେ ବାର୍ଦ୍ଧକ୍ୟରେ ଟେମ୍ପଲ ପାର୍କର ରକ୍ଷୀ ହୋଇଛି । ସହରର ଗାଡ଼ି-ଘୋଡ଼ାର ଦାଉରୁ ରକ୍ଷା ପାଇବା ପାଇଁ ଯେଉଁମାନେ ଏହି ପାର୍କରେ ପ୍ରବେଶ କରନ୍ତି, ସେମାନେ ବୃଦ୍ଧ ଷ୍ଟେନକୁ ଚିହ୍ନନ୍ତି । ଲମ୍ବ ଦାଢ଼ିବାଲା ଏହି ଷ୍ଟେନ କୁକୁର ଓ ଦୁଷ୍ଟ ପିଲାଙ୍କର ଏକ ଯମ !

ଷ୍ଟେନ ତାହାର ପୁଅକୁ ଖୁବ୍ ଭଲ ପାଉଥିଲା । ବିଦ୍ୟାଳୟରୁ ଫେରି ସନ୍ଧ୍ୟା ବେଳେ ସାନ ଷ୍ଟେନ ତାହାର ବାପାକୁ ନେଇ ଯିବାକୁ ଆସିଲେ, ବୁଢ଼ାର ଆଖିରେ-ମୁହଁରେ ଅପୂର୍ବ ଆନନ୍ଦ ପ୍ରକଟୁଥିଲା ! ପୁଅର ହାତ ଧରି ଫେରିବା ବେଳେ ପାର୍କର ଆସନଗୁଡ଼ିକରେ ବସିଥିବା ଚିହ୍ନା ଲୋକମାନଙ୍କୁ ଅଭିବାଦନ ଜଣାଇ ଜଣାଇ ସେ ନିଜର ଘରକୁ ଫେରି ଆସୁଥିଲା ; କିନ୍ତୁ ସେହି ସବୁ ଦିନ ଏକ୍ଷଣି ବଦଳି ଯାଇଛି । ଜର୍ମାନମାନେ ପ୍ୟାରି ଆକ୍ରମଣ କରି ଦଖଲ କରି ଗଲେଣି । ବୁଢ଼ା ଷ୍ଟେନର ଆଉ ପାର୍କର କାମ ନାହିଁ । ବର୍ତ୍ତମାନ

ପାର୍କଟା ପେଟ୍ରୋଲ ରଖିବାର ଜାଗା ହୋଇଛି । ବୁଢ଼ାର ମନରେ ଅଶାନ୍ତ ଓ ଦୁର୍ଭାବନା । ତାହାର ପୁଅ ନିତି ଘରକୁ ଫେରିବା ବେଳକୁ ରାତି ହୋଇ ଯାଇଥାଏ । ତଥାପି ଘରକୁ ଫେରି ଆସିଲେ ବୁଢ଼ା ଟିକିଏ ସାନ୍ତ୍ୱନା ପାଏ, ପୁଅ ପାଖରେ ସେ ନାନା ରକମ ଗପ କରେ । ଗପ ଭିତରେ ଜର୍ମାନମାନଙ୍କ କଥା ଘୁରି ଘୁରି ଆସି ଯାଏ, ଆଉ କ୍ରୋଧରେ ତାହାର ନିଶ ଯୋଡ଼ାକ ଫୁଲି ଉଠେ ।

କିନ୍ତୁ ସାନ ଷ୍ଟେନଙ୍କୁ ଏହି ନୂଆ ଜୀବନ ଖୁବ୍ ଭଲ ଲାଗୁଥିଲା । ଛୋଟ ଛୋଟ ପିଲାମାନଙ୍କ ପକ୍ଷରେ ଏହି ଯୁଦ୍ଧ ଅବରୋଧ କଥାଟା ଅତିଶୟ କୌତୁକପ୍ରଦ ବୋଧ ହେଉଥିଲା । ପଢ଼ାଶୁଣା ନାହିଁ, ବିଦ୍ୟାଳୟକୁ ଯିବା ବନ୍ଦ, ଖାଲି ଛୁଟି ଆଉ ଛୁଟି । ଆଉ ରାସ୍ତାରେ ଯେମିତି ଅନବରତ ମେଳା ବସିଛି । ସେ ଗୋଟାଏ ଭାରି ମଜା !

ସେତେବେଳେ ସାନ ଷ୍ଟେନର କାମ ହେଲା ରାତି ନ ହେବା ଯାଏ ଏ ରାସ୍ତା ସେ ରାସ୍ତାରେ ଖାଲି ଚକ୍କର ମାରିବା ଆଉ ପଡ଼ିଆ-ମଇଦାନରେ ଯେଉଁଠି ସ୍ୱେଚ୍ଛା-ସେବକ ବାହିନୀ ଡ୍ରିଲ ହେଉଛନ୍ତି, ସେଠାରେ ଯାଇ ପଇନ୍ତରା ମାରିବା । ଯେଉଁ ଦଳର ବାଜଣା ଯେତେ ଭଲ, ସେ ସେହି ସବୁ ଦଳ ପାଖକୁ ସେତେ ବେଶୀ ଯାଏ । ଫୁ ଭିତରେ ସେ ଜାଣି ସାରିଲଣି କେଉଁ ଦଳର ବାଜଣା ଭଲ, ସେହି ବିଷୟରେ ସେ ପଣ୍ଡିତଙ୍କ ପରି ମତାମତ ଦିଏ । ପୁଣି କେବେ କେବେ ସେ ଦ୍ୱିଏତ ସ୍ୱେଚ୍ଛା-ସେବକ ବାହିନୀର ଡ୍ରିଲ ଦେଖିବା ପାଇଁ ଠିଆ ହୋଇ ରହେ ।

ଏହା ଛଡ଼ା ଆଉ ଗୋଟିଏ ଭଲ କାମ ତାକୁ ମିଳିଥିଲା, ନିତି ସକାଳେ ଉଠି ହାତରେ ଗୋଟିଏ ଝୁଡ଼ି ଧରି ସେ ରୋଟି ଓ ମାଂସ ଦୋକାନ ଆଗରେ ଧାଡ଼ିରେ ଠିଆ ହୋଇ ରହୁଥିଲା । ସେହି ଧାଡ଼ିରେ ଠିଆ ହୋଇ ଘଣ୍ଟା ଘଣ୍ଟା ଧରି କେତେ ବିଷୟରେ

ଆଲୋଚନା ଚାଲେ—ଯୁଦ୍ଧ କଥା, ରାଜନୀତି, ଅନ୍ନ-ବସ୍ତ୍ର-ସମସ୍ୟା, ଏହିପରି ନାନା କଥା ! ଅନେକେ ନଷ୍ଟିନର ମତାମତ ଶୁଣିବାକୁ ଚାହାନ୍ତି, କାରଣ ତାହାର ବାପା ଗତ ଯୁଦ୍ଧରେ ନୌବାହିନୀର ଜଣେ ସୈନିକ ଥିଲା—ଏ କ'ଣ କମ୍ କଥା !

ଏହା ସବୁଠାରେ ଦେଖା ନ ମିଳିଲେ ଷ୍ଟିନକୁ ନିଶ୍ଚୟ ଦେଖାଯାଏ ସ୍ୟାଣ୍ଟୋ-ଦ୍ୟ ସ୍କୋୟାରର 'ଗ୍ୟାଲୋଶ୍' ଜୁଆର ଆଡ୍ଡାରେ । 'ଗ୍ୟାଲୋଶ୍' ଏକ ପ୍ରକାର ଜୁଆଖେଳ । ଇଂରେଜ ସୈନ୍ୟମାନେ ଫ୍ରାନ୍ସକୁ ଲଢ଼ିବାକୁ ଆସି ପ୍ୟାରିସ୍କୁ ଏହା ଆମଦାନି କରିଥିଲେ । ଖଣ୍ଡିଏ ସୋଲ ଉପରେ ଟଙ୍କା ବା ପଇସା ବାଜି ରଖି ଏହି ଜୁଆ ଖେଳା ଯାଏ । ପ୍ୟାରିସର ଦୁଃସମୟରେ ଏହି ଜୁଆଖେଳ ସର୍ବତ୍ର ଚାଲୁ ହେଲା ।

ଯେଉଁ ଦିନ ଷ୍ଟିନ ପାଖରେ ଟଙ୍କା ଥାଏ, ସେ ଦିନ ସେ ନିଜେ ଖେଳେ, ମାତ୍ର ଟଙ୍କା ନ ଥିଲେ ସେ ଠିଆ ହୋଇ ରହି ଅନ୍ୟମାନଙ୍କର ଖେଳ ଦେଖେ—ତାହାକୁ ଏମିତି ନିଶା ଲାଗିଥିଲା, ଯେଉଁମାନେ ଜୁଆ ଖେଳିବାକୁ ଆସନ୍ତି, ସେମାନଙ୍କ ଭିତରୁ ଜଣକୁ ଷ୍ଟିନ ଭାରି ଭଲ ପାଉଥିଲା । ସେ କେବେ ହେଲେ ପାଞ୍ଚ ଫ୍ରାଙ୍କରୁ କମରେ କୌଣସି ବାଜି ଖେଳୁ ନ ଥିଲା । ବୟସରେ ସେ ଷ୍ଟିନ ଠାରୁ ସାମାନ୍ୟ କେତେ ବର୍ଷ ବଡ଼ ହେବ । ସବୁବେଳେ ତାହାର ପକେଟରେ ଟଙ୍କା ଝଣ ଝଣ ହେଉଥିଲା ।

ଦିନେ ଜୁଆ ଖେଳୁ ଖେଳୁ ସେହି ପିଲାଟିର ହାତରୁ ଗୋଟିଏ ଫ୍ରାଙ୍କ ଗଡ଼ି ଆସି ଷ୍ଟିନର ଗୋଡ଼ ପାଖରେ ପଡ଼ିଲା । ଫ୍ରାଙ୍କଟି ଉଠାଇ ନେଇ ନେଇଁ ସେ ଷ୍ଟିନକୁ ଲକ୍ଷ୍ୟ କରି କହିଲା, "କେଉଁ ବାଟରେ ପାଣି ଆସୁଛି ଜାଣୁ ? ଟଙ୍କା ଲୋଡ଼ା ତ, ମୁଁ ବତାଇ ଦେଇ ପାରେଁ କେଉଁଠାରୁ ଗଲେ ତାହା ପାଇବୁ ।"

ଜୁଆ ଖେଳ ସରିଯିବାରୁ ସେହି ବଡ଼ ପିଲାଟି ଷ୍ଟେନକୁ ଟିକିଏ ଆଡ଼ୁଆଳକୁ ଡାକି ନେଇ ଯାଇ କହିଲା ; "ଜର୍ମାନମାନଙ୍କ ପାଖରେ ଖବରକାଗଜ ବିକିଲେ ସେମାନେ ଅନେକ ଟଙ୍କା-ପଇସା ଦିଅନ୍ତି ; ଏପରି କି ସେମାନେ ମୋତେ ଦିନେ ତିରିଶ ଫ୍ରାଙ୍କ ଦେଇଥିଲେ ।"

ଏ ପ୍ରସ୍ତାବରେ ଷ୍ଟେନ ପ୍ରଥମେ ଚଟିଗଲା ଏବଂ ପ୍ରାୟ ତିନି ଦିନ ଯାଏ ଜୁଆର ଆଡ୍‌ଡାକୁ ଆଉ ଗଲା ନାହିଁ । ଜୁଆର ଆଡ୍‌ଡାକୁ ନ ଯିବାରୁ ତାହାର ମନ ବିଗିଡ଼ି ଗଲା । ତାହାକୁ ଖାଇବା ପିଇବା ଭଲ ଲାଗିଲା ନାହିଁ କି ତାହାର ଆଖିକୁ ନିଦ ଆସିଲା ନାହିଁ । ତିନି ଦିନ କାଳ ଘରେ ବସି ରହି ତାହାକୁ ଅତ୍ୟନ୍ତ ବିରକ୍ତ ଲାଗିଲା । ପୁଣି ସେ ଧାଇଁଗଲା ସେହି ଜୁଆର ଆଡ୍‌ଡାକୁ, ସେଠାରେ ସେହି ବଡ଼ ପିଲାଟି ସାଙ୍ଗରେ ସେ ପୁଣି ଖେଳରେ ମାତିଗଲା ; କିନ୍ତୁ ଏଥର ଷ୍ଟେନ ତାହାର ପ୍ରସ୍ତାବରେ ରାଜି ହେଲା ।

ଗୋଟିଏ ଦିନ ବରଫ ପଡ଼ୁଥାଏ । ପିଲା ଦୁହେଁ କାନ୍ଧରେ କ୍ୟାନଭାସର ବ୍ୟାଗ୍ ଝୁଲାଇଲେ ଏବଂ ଜାମା ତଳେ କାଗଜ ରଖିଲେ । ତା'ପରେ ଭୋର ବେଳେ ସେମାନେ ବାହାରି ପଡ଼ିଲେ । ଯେତେବେଳେ ସେମାନେ ଯାଇ ଫୋର୍ଟ-ଦ୍ୟ-ଫ୍ଲାଣ୍ଡ୍ରାର୍ସ ର ପହଞ୍ଚିଲେ, ସେତେବେଳେ ଦିନର ଆଲୁଅ ପରିଷ୍କାର ଭାବରେ ଫୁଟି ନ ଥିଲା । ଷ୍ଟେନର ସଙ୍ଗୀ ତାହାର ହାତ ଧରି ଜଣେ ସନ୍ତ୍ରୀ ପାଖକୁ ଆଗେଇ ଗଲା ; ଏବଂ ତାକୁ କହିଲା—"ଦୟା କରି ଆମକୁ ଯିବାକୁ ଦିଅ । ବଡ଼ ବିପଦ ଆମର । ମାଆ ଭୀଷଣ ଅସୁସ୍ଥ, ବାପା ଯୁଦ୍ଧରେ ମରି ଯାଇଛନ୍ତି । ଏ ମୋର ସାନ ଭାଇ—ଆମେ ଦୁହେଁ କ୍ଷେତରୁ କିଛି ଆଳୁ ଖୋଳି ନେବୁ । ଘରେ ଆମର କିଛି ଖାଇବାକୁ ନାହିଁ ।"

ସନ୍ତ୍ରୀଟି କ୍ଷଣକ ପାଇଁ ସେମାନଙ୍କ ଆଡ଼କୁ ଚାହିଁଲା, ଏବଂ ତା'ପରେ ଜନଶୂନ୍ୟ ରାସ୍ତା ଆଡ଼କୁ ଅନାଇ କହିଲା—"ଆଚ୍ଛା, ଯାଅ, କିନ୍ତୁ ଖୁବ୍ ଶୀଘ୍ର କାମ ଶେଷ କରି ଫେରି ଆସିବ।"

ସେମାନେ ଆବାରଭିଲ ରାସ୍ତା ଉପରକୁ ଚାଲି ଆସିଲେ। ସେଠାରେ ପହଞ୍ଚି ଷ୍ଟେନର ସଙ୍ଗୀର ଆନନ୍ଦ କହିଲେ ନ ସରେ।

ଆବାରଭିଲ ରାସ୍ତାଟିକୁ ଆଉ ଚିହ୍ନି ହେଉ ନାହିଁ। ବହୁଆଡ଼େ କାରଖାନା ବସିଗଲାଣି। ସୈନ୍ୟମାନଙ୍କର ଗୁଳିଗୋଳା ପଡ଼ୁଛି, ପାଚେରୀସବୁ ଓଦା କମ୍ବଳରେ ଘୋଡ଼ା ଦିଆ ହୋଇ ରଖା ଯାଇଛି, କାରଖାନାର ଚିମନିସବୁ ଭାଙ୍ଗି ଛୁଟି ଗଲାଣି। ଆଗେଇ ଯାଉଁ ଯାଉଁ ସେମାନେ ଦେଖିଲେ, ଆହତ ସନ୍ତ୍ରୀ-ପହରା ଘାଟି ଜାଗାଗୁଡ଼ିକରେ ମୁତୟନ ହୋଇଛନ୍ତି। ଜଣେ ଦୁଇ ଜଣ ଉଚ୍ଚ ପଦସ୍ଥ ସାମରିକ କର୍ମଚାରୀ ଦୂରବୀକ୍ଷଣ ଯନ୍ତ୍ରରେ ଏଣେ ତେଣେ କ'ଣ ଦେଖୁଛନ୍ତି। ଆଉ ଟିକିଏ ଆଗେଇ ଯାଆନ୍ତେ, ସେମାନେ ଗୋଟିଏ ବଡ଼ ଘାଟି ସାମନାରେ ଆସି ପହଞ୍ଚିଗଲେ। ସେହି ଘାଟିଟି ଟପିଲେ ଜର୍ମାନମାନଙ୍କର ଗୁଳିଗୋଳା; କିନ୍ତୁ ଏହି ଘାଟିଟି ଟପିବା କାଠିକର ପାଠ। ଷ୍ଟେନର ସଙ୍ଗୀର ପୂର୍ବ କୌଶଳ ଏଥର ଆଉ ବୋଧହୁଏ କିଛି କାମରେ ଲାଗିଲା ନାହିଁ। ଏହି ସମୟରେ ଜଣେ ସାର୍ଜେଣ୍ଟ ଆସି ସେଠାରେ ଉପସ୍ଥିତ ହୋଇଗଲା। ଷ୍ଟେନର ସଙ୍ଗୀର ଅବିଶ୍ରାନ୍ତ କ୍ରନ୍ଦନ ଦେଖି ସେ କହିଲା—"କାନ୍ଦିଲେ କ'ଣ ହେବ! ଯେତେ ଇଚ୍ଛା ସେତେ ଆକୁ ତୁମେ ଖୋଳି ନିଅ, ଆମର ସେଥିରେ ତିଳେ ହେଲେ ଆପତ୍ତି ନାହିଁ; କିନ୍ତୁ ତା ଆଗରୁ ଆମର ସେହି କୁଡ଼ିଆ ଘରକୁ ଆସି ଟିକିଏ ନିଆଁ ପାଖରେ ବସିପଡ଼ି ଦେହ ହାତ ଗରମ କରି ନିଅ। ଦେଖୁଛି, ସେହି ଗ୍ରେଟ ସଇତାନଟା ଥଣ୍ଡାରେ ବରଫ ହୋଇଯିବ। ଆସ, ଆସ!"

ସାର୍ଜେଣ୍ଟର କୁଡ଼ିଆରେ ପ୍ରବେଶ କରି ସେମାନେ ଦେଖିବାକୁ ପାଇଲେ, ସେଠାରେ କେତେ ଜଣ ସୈନ୍ୟ ନିଆଁ ଜଳ ଚୁଲି ଚାରି ପାଖରେ ବସି ଦେହ ଗରମ କରୁଛନ୍ତି । ସେମାନଙ୍କ ଭିତରୁ କେହି କେହି ନିଜ ହେଲ୍‌ମେଟର ମଥା ଉପରେ ବିସ୍କୁଟ ଥୋଇ ଦେଇଛନ୍ତି । ସେମାନେ ସମସ୍ତେ ଟିକିଏ ଗୁଞ୍ଜି ଗାଞ୍ଜି ହୋଇ ବସି; ଷ୍ଟେନ୍ ଓ ତାହାର ସଙ୍ଗୀକୁ ସେଠାରେ ବସିବାକୁ ଜାଗା କରିଦେଲେ ଏବଂ ସେମାନଙ୍କୁ ଗରମ କଫି ପିଇବାକୁ ଦେଲେ । ଯେତେବେଳେ ସେମାନେ କଫି ପିଇବାରେ ବ୍ୟସ୍ତ, ଠିକ୍ ସେତିକି ବେଳେ ଜଣେ ଲୋକ ଆସି ପହଞ୍ଚିଗଲା । ସେ ସାର୍ଜେଣ୍ଟକୁ ଘରର ବାହାରକୁ ଡାକି ନେଇଯାଇ କ'ଣ କହିଲା ।

ସାର୍ଜେଣ୍ଟ ଖୁବ୍ ପ୍ରଫୁଲ୍ଲ ଚିତ୍ତରେ ପୁଣି ଘର ଭିତରକୁ ଆସି କହିଲା—"ଆଜି ରାତିରେ ଖୁବ୍ ମଜା ଘଟଣା ଘଟିବ । ଜର୍ମାନ-ମାନଙ୍କର ସବୁ ଖବର ଆମେ ଜାଣି ସାରିଲୁଣି । ଆଜି ରାତି ଭିତରେ ଆମେ ଲ୍ୟବୁର୍ଗ ସେମାନଙ୍କ ହାତରୁ ଛଡ଼ାଇ ନେବୁ । କରି ଫୁର୍ତ୍ତି ସମସ୍ତେ ।"

ସାର୍ଜେଣ୍ଟର କଥା ଶେଷ ହେଉ ନ ହେଉଣୁ ସଙ୍ଗେ ସଙ୍ଗେ ହୋ ଚୋ ପଡ଼ିଗଲା । ହେଇ ଅବସରରେ ଷ୍ଟେନର ସଙ୍ଗୀ ଷ୍ଟେନକୁ ନେଇ କେତେବେଳେ ସେଠାରୁ ଖସିଗଲା ।

ସେମାନେ ଗୋଟିଏ ପ୍ରାନ୍ତରରେ ଆସି ପହଞ୍ଚିଗଲେ । ସେଠାରେ ଷ୍ଟେନର ସଙ୍ଗୀଟି ନଇଁ ପଡ଼ି ରାସ୍ତାରେ ଚାଲୁ ଚାଲୁ ଅନ୍ଧାରେ ଖୋଜିବାର ଛଳନା କରିବାକୁ ଲାଗିଲା ।

ଷ୍ଟେନ୍ ଦୁଇ ତିନି ଥର କହିଲା—"ଏଥର ଫେରିବା ଚାଲ । ଆଜି ଆଗରୁ କୌଣସି ଫଳ ନାହିଁ ।"

କିନ୍ତୁ ଷ୍ଟେନର ସଙ୍ଗୀ ଆଗେଇ ଚାଲିଲା । କିଛି ଦୂର ଆଗେଇ ଯିବା କ୍ଷଣି ସେମାନେ ରାଇଫଲର କଳ ଚିପିବା ଆବାଜ ଶୁଣି ହଠାତ୍ ଠିଆ ହୋଇଗଲେ । ଷ୍ଟେନର ସଙ୍ଗୀ ଜଣକ ତତ୍‌କ୍ଷଣାତ୍ ଭୂଇଁରେ ପେଟେଇ ଶୋଇପଡ଼ି ତାକୁ କହିଲା— "ଶୋଇ ପଡ଼ ଷ୍ଟେନ, ଶୋଇ ପଡ଼ ।"

ଷ୍ଟେନର ସଙ୍ଗୀଟି ଶୋଇପଡି ଗୋଟିଏ ବଂଶୀ ବଜାଇଲା— ଅପର ଦିଗରୁ ସେହି ବଂଶୀରେ ତାର ଜବାବ ଆସିଲା । ତା'ପରେ ସେମାନେ ପୁଣି ହାମୁଡ଼େଇ ହାମୁଡ଼େଇ ସାମନାକୁ ଆଗେଇ ଯିବାକୁ ଲାଗିଲେ ।

ଗୋଟାଏ ପ୍ରକାଣ୍ଡ ପାଚେରୀ ପାଖକୁ ଆସି ସେମାନେ ଦେଖିଲେ ଖୁବ୍ ବଡ଼ ନିଶବାଲା ଜଣେ ଜର୍ମାନ ସୈନ୍ୟ ଠିକ୍ ମୁହଁ ପାଖରେ ଆସି ଠିଆ ହୋଇଛି ।

ସେତେବେଳେ ଷ୍ଟେନର ସଙ୍ଗୀ ଜଣକ କହିଲା—"ଏ ମୋର ସାନ ଭାଇ ।"

ଜର୍ମାନ ସୈନ୍ୟଟି ଷ୍ଟେନକୁ ଦେଖି ହସି ହସି ଗଡ଼ିଗଲା । ଏଡ଼ିକି ବିକଟେ ପିଲା ଏହି କାମରେ ଆସିଛି ! ତା'ପରେ ସେ ଷ୍ଟେନକୁ ଗୋଟାଏ ହାତରେ ଟେକି ନେଇ ପାଚେରୀ ମଝିର ଗୋଟାଏ କଣା ବାଟେ ତାକୁ ଆର ପଟକୁ ପକାଇଦେଲା । ଷ୍ଟେନର ସଙ୍ଗୀ କିନ୍ତୁ ନିଜେ ଡେଇଁଗଲା ।

ଏଥର ସେମାନେ ଗୋଟାଏ ପ୍ରକାଣ୍ଡ ଘରେ ଯାଇ ପହଞ୍ଚିଲେ । ସେଠାରେ ଜର୍ମାନ ସୈନ୍ୟମାନେ ହୈ ଚୈ ପାଟିଗୋଳରେ ମତ୍ତ । କେହି ଖେଳୁଛି ତାଆସ, କେହି ପିଉଛି ମଦ, ଆଉ କେହି ଗୋଳେଇ କରୁଛି ।

ଷ୍ଟେନର ସଙ୍ଗୀ ସେମାନଙ୍କ ସହିତ ହସ ଖୁସିରେ ମାତିଗଲା ଏବଂ କାଗଜସବୁ ବାହାର କରି ସେମାନଙ୍କୁ ଦେଇଦେଲା ।

ଷ୍ଟେନର ମଧ୍ୟ କଥା କହିବାକୁ ମନ ହେଉଥିଲା ; କିନ୍ତୁ ଜଣେ ଲୋକର ଉପରେ ସେ କହି ପାରିଲା ନାହିଁ—ଲୋକଟି ଗୋଟିଏ କୋଣରେ ଠିଆ ହୋଇ ଷ୍ଟେନକୁ ଲକ୍ଷ୍ୟ କରୁଥିଲା । ସେ ଏପରି ଭାବରେ ଷ୍ଟେନ ଆଡ଼କୁ ଅନାଇ ରହିଥିଲା ଯେ ଦେଖିଲେ ମନେ ହେଉଥିଲା, ଯେମିତି ତାହାର ଘରେ ସେମିତି ଛୋଟ ପିଲାଟିଏ ତାହାର ନଜର ଅଛି ! ସେ ହୁଏତ ମନେ ମନେ କହୁଥିଲା, ମୋ ପୁଅକୁ ଏମିତି କାମ କରିବାର ଦେଖିବା ଆଗରୁ ଯେମିତି ମୋର ମୃତ୍ୟୁ ହୁଏ !

ଷ୍ଟେନ ମୁହଁ ପୋତି ବସି ରହିଲା, ତେଣେ ତାହାର ସଙ୍ଗୀଟି ସେତେବେଳେ ସେମାନଙ୍କ ସାଙ୍ଗରେ କଥା ଜମେଇ ଦେଲଣି ।

ଷ୍ଟେନର ସଙ୍ଗୀଟି କଥା ପ୍ରସଙ୍ଗରେ ସେମାନଙ୍କୁ ଜଣାଇଲା —ଫରାସୀ ସୈନ୍ୟମାନେ ଆଜ ରାତିରେ ସେମାନଙ୍କୁ ଆକ୍ରମଣ କରିବେ । ଷ୍ଟେନ ମଝିରେ ଥରେ ସଙ୍ଗୀର କଥାରେ ବାଧା ଦେବାକୁ ଚେଷ୍ଟା କରିଥିଲା । କିନ୍ତୁ ତାହାର କଥା କିଏ ଶୁଣୁଛି ?

ଷ୍ଟେନର ସଙ୍ଗୀର ଖବର କହିବା ଶେଷ ହେଉ ନ ହେଉଣୁ ଜର୍ମାନମାନେ ତାହାର ହାତରେ ଅନେକ ଟଙ୍କା ଗୁଞ୍ଜି ଦେଲେ ଏବଂ କହିଲେ—"ଏଥର ତୁମେ ଦୁହେଁ ଯାଇ ପାର ।"

ଷ୍ଟେନର ସଙ୍ଗୀ ମହା ଆନନ୍ଦରେ ଟଙ୍କା ବଜାଇ ବଜାଇ ବାଟ ଚାଲିବାକୁ ଲାଗିଲା । ଷ୍ଟେନ ତା ପଛେ ପଛେ ଚାଲିଥାଏ । ଏ କାମଟା ତାକୁ ଆଦୌ ପସନ୍ଦ ଲାଗୁ ନ ଥାଏ ।

ଫେରିବା ବେଳେ ଆଉ କେହି ସେମାନଙ୍କୁ ବାଧା ଦେଲେ ନାହିଁ । କାରଣ ଜର୍ମାନମାନେ ସେମାନଙ୍କର ବ୍ୟାଗରେ ଆଲୁ ଭର୍ତ୍ତି କରି ଦେଇଥିଲେ । ଏଣେ ସୈନ୍ୟମାନଙ୍କର ମଧ୍ୟ ସେମାନଙ୍କୁ ଧରି ସମୟ ନଷ୍ଟ କରିବାକୁ ଅବସର ନ ଥିଲା । ସେତେବେଳେ ସେମାନେ ରାତିରେ ଆକ୍ରମଣ ପାଇଁ ପ୍ରସ୍ତୁତ ହେଉଥିଲେ ।

ରାସ୍ତାରେ ଆସିବା ବେଳେ ଥରେ ଷ୍ଟେନର ମନେ ହୋଇଥିଲା, ସେ ଚିତ୍କାର କରି ଫରାସୀ ସୈନ୍ୟମାନଙ୍କୁ କହି ଦିଅନ୍ତା ଯେ ଆଜି ରାତିରେ ତୁମ୍ଭେମାନେ ଆଉ ଆକ୍ରମଣ କର ନାହିଁ, ଏବଂ ଆମେ ତୁମର ସବୁ ଯୋଜନା ଜର୍ମାନମାନଙ୍କୁ କହି ଦେଇ ଆସିଛୁ ।

କିନ୍ତୁ ସନ୍ତ୍ରୀର ଭୟରେ ସେ ତାହା କହି ପାରିଲା ନାହିଁ । ସଙ୍ଗୀଟି ତାକୁ କହିଥିଲା, ଏ କଥା ଜାଣି ପାରିଲେ ସେମାନେ ତତ୍‌କ୍ଷଣାତ୍ ତାଙ୍କୁ ଗୁଳି କରି ମାରି ଦେବେ ।

ତାପରେ ଷ୍ଟେନର ସଙ୍ଗୀ ଟଙ୍କା ଭାଗ କରି ବାଣ୍ଟିଲା । ସେ ଷ୍ଟେନକୁ ସମାନ ଭାଗ ଦେଲା । ପକେଟରେ ଟଙ୍କା ବାଜିବାରୁ ଷ୍ଟେନର ମନଟା ପୁଣି ଆନନ୍ଦରେ ଭରିଗଲା ।

ଫ୍ୟାଶର ରାସ୍ତାକୁ ଆସି ପରସ୍ପର ଅଲଗା ହୋଇଗଲେ । ସେତେବେଳେ ଷ୍ଟେନର ମନ ପୁଣି ଦବି ଗଲା, ଏବଂ ତାହାର ମନେ ହେଲା ପକେଟ ଯେମିତି ବେଜାୟ ଭରି ହୋଇ ଯାଉଛି । ରାସ୍ତାର ହଟଗୋଳ ଭିତରେ ତାହାର ମନେ ହେବାକୁ ଲାଗିଲା, ସମସ୍ତେ ଯେମିତି ତାକୁ ଲକ୍ଷ୍ୟ କରୁଛନ୍ତି ଏବଂ ଘୃଣାରେ ପାଟି କରି କହୁଛନ୍ତି—"ଗୁପ୍ତଚର ! ଜର୍ମାନଙ୍କର ଗୁପ୍ତଚର !"

ଷ୍ଟେନ ଘରେ ପହଞ୍ଚିଲା । ସେତେବେଳକୁ ତାହାର ବାପା ଘରକୁ ଫେରି ନ ଥିଲେ । ଧାଇଁ ଯାଇ ନିଜର ଡିକଆ ତଳେ ସେ ଟଙ୍କା ତକ ଲୁଚାଇ ରଖିଦେଲା ।

ଷ୍ଟେଫାନର ବାପା ମହା ଆନନ୍ଦରେ ଘରକୁ ଫେରି ଆସିଲା । କଥାଟା କ'ଣ କି— ନା, ଯୁଦ୍ଧର ଗତି ବଦଳି ଯାଇଛି— ଜର୍ମାନମାନଙ୍କର ପରାଜୟ ଅନିବାର୍ଯ୍ୟ । ଆଜି ରାତିରେ ଫରାସୀ ସୈନ୍ୟମାନେ ଜର୍ମାନମାନଙ୍କୁ ଆକ୍ରମଣ କରିବେ, ଏବଂ ସେମାନଙ୍କ ଠାରୁ ଲା ବୁର୍ଗ ଛଡ଼ାଇ ନେବେ ।

ଖାଇବାକୁ ବସି ବୃଦ୍ଧ ଷ୍ଟେଫାନ କାନ୍ଥରେ ଟଙ୍ଗା ହୋଇଥିବା ତାହାର ରାଇଫଲଟା ଆଡ଼କୁ ଚାହିଁ କହିଲା—"ଷ୍ଟେଫାନ, ତୁ ଯଦି ଆଉ ଟିକିଏ ବଡ଼ ହୋଇଥାନ୍ତୁ, ତାହେଲେ ଜର୍ମାନମାନଙ୍କୁ କ୍ଷତ ବିକ୍ଷତ କରି ଏହି ରାଇଫଲଟିର ମାନ ନିଶ୍ଚୟ ବଜାୟ ରଖି ଥାଆନ୍ତୁ । ଆଃ, ଯଦି ସେୟା ହୋଇ ଥାଆନ୍ତା ତା ହେଲେ ଆଜି ଆମର କି ଆନନ୍ଦର ଦିନ ହୋଇ ନ ଥାଆନ୍ତା !"

ରାତି ଆଠଟା ବେଳେ ଫରାସୀ ସୈନ୍ୟ ବାହିନୀର ତୋପ ଅଗ୍ନିକାଣ୍ଡ ବର୍ଷଣ କରି ଭୀମ ଗର୍ଜନ କଲା ।

ବୃଦ୍ଧ ଷ୍ଟେଫାନ କହି ଉଠିଲା—"ହେଇ ଆମର ଆକ୍ରମଣ ଆରମ୍ଭ ହେଲା । ଲା ବୁର୍ଗର ଲଢ଼େଇ ଏଥର ଆରମ୍ଭ ହେଲା ।"

କିନ୍ତୁ ଷ୍ଟେଫାନକୁ କିଛି ଭଲ ଲାଗିଲା ନାହିଁ । ସେ ବିଛଣାରେ ଯାଇ ଶୋଇ ପଡ଼ିଲା ସତ, ମାତ୍ର ତାହାର ଆଖିକୁ ନିଦ ଆସିଲା ନାହିଁ । ହାୟ ! ଏ ଆକ୍ରମଣରେ ଜର୍ମାନମାନେ ଟିକେ ମାତ୍ର ବିଚଳିତ ହେବେ ନାହିଁ । ଆଶ୍ଚର୍ଯ୍ୟ ହେବେନାହିଁ—ସେମାନେ ତ ଆଗରୁ ସବୁ କଥା ଜାଣନ୍ତି । ଆଉ ସେ ନିଜେ ତ ଏହି ସର୍ବନାଶ କରି ଆସିଛି— ଜଣେ ଦେଶ ପ୍ରେମିକର ପୁଅ ହୋଇ ! ଛି ଛି !

ଷ୍ଟେଫାନ ଶୋଇ ରହି କାନ୍ଦିବାକୁ ଲାଗିଲା । ତାହାର ବାପା ଘରକୁ ପଶି ଆସି ତାକୁ ପଚାରିଲା—କିରେ, ଏମିତି ଆନନ୍ଦର ଦିନରେ କାନ୍ଦୁଛୁ କାହିଁକି ? କଥା କ'ଣ ?

ଷ୍ଟେନ ଆଉ ନିଜକୁ ସମ୍ଭାଳି ପାରିଲା ନାହିଁ । ଏକାବେଳେକେ ବାପାଙ୍କର ପାଦ ତଳେ ଆସି ସେ ଲୋଟିଗଲା । ତତ୍‌କ୍ଷଣାତ୍ ତାହାର ତକିଆ ତଳୁ ଟଙ୍କାଗୁଡ଼ାକ ଛୁଟିକି ପଡ଼ିଲା ଘରର ଚଟାଣରେ ।

ତାହାର ବାପା ପଚାରିଲା—"ଏ ସବୁ କ'ଣ ? ତୁ କ'ଣ ଆଜିକାଲି ଟଙ୍କା ଚୋରି କରୁଛୁ କି ?"

ଷ୍ଟେନ କାନ୍ଦି କାନ୍ଦି ସବୁ କଥା ବାପାଙ୍କ ପାଖରେ ଖୋଲି କହିଦେଲା । ଅପରାଧ ସ୍ୱୀକାର କରି ତାହାର ମନ ହାଲୁକା ହୋଇଗଲା । ତାହାର ବାପା – ବୃଦ୍ଧ ସୈନିକ—ସବୁ କଥା ଶୁଣିଲା । ତାହାର ଆଖି ଓ ମୁହଁର ରଙ୍ଗ ସମାନ ହୋଇଗଲା । ତା'ପରେ ସେ ବ୍ୟାକୁଳ ହୋଇ କାନ୍ଦି ପକାଇଲା ।

ଷ୍ଟେନ ତାହାର ବାପାକୁ ସାନ୍ତ୍ୱନା ଦେବାକୁ ଲାଗିଲା । କିଛି କ୍ଷଣ ପରେ ତାହାର ବାପା ତାକୁ ଠେଲି ଦେଇ, ଦୂରକୁ ଘଞ୍ଚାଇ ଦେଇ, ଟଙ୍କାଗୁଡ଼ାକ ତଳୁ ଗୋଟାଇ ନେଇ ପଚାରିଲା —"ମୋଟ ଏତିକି ତ ?"

ଷ୍ଟେନ କହିଲା—"ହଁ, ସବୁ ।"

ତା'ପରେ ଷ୍ଟେନର ବାପା ହାତ ବଢ଼ାଇ କାନ୍ଥରୁ ରାଇଫଲଟା ନେଲା, ଗୁଳିର କମର-ବନ୍ଧନୀଟା ଅଣ୍ଟାରେ ବାନ୍ଧିଲା ଏବଂ ପକେଟରେ ଟଙ୍କା ତକ ରଖିଲା ।

ତା'ପରେ ସେ କହିଲା – "ଏ ଟଙ୍କା ମୁଁ ଯାଉଛି ଜର୍ମାନ-ମାନଙ୍କୁ ଫେରାଇ ଦେବି ।"

କହି ଦେଇ ସେ ସିଧା ଘରୁ ବାହାରି ଗଲା ।

ସେହି ଦିନ ଠାରୁ ଷ୍ଟେନର ଆଉ ଦେଖା ମିଳି ନାହିଁ ।

— ଆଲଫୋଁସ ଦୋଡେ

# ବାଜିକର

ଫ୍ରାନ୍ସରେ ରାଜା ଲୁଇଙ୍କ ରାଜତ୍ୱ ସମୟରେ ଜଣେ ଗରିବ ବାଜି-
କର ବାସ କରୁଥିଲା । ତାହାର ନାମ ବାର୍ନାବାସ ଓ ନିବାସ
କାମ୍ପିଗ୍ନା ସହରରେ । ସେ ନାନା ପ୍ରକାର ଅଦ୍ଭୁତ ତାମସା ଓ
ଭେଳକିବାଜି ଦେଖାଇ ଦେଖାଇ ସହର ବଜାର ଗାଁ ଗଣ୍ଡାରେ ଘୂରି
ବୁଲୁଥିଲା ।

ହାଟ ଦିନରେ ଗୋଟିଏ ଖୋଲା ପଡ଼ିଆକୁ ଯାଇ ସେ ଖଣ୍ଡିଏ
ଛିଣ୍ଡା ମଇଳା ଚଟେଇ ବିଛାଇ ଦିଏ, ଏବଂ ଜଣେ ବୁଢ଼ା ବାଜିକର
ଠାରୁ ଶିଖିଥିବା କେତେକ ମଜା ଭୁଲିଣିଆ କଥା ଅନର୍ଗଳ ବକିଯାଏ ।
ସେ ଗୋଟିଏ ହେଲେ ଶବ୍ଦ ତହିଁରୁ ବାଦ ଦିଏ ନାହିଁ, ଆଉ
ଅବିକଳ ସେହି ଏକା ଢଙ୍ଗରେ ଗପିଯାଏ । ଏଥିରେ ଆକୃଷ୍ଟ ହୋଇ
ଅନେକ ଛୁଆ ପିଲା ଓ ଅଳସୁଆ ଲୋକ ଆସି ସେଠାରେ ରୁଣ୍ଡ
ହୋଇଯାନ୍ତି । ତାପରେ ତାହାର ଅଦ୍ଭୁତ ଭାବ ଭଙ୍ଗୀ ଆରମ୍ଭ ହୋଇ
ଯାଏ, ଏବଂ ନିଜର ନାକ ଅଗରେ ଖଣ୍ଡିଏ କାଠି ଉପରେ ଟିଣ
ଥାଳିଆ ରଖି ସେ ନଚାଇବାକୁ ଲାଗେ । ପ୍ରଥମେ ଦେଖଣାହାରିଏ
ତା ଖେଳରେ ସେତେ ପ୍ରଭାବିତ ହୁଅନ୍ତି ନାହିଁ । କିନ୍ତୁ ପରେ, ସେ
ଭୂଇଁରେ ମଥା ଓ ହାତ ରଖି ଏବଂ ଗୋଡ଼ ଉପରକୁ ଟେକି ଛଅଟି

ତମ୍ୱା ପେଣ୍ଡ଼ୁ ଉପରକୁ ଫିଙ୍ଗି ଦିଏ ଏବଂ ସୂର୍ଯ୍ୟ କିରଣରେ ଚକ୍-ଚକ୍ ହେଉଥିବା ସେହି ପେଣ୍ଡ଼ୁକୁ ପୁଣି ଗୋଡ଼ରେ ଧରିନିଏ, କିମ୍ୱା ଦୁଇ ଗୋଡ଼କୁ ଏପରି କାଇଦାରେ ଦୁଲାଇ ବେକ ତଳ ଯାଏ ନେଇଆସେ ଯେ ତାହାର ସମସ୍ତ ଶରୀରଟା ଗୋଟିଏ ଚକର ଆକାର ଧାରଣ କରେ ଏବଂ ସେହି ଅବସ୍ଥାରେ ବାରେଚି କିସମରେ ସେ ତାହାର ତାମସା ଦେଖାଏ । ସେତେବେଳେ ଦେଖଣାହାରିଏ ଭାରି ଖସି ହୋଇଯାନ୍ତି ଏବଂ ଛିଣ୍ଡା ଚଟେଇ ଉପରେ ଝଣଝାଣ ହୋଇ ଗୁଡ଼ିଏ ଆଉ ପଇସା ବର୍ଷିବାକୁ ଲାଗେ ।

ତଥାପି, ଅନ୍ୟମାନଙ୍କ ପରି, କାର୍ମିୟୁର ଅଧିବାସୀ ବାର୍ନାବାଙ୍କୁ ମଧ୍ୟ ଅତି କଷ୍ଟରେ ଜୀବନ ଯାପନ କରିବାକୁ ପଡ଼ୁଥିଲା । ମୁଣ୍ଡ ଝାଳ ତୁଣ୍ଡରେ ମାରି ସୁଦ୍ଧା, ସେ ତାହାର ଦୁଃଖ କଷ୍ଟ ଲାଘବ କରି ପାରୁ ନ ଥିଲା । ତେଣୁ କହିବାକୁ ହେବ, ମଣିଷର ପ୍ରଥମ ପିତା ଆଦମଙ୍କ କୁକର୍ମର ଫଳ ତାକୁ ହିଁ ସବୁ ଠାରୁ ବେଶୀ ଭୋଗିବାକୁ ପଡ଼ୁଥିଲା ।

ତା ଛଡ଼ା, ଇଚ୍ଛା ଥିଲେ ସୁଦ୍ଧା ତାକୁ କାମ କରିବାକୁ ସୁବିଧା ସୁଯୋଗ ମିଳୁ ନ ଥିଲା । କାରଣ ଗଛର ଯେପରି ସୂର୍ଯ୍ୟାଲୋକ ଓ ଉତ୍ତାପ ଦରକାର ହୁଏ, ତାହାର ମଧ୍ୟ ଅଦ୍ଭୁତ ତାମସା ଦେଖାଇବା ପାଇଁ ସେ ସବୁର ନିତାନ୍ତ ପ୍ରୟୋଜନ ହୁଏ । ଶୀତ ଦିନରେ ସେ ପ୍ରାୟ ଗୋଟିଏ ପତ୍ରହୀନ ଶୁଖିଲା ଗଛ ପରି, ବାସ୍ତବିକ, ଦରମରା ହୋଇ ପଡ଼ି ରହି ଥାଏ । ବରଫାବୃତ୍ତ ଭୂଇଁରେ ଖେଳ ଦେଖାଇବା ବାଜିକର ପକ୍ଷରେ ଆଦୌ ସୁବିଧାଜନକ ହୁଏ ନାହିଁ । ସେଥି ଯୋଗୁଁ ସେ ସେତେବେଳେ କ୍ଷୁଧା ଓ ଶୀତରେ ଦାରୁଣ କଷ୍ଟ ଭୋଗ କରେ । ମାତ୍ର, ସରଳ ମଣିଷ ହୋଇ ଥିବାରୁ, ସବୁ ଦୁଃଖ କଷ୍ଟ ସେ ନୀରବରେ ମଥା ପାତି ସହିଯାଏ ।

ଧନ ଦୌଲତର ଉତ୍ପତ୍ତି କିମ୍ବା ମଣିଷର ଅପମାନ ଅବସ୍ଥା ସମ୍ପର୍କରେ ସେ କେବେ ହେଲେ ତାହାର ମଥା ଖେଳାଇ ନାହିଁ । ତାହାର ଦୃଢ଼ ବିଶ୍ୱାସ ଯଦି ଏ ସଂସାର ଖରାପ ହେଲା ତେବେ ଅନ୍ୟଟି ନିଶ୍ଚୟ ଭଲ ହୋଇଥିବ । ଏହି ଆଶାରେ ମନ ଭିତରେ ସାହସ ବାନ୍ଧି ସେ ଆଗକୁ ଧାଇଁ ଚାଲିଥିଲା । ଚତୁର ଲୋକଙ୍କ ପରି ସେ ତାହାର ଆତ୍ମାକୁ ସଇତାନ ନିକଟରେ ବନ୍ଧକ ଦେଇ ନ ଥିଲା । ସେ କେବେ ହେଲେ ଅଯଥାରେ ଭଗବାନଙ୍କ ନାମ ନେଉ ନ ଥିଲା । ସେ ସତ୍ ମାର୍ଗରେ ଗତି କରୁଥିଲା । ଆପଣାର ସ୍ତ୍ରୀ ନ ଥିଲେ ସୁଦ୍ଧା, ପ୍ରତିବେଶୀର ସ୍ତ୍ରୀ ଉପରେ ସେ ଭୁଲେ ମାତ୍ର ଲୋଲୁପ ଦୃଷ୍ଟି ନିକ୍ଷେପ କରୁ ନ ଥିଲା ; କାରଣ ଶାସ୍ତ୍ରରେ ସାମସନଙ୍କ ଉପାଖ୍ୟାନରୁ ସୂଚନା ମିଳେ ଯେ ନାରୀ ହିଁ ହେଉଛି ସକଳ ପୁରୁଷର ପ୍ରଧାନ ଶତ୍ରୁ ।

କାମ ଲାଳସା ତା ମନରେ କେବେ ହେଲେ ସ୍ଥାନ ପାଉ ନ ଥିଲା । ନାରୀ ସଙ୍ଗ-ସୁଖ ସେ ଅକ୍ଳେଶରେ ତ୍ୟାଗ କରି ପାରିଥିଲେ ସୁଦ୍ଧା, ମଦ୍ୟପାନରୁ ନିବୃତ୍ତ ହେବା ପାଇଁ ତାକୁ କିଞ୍ଚିତ କଷ୍ଟ ବୋଧ ହେଉଥିଲା । କାରଣ, ସେ ମଦ୍ୟପ ନ ଥିଲା । ପାଗ ଟିକିଏ ଥଣ୍ଡା ଥିଲେ ସେ ମଦ୍ୟପାନ ଜନିତ ସୁଖ ଅନୁଭବ କରୁଥିଲା । ସେ ଜଣେ ମହତ୍ ଓ ଧର୍ମଭୀରୁ ଲୋକ ଥିଲା, ଏବଂ ମାତା ମେରୀଙ୍କ ପ୍ରତି ତାହାର ପ୍ରଗାଢ଼ ଭକ୍ତି ଥିଲା । ଯେତେବେଳେ ସେ ଗୀର୍ଜାକୁ ଯାଏ, ପ୍ରଭୁଙ୍କ ମାତାଙ୍କ ମୂର୍ତ୍ତି ସାମନାରେ ଆଣ୍ଠୁ ମାଡ଼ି ବସି, ନମ୍ର ପ୍ରକାରେ ପ୍ରାର୍ଥନା କରେ ।

'ମାତା, ଈଶ୍ୱରଙ୍କ କୃପାରୁ ମୋର ମରଣ ନ ହେବା ଯାଏ ମୋର ଜୀବନ ରକ୍ଷା କର ଏବଂ ମୋର ମରଣ ହେଲେ ମୋତେ ସ୍ୱର୍ଗ ସୁଖରୁ ବଞ୍ଚିତ କର ନାହିଁ ।'

ଦିନେ ସନ୍ଧ୍ୟା ବେଳେ, ଅସରାଏ ବର୍ଷା ହୋଇ ଯାଇଛି । ବାଜିକର ବର୍ଷଣ୍ଟ ଚତ୍ୱରେ ରାସ୍ତାରେ ଚାଲିଛି । ବାଜିଖେଳର ପେଣ୍ଡ୍ ଓ ଛୁରୀଗୁଡ଼ିକ ତାହାର ପୁରୁଣା ଚଟେଇ ଖଣ୍ଡିକରେ ଗୁଡ଼ାଇ, ତାକୁ କାଖ ତଳେ ଜାକି, ସେ ନତ ମସ୍ତକରେ ଯାଉଥିଲା ଏବଂ ଟିକିଏ ଆଶ୍ରୟ ଖୋଜୁଥିଲା, ଯେଉଁଠି ଖାଲି ପେଟରେ ବି ରାତିଟା କଟାଇ ଦେଇ ହେବ । ସେତିକି ବେଳେ ଜଣେ ପାଦ୍ରୀ ସେହି ବାଟ ଦେଇ ଯାଉଥିଲେ । ତାଙ୍କ ଉପରେ ଆଖି ପଡ଼ିବା କ୍ଷଣି ସେ ଧାଇଁଯାଇ ତାଙ୍କୁ ପ୍ରଣାମ କଲା । ଏକା ସାଙ୍ଗରେ ଯାଉଁ ଯାଉଁ, ଦୁହେଁ ନିଜ ଭିତରେ କଥୋପକଥନ ହେବାକୁ ଲାଗିଲେ ।

ପାଦ୍ରୀ ପଚାରିଲେ, 'ବନ୍ଧୁ, ତୁମେ କାହିଁକି ରଙ୍ଗ ବେରଙ୍ଗର ପୋଷାକ ପିନ୍ଧିଛ ? ତୁମେ କଣ ଯାତ୍ରାରେ ଦୁଆରୀ ଭୂମିକାରେ ଅଭିନୟ କର କି ?'

ବାର୍ନାବାସ ଜବାବ ଦେଲା, 'ନା, ସାଧୁ ବାବା, ମୋର ନାମ ହେଉଛି ବାର୍ନାବାସ, ଆଉ ବାଜି କରିବା ହେଉଛି ମୋର ପେଷା । ଯଦି ଦୁଇ ବେଳା ପେଟ ପୁରାଇ ମୁଠାଏ ଖାଇବାକୁ ପାଉଥାନ୍ତି, ତାହେଲେ ମୁଁ ଏହାକୁ ସଂସାରରେ ସବୁ ଠାରୁ ବଡ଼ ପେଷା ବୋଲି ଭାବୁଥାନ୍ତି ।'

ପାଦ୍ରୀ ପୁଣି କହିଲେ, 'ବନ୍ଧୁ ବାର୍ନାବାସ, ତୁମେ ଯାହା କହୁଛ ଖୁବ ଚିନ୍ତା କହୁଛ ତ ? ସାଧୁ ସନ୍ନ୍ୟାସୀ ଜୀବନ ଠାରୁ ଆଉ କିଛି ମହତ୍ ଜୀବନ ଏ ଜଗତରେ ନାହିଁ । ସାଧୁ ସନ୍ନ୍ୟାସୀମାନେ ଭଗବାନଙ୍କର, ମାତା ମେରୀଙ୍କର ଓ ମହା ପୁରୁଷମାନଙ୍କର ଗୁଣ ଗାନ କରନ୍ତି । ସେହି ହେତୁ ପାଦ୍ରୀର ଜୀବନ ହେଉଛି ଭଗବାନଙ୍କ ନିକଟରେ ଏକ ଚିରନ୍ତନ ସ୍ତୋତ୍ର ପତ୍ର ।'

ବର୍ନାବାସ ନମ୍ର କଣ୍ଠରେ ପୁଣି ଜଣାଇଲା, 'ସାଧୁ ବାବା, ମୁଁ ମାନୁଛି, ମୁଁ ଜଣେ ମୂର୍ଖ ଭଳି କଥା କହୁଛି । ମୋ ଜୀବନ ସହିତ ଆପଣଙ୍କ ଜୀବନ କଦାପି ତୁଳନା କରାଯାଇ ନ ପାରେ । ନାକ ଅଗରେ ଖଣ୍ଡିଏ କାଠି ଉପରେ ପଇସାଟିଏ ରଖି ନଚାଇବାରେ ଅବଶ୍ୟ କିଛି ବାହାଦୁରୀ ଥାଇପାରେ । କିନ୍ତୁ ଆପଣଙ୍କ ଗୁଣ ତୁଳନାରେ ତାହା ଅତି ନଗଣ୍ୟ । ବାବା, ଆପଣଙ୍କ ପରି ପ୍ରତି ଦିନ ଭଗବାନଙ୍କର ନାମ କୀର୍ତ୍ତନ କରିବାକୁ ମୋର ପ୍ରବଳ ଇଚ୍ଛା ହେଉଛି, ବିଶେଷତଃ ମାତା ମେରୀଙ୍କ ପ୍ରତି ମୋର ଅଟଳ ଭକ୍ତି ଅଛି । ସେ ସନ ଠାରୁ ବୈବ ସହର ଯାଏ, ପ୍ରାୟ ଛଅ ଶହରୁ ଅଧିକ ସହର ଓ ଗାଁରେ, ମୋର ଯେଉଁ ଖ୍ୟାତି ଅଛି, ତାକୁ ଅକ୍ଳେଶରେ ବିସର୍ଜନ ଦେଇ ସନ୍ନ୍ୟାସ ଜୀବନ ଯାପନ କରିବା ପାଇଁ ମୋର ପ୍ରବଳ ଇଚ୍ଛା ହେଉଛି ।'

ବାଜିକରର ସରଳତାରେ ପାଦ୍ରୀ ମୁଗ୍ଧ ହୋଇଗଲେ । ସେ ଜଣେ ବୁଦ୍ଧିମାନ ଲୋକ । ତେଣୁ ସେ ବାର୍ନାବାସକୁ ଜଣେ ସାଧୁ ଲୋକ ବୋଲି ଠିକ୍ ଠଉରାଇ ପାରିଲେ । ଏମିତିକା ଲୋକଙ୍କ ପ୍ରତି ପ୍ରଭୁ ଯଥାର୍ଥରେ କହିଛନ୍ତି—'ସଂସାରରେ ଏହିମାନେ ହିଁ ଶାନ୍ତି ପାଆନ୍ତି ।' ସେଥିପାଇଁ ସେ ପୁଣି କହିଲେ ।

'ବନ୍ଧୁ ବାର୍ନାବାସ, ମୋ ସାଙ୍ଗରେ ଆସ । ମୁଁ ଯେଉଁ ମଠର ମହନ୍ତ, ସେଠାରେ ତୁମର ରହିବାର ବ୍ୟବସ୍ଥା କରିଦେବି । ଯେ ମିଶରର ମେରୀ ମାତାଙ୍କୁ ମରୁଭୂମିରେ ପଥ ଦେଖାଇଥିଲେ, ଆଜି ତୁମକୁ ମୁକ୍ତି ପଥରେ ନେଇଯିବା ପାଇଁ ସେ ମୋତେ ପଠାଇଛନ୍ତି ।'

ଏହିପରି ଭାବରେ ବାର୍ନାବାସ ଜଣେ ସନ୍ନ୍ୟାସୀ ହୋଇଗଲା । ଯେଉଁ ମଠରେ ସେ ସ୍ଥାନ ପାଇଲା, ସେଠାରେ ସନ୍ନ୍ୟାସୀମାନେ

ମାତା ମେରୀଙ୍କର ପୂଜାର୍ଚ୍ଚନାରେ ଅତି ନିଷ୍ଠାପର ଭାବରେ ମଗ୍ନ ରହୁଥିଲେ ଏବଂ ଈଶ୍ବର ଦତ୍ତ ଜ୍ଞାନ ଓ ବୁଦ୍ଧି ବଳରେ ଯେଉଁ ଯେଉଁଠାର ଶକ୍ତି ଅନୁପାତରେ ମାତା ମେରୀଙ୍କର ସେବାରେ ନିୟୋଜିତ ଥିଲେ ।

ମାତା ମେରୀଙ୍କ ମହିମା ବର୍ଣ୍ଣନା କରି, ମହନ୍ତ ଅମୂଲ୍ୟ ପ୍ରାମାଣିକ ଗ୍ରନ୍ଥମାନ ରଚନା କରୁଥିଲେ । ଭାଇ ମରିସ ସେହି ସବୁ ପୋଥିର ଲେଖାକୁ ଅତି ସୁନ୍ଦର ଗୋଲ ଗୋଲ ଅକ୍ଷରରେ ଚମଡ଼ା ତିଆରି କାଗଜ ଉପରେ ନକଲ କରୁଥିଲା । ଭାଇ ଆଲେକଜାଣ୍ଡର ସେହିସବୁ କାଗଜର ପୃଷ୍ଠା ଉପରେ ସୁନ୍ଦର କଳାପୂର୍ଣ୍ଣ ଶ୍ରେଷ୍ଠ ଶ୍ରେଷ୍ଠ ଛବି ଅଙ୍କନ କରୁଥିଲା । ଗୋଟିଏ ଛବିରେ ସ୍ବର୍ଗର ରାଣୀ ସଲୋମନ ସିଂହାସନରେ ବସିଛନ୍ତି ଏବଂ ତାଙ୍କ ପାଦ ତଳେ ଗୁଡ଼ାଏ ସିଂହ ଜଗି ଶୋଇଛନ୍ତି । ତାଙ୍କ ମସ୍ତକ ଉପରେ, ଗୋଟିଏ ବୃତ୍ତ ଅଙ୍କିତ ହୋଇଛି । ତା ଭିତର ପଟେ ସାତୋଟି କପୋତ ଉଡ଼ୁଛନ୍ତି । ସେମାନେ ହେଉଛନ୍ତି ସାତୋଟି ମହତ୍ ଗୁଣର ପ୍ରତୀକ—ଧର୍ମ, ଦୟା, ଜ୍ଞାନ, ଶକ୍ତି, ବିଚାର, ବୁଦ୍ଧି ଓ ବିଦ୍ୟା । ତାଙ୍କ ପାଖରେ ଛଅ ଜଣ ସ୍ବର୍ଣ୍ଣକେଶୀ କୁମାରୀ ସଖୀ ରୂପେ ବେଢ଼ି ରହିଛନ୍ତି । ସେମାନେ ହେଉଛନ୍ତି ବିନୟ, ବିବେଚନା; ଶାନ୍ତି, ସମ୍ମାନ, କୌମାର୍ଯ୍ୟ ଓ ନମ୍ରତାର ପ୍ରତୀକ । ତାଙ୍କ ପାଦ ନିକଟରେ ଦୁଇଟି କ୍ଷୁଦ୍ର ଶୁଭ୍ର ନଗ୍ନ ମୂର୍ତ୍ତି କର ଯୋଡ଼ି ଠିଆ ହୋଇଛନ୍ତି । ସେମାନେ ନିଜ ନିଜର ଆତ୍ମାର ସଦ୍‌ଗତି ନିମନ୍ତେ ସର୍ବ ଶକ୍ତିର ଅବତାର ମାତାଙ୍କ ନିକଟରେ ପ୍ରାର୍ଥନା କରୁଛନ୍ତି । ଆଉ ଗୋଟିଏ ପୃଷ୍ଠାରେ ଭାଇ ଆଲେକଜାଣ୍ଡର ମାତା ମେରୀଙ୍କ ସମ୍ମୁଖରେ ଆଦିମାତା ଇଭଙ୍କର ଚିତ୍ର ଅଙ୍କନ କରିଥିଲା । ସେଥିରେ ପାପ ଓ ପୁଣ୍ୟର ଚିତ୍ର ପରିଷ୍କାର ଭାବରେ ଫୁଟି ଉଠୁଥିଲା—ନାରୀର

ପତନ ଓ ମାତାଙ୍କର ବିଜୟ । ସେହି ପୋଥିରେ ଥିବା ଅନ୍ୟ ଆକର୍ଷଣୀୟ ଛବିଗୁଡ଼ିକ ମଧ୍ୟରୁ ପ୍ରଧାନ ହେଉଛି ସଞ୍ଜୀବନୀ ଜଳପୂର୍ଣ୍ଣ କୂପ, ଝରଣା, ପଦ୍ମ, ଚନ୍ଦ୍ର, ସୂର୍ଯ୍ୟ, ପ୍ରମୋଦ ଉଦ୍ୟାନ, ସ୍ୱର୍ଗଦ୍ୱାର ଓ ବିଷ୍ଣୁପୁର । ଏହିସବୁ ହେଉଛି କୁମାରୀ ମାତାଙ୍କର ପ୍ରତିମୂର୍ତ୍ତି ।

ଭାଇ ମାରବଦ ମଧ୍ୟ ମାତା ମେରୀଙ୍କର ଜଣେ ଆଦରଣୀୟ ସନ୍ତାନ ଥିଲା । ସେ ଦିନ ରାତି ଅନବରତ ପଥରର ମୂର୍ତ୍ତି ଖୋଦନ କରି କରି, ଧୂଳି ଲାଗି ତାହାର ଦାଢ଼ି, ଆଖିପତା ଓ ମୁଣ୍ଡ ବାଳ ଧଳା ପଡ଼ି ଯାଇଥିଲା ଏବଂ ତାହାର ଆଖି ସବୁ ବେଳେ ଫୁଲିଲା ଫୁଲିଲା ଓ କାନ୍ଦିଲା ଭଳି ଦିଶୁଥିଲା । କିନ୍ତୁ ବୁଢ଼ା ବୟସରେ ବି ତାହାର ଆନନ୍ଦ ଓ ଶକ୍ତି ତିଳେ ହେଲେ ଊଣା ପଡି ନ ଥିଲା । ତାହାର ବୟସ ହୋଇ ଯାଇଥିଲେ ସୁଦ୍ଧା ସ୍ୱର୍ଗର ରାଣୀଙ୍କର ତା ପ୍ରତି ଅସୀମ କୃପା ଦୃଷ୍ଟି ଥିଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମାରବଦ ଗୋଟିଏ ଚିତ୍ରରେ ଦେଖାଇ ଥିଲା – ମାତା ମେରୀ ସିଂହାସନରେ ବସିଛନ୍ତି, ତାଙ୍କ ମସ୍ତକ ଉପରେ ମୁକ୍ତା ବିନ୍ଦୁର ଗୋଟିଏ ଜ୍ୟୋତି ମଣ୍ଡଳ ଆବୃତ ହୋଇଛି । ତାଙ୍କ ପଦ ଯୁଗଳ ମଣ୍ଡନ କରୁଥିବା ପୋଷାକର ଭାଙ୍ଗ ଠିକ୍ ଭାବରେ ଦେଖାଇବା ପାଇଁ ତାକୁ ବହୁତ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା । ଏହାକୁ ଦେଖି ଗୁରୁଦେବ କହିଥିଲେ, 'ମୋର ପୂଜନୀୟା ମାତା ଗୋଟିଏ ଆବଦ୍ଧ ଉଦ୍ୟାନ ପରି ଦିଶୁଛନ୍ତି ।'

ସମୟ ସମୟରେ ସେ ମାତା ମେରୀଙ୍କୁ ଗୋଟିଏ ସୁନ୍ଦର ଶିଶୁର ମୂର୍ତ୍ତିରେ ରୂପାନ୍ତରିତ କରୁଥିଲା, ଏବଂ ତାଙ୍କ ମୂର୍ତ୍ତି ଟି ଯେମିତି କହୁଥିଲା, 'ପ୍ରଭୁ. ତୁମେ ହିଁ ମୋର ପ୍ରଭୁ !'

କେତେକ କବି ମଧ୍ୟ ମଠରେ ରହୁଥିଲେ । ସେମାନେ ଲାଟିନ ଭାଷାରେ ପରମ ପୂଜନୀୟା କୁମାରୀ ମେରୀଙ୍କ ଉଦ୍ଦେଶ୍ୟରେ ଗଦ୍ୟ

ପଦ୍ୟ ରଚନା କରୁଥିଲେ । ସେମାନଙ୍କ ଭିତରୁ ପିକାର୍ଡର ଜଣେ ବ୍ୟକ୍ତି ମାତା ମେରିଙ୍କର ଅଲୌକିକ ମହିମା ବର୍ଣ୍ଣନା କରି ଅଶ୍ଳୀଳ ଭାଷାରେ ପଦ୍ୟାକାରରେ ଗୀତ ରଚନା କରି ବୋଲୁଥିଲା ।

ଭକ୍ତମାନଙ୍କର ଏତାଦୃଶ ପ୍ରଶଂସାମୂଳକ ବଚସ୍ଥ ପ୍ରତିଯୋଗୀତା ଓ ଅଭୂତ ସୂକ୍ଷ୍ମ କାର୍ଯ୍ୟାବଳୀ ସନ୍ଦର୍ଶନ କରି, ବାର୍ନାବାସ ନିଜର ଅଜ୍ଞତା ଓ ସରଳତା ପ୍ରତି ଧିକ୍କାର କରିବାକୁ ଲାଗିଲା ।

ଦିନେ ମଠର ପ୍ରାଚୀର ପରିବେଷ୍ଟିତ କ୍ଷୁଦ୍ର ଉଦ୍ୟାନରେ ବୁଲୁବୁଲୁ, ସେ ଦୀର୍ଘଶ୍ୱାସ ଗ୍ରହଣ କହିଲା, 'ହାୟ ! ମୁଁ ବଡ଼ ଅଭାଗା, କାରଣ ଅନ୍ୟ ଭାଇମାନଙ୍କ ପରି ମାତା ମେରିଙ୍କର ସେବା କରିବାକୁ ମୁଁ ଅଯୋଗ୍ୟ । ଅଥଚ ମାତା ମେରିଙ୍କୁ ମୁଁ ଆନ୍ତରିକ କେତେ ଭଲ ନ ପାଏ ! ହାୟ, ମୁଁ ଜଣେ ମୂର୍ଖ ଲୋକ, ଲେଖି ପଢ଼ି ଜାଣେ ନାହିଁ । ତେଣୁ ତୁମର ଗୁଣ କୀର୍ତ୍ତନ କରି ଲମ୍ବା ଲମ୍ବା ବକ୍ତୃତା ଦେଇ ପାରେ ନାହିଁ, ଚମତ୍କାର ତାତ୍ତ୍ୱିକ ଆଲୋଚନା ପ୍ରଣୟନ କରିପାରେ ନାହିଁ, ସୁନ୍ଦର ଛବି ଆଙ୍କି ପାରେ ନାହିଁ, ଦକ୍ଷତା ସହକାରେ ମୂର୍ତ୍ତି ଖୋଦନ କରିପାରେ ନାହିଁ ଏବଂ ଯଥାର୍ଥ ଭାବରେ ଯତି ପକାଇ କବିତା ରଚନା କରିପାରେ ନାହିଁ ! ହାୟ, ମୋର କିଛି ନାହିଁ ! ମାତାଙ୍କର ସେବାରେ ଲାଗିବା ଭଳି ମୋ ଠାରେ କୌଣସି ଗୁଣ ନାହିଁ !'

ଏହିପରି ଭାବରେ ସେ ଗଭୀର ଦୁଃଖରେ ଅହରହ କାଳାତିପାତ କରିବାକୁ ଲାଗିଲା ।

ଦିନେ ସନ୍ଧ୍ୟା ବେଳେ ଅବସର ବିନୋଦନ ସକାଶେ ସନ୍ନ୍ୟାସୀ-ମାନେ ଏକାଠି ବସି ଗପସପ କରୁଥିଲେ । ସେମାନଙ୍କ ଭିତରୁ ଜଣେ ସନ୍ନ୍ୟାସୀ କିପରି ଜଣେ ସାଧୁ 'ଜୟ ମେରି' ଛଡ଼ା ଆଉ କିଛି ଉଚ୍ଚାରଣ କରି ପାରିଲା ନାହିଁ ସେହି କାହାଣୀଟି ଶୁଣାଉଥିଲା ।

ତାହାର ମୂର୍ଖତା ପାଇଁ ଲୋକେ ତାକୁ ଘୃଣା କରୁଥିଲେ । କିନ୍ତୁ ତାହାର ମୃତ୍ୟୁ ପରେ ଦେଖାଗଲା, ମେରୀଙ୍କ ନାମ ନେବା ଉଦ୍ଦେଶ୍ୟରେ ସେ ଯେଉଁ ଚାରୋଟି ଅକ୍ଷର ଉଚ୍ଚାରଣ କରୁଥିଲା, ସେଥିପାଇଁ ତା ମୁହଁ ଭିତରୁ ପାଞ୍ଚୋଟି ଗୋଲାପ ଫୁଲ ବାହାରି ଆସିଲା । ତାପରେ ଜଣେ ସାଧୁ ପୁରୁଷ ଭାବରେ ତାହାର ନାମ ଚାରି ଆଡ଼େ ପ୍ରକଟିତ ହୋଇଗଲା ।

ଏହି ଗପଟି ଶୁଣି, ବାର୍ନାବାସ ମେରୀଙ୍କ କରୁଣା ବିଷୟରେ ଅଧିକ ସଚେତନ ହୋଇ ପଡ଼ିଲା । କିନ୍ତୁ ଏହି ଚମତ୍କାର ଅଲୌକିକ ଉଦାହରଣରେ ସେ ତିଳେ ମାତ୍ର ସାନ୍ତ୍ୱନା ଲାଭ କଲା ନାହିଁ । କାରଣ ତାହାର ହୃଦୟ ଉତ୍ସାହରେ ପୂର୍ଣ୍ଣ ହୋଇ ଯାଇଥିଲା ଏବଂ ଦେବୀଙ୍କର ଗୌରବ ପ୍ରଚାର କରିବା ଲାଗି ସେ ଅଧୀର ହୋଇ ପଡ଼ିଥିଲା ।

କିପରି ତାହା କରିହେବ, ସେ ଅହରହ ଚିନ୍ତା କରିବାକୁ ଲାଗିଲା । କିନ୍ତୁ ସେ ବାଟ ପାଇଲା ନାହିଁ । ଦିନକୁ ଦିନ ତା ଅନ୍ତରରେ ବିଷାଦର ମାତ୍ରା ବଢ଼ିବାକୁ ଲାଗିଲା । ଅବଶେଷରେ ଦିନେ ସକାଳେ ସେ ଆନନ୍ଦରେ ଧଡ଼ପଡ଼ ହୋଇ ନିଦରୁ ଉଠି ପଡ଼ିଲା, ଏବଂ ଗୀର୍ଜାକୁ ଧାଇଁଗଲା । ପ୍ରାୟ ଘଣ୍ଟାକରୁ ବେଶୀ ବେଳ ଯାଏ ସେ ଏକାକୀ ସେଠାରେ ରହିଲା । ପୁଣି ଭୋଜନ ସାରି ଦିପହରରେ ସେ ସେଠାକୁ ଚାଲିଗଲା । ସେହି ଦିନ ଠାରୁ ଗୀର୍ଜା ନିତି ଜନଶୂନ୍ୟ ହେବା କ୍ଷଣି ସେ ସେଠାକୁ ଚାଲିଯାଏ । ଯେତିକି ବେଳେ ଅନ୍ୟ ସନ୍ନ୍ୟାସୀମାନେ ଶିଳ୍ପ ଓ ବିଜ୍ଞାନର ସାଧନାରେ ମଗ୍ନ ରହନ୍ତି, ସେତିକିବେଳେ ସେ ଗୀର୍ଜାରେ ତାହାର ସମୟ କଟାଏ । କ୍ରମେ କ୍ରମେ ତା ମନରୁ ଦୁଃଖ ଦୂର ହୋଇଗଲା ଏବଂ କୌଣସି ଅସନ୍ତୋଷ ରହିଲା ନାହିଁ । କିନ୍ତୁ ତାହାର ଏତାଦୃଶ

ଆଚରଣ ଅନ୍ୟ ସନ୍ନ୍ୟାସୀଙ୍କ ମନରେ କୌତୁହଳ ଉଦ୍ରେକ କଲା । ସେମାନେ ପରସ୍ପର ଭିତରେ ପଚରା ପଚରି ହେବାକୁ ଲାଗିଲେ, ଏଇ ବାର୍ନାବାସ ଅଧିକାଂଶ ସମୟରେ ଏକାକୀ କୁଆଡ଼େ ଯାଉଛି । ମହନ୍ତର କର୍ତ୍ତବ୍ୟ ହେଉଛି ସମସ୍ତଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ଦେବା । ସୁତରାଂ ସେ ସ୍ଥିର କଲା, ବାର୍ନାବାସ ଉପରେ ନଜର ରଖିବ । ତେଣୁ, ଦିନେ ବାର୍ନାବାସ ଏକା ଗୀର୍ଜାରେ ପ୍ରବେଶ କଲା ପରେ, ମହନ୍ତ ଆଉ ଦୁଇ ଜଣ ବୁଢ଼ା ସନ୍ନ୍ୟାସୀଙ୍କୁ ସାଙ୍ଗରେ ଧରି, ଭିତରେ କଣ ହେଉଛି, ଦୁଆର ଫାଙ୍କ ବାଟେ ଦେଖିବା ପାଇଁ ସେଠାରେ ଆସି ହାଜର ହୋଇଗଲେ ।

ସେମାନେ ଦେଖିଲେ—ମାତା ମେରୀଙ୍କ ମୂର୍ତ୍ତି ସାମନାରେ, ବାର୍ନାବାସ ମୁଣ୍ଡ ତଳକୁ କରି ଓ ଗୋଡ଼ ଉପରକୁ ଟେକି, ଛଅଟି ତମ୍ବା ପେଣ୍ଡୁ ଓ ବାରଟି ଛୁରୀରେ ବାଜି କରୁଛି । ଅତୀତରେ ଯେଉଁ ବାଜି ଖେଳ ଦେଖାଇ ସେ ଅଶେଷ ଖ୍ୟାତି ଅର୍ଜନ କରିଥିଲା, ମାତା ମେରୀଙ୍କ ଉଦ୍ଦେଶ୍ୟରେ ସେ ତାହା ପ୍ରଦର୍ଶନ କରୁଥିଲା । ସେ ତାହାର ବଚ୍ଛ ବଚ୍ଛ ଖେଳସବୁ ଦେଖାଇ ମାତା ମେରୀଙ୍କର ସେବା କରିବାକୁ ଚେଷ୍ଟା କରୁଥିଲା । ଏହା ବୁଝି ନ ପାରି, ଅନାଚାର ହେଉଛି ବୋଲି କହି, ବୁଢ଼ା ସନ୍ନ୍ୟାସୀ ଦୁହେଁ ପାଟି କରି ଉଠିଲେ । ମାତ୍ର ମହନ୍ତ ଜାଣିଥିଲେ ଯେ ବାର୍ନାବାସ ଜଣେ ସରଳ ଲୋକ । ତେବେ ବି ତାଙ୍କର ମନେ ହେଲା, ସେହି ଲୋକଟିର ବୁଦ୍ଧି ଭ୍ରଷ୍ଟ ହୋଇଛି । ତେଣୁ ତିନିହେଁ ଗୀର୍ଜାରୁ ବାର୍ନାବାସକୁ ତଡ଼ି ଦେବାକୁ ବାହାରିଲେ । ଠିକ୍ ଏତିକି ବେଳେ ସେମାନେ ଦେଖି ପାରିଲେ—ମାତା ମେରୀ ଧୀରେ ସିଂହାସନରୁ ତଳକୁ ଓହ୍ଲାଇ ଆସିଲେ, ଏବଂ ନିଜର ନୀଳ ପଣତ କାନିରେ, ବାଜିକରର କପାଳରୁ ବୋହି ପଡ଼ୁଥିବା ଝାଳ-ପୋଛି ପକାଇଲେ ।

ଏହା ଦେଖି, ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ କରି, ମହନ୍ତ ଉଚ୍ଚାରଣ କରିବାକୁ ଲାଗିଲେ—

'ସରଳ ଲୋକଙ୍କ ଜୀବନ ଧନ୍ୟ, କାରଣ ସେମାନେ ହିଁ ଭଗବାନଙ୍କର ଦର୍ଶନ ଲାଭ କରନ୍ତି ।'

'ଠିକ୍ କଥା,' ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ କରି, ଅନ୍ୟ ସନ୍ନ୍ୟାସୀ ଦୁଇ ଜଣ ପାଳି ଧରିଲେ ।

— ଆନାତୋଲ୍ ଫ୍ରାଁସ

# ଦର୍ପଣ

## ପ୍ରଥମ ପତ୍ର

ଭଉଣୀ ଆନାଇ,

ମୁଁ ତୁମକୁ ଚିଠି ଦିଏଁ, ଏହା ତ ତୁମର ଇଚ୍ଛା ! ତୁମେ ତ ଜାଣ, ମୁଁ ବିଗୃହ ଅଭାଗିନୀ ଅନ୍ଧ । ଯେ ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ବୁଲେ, ତାକୁ ତୁମେ ଚିଠି ଲେଖିବାକୁ କହୁଛ । ଅନ୍ଧାରରେ ଲିଖିତ ମୋର ସେହି ବିଷାଦମୟ ଚିଠି ପାଇଲେ କ'ଣ ତୁମର ଭୟ ହେବ ନାହିଁ ? ଅହରହ ଅନ୍ଧର ମନ ଭିତରେ ଯେଉଁ ବିଷଣ୍ଣ ଚିନ୍ତା ଉଦିତ ହୁଏ, ଭଉଣୀ, ସେହିସବୁ ଚିନ୍ତା କ'ଣ ତୁମକୁ କେବେ ଭଲ ଲାଗିବ ?

ଭଉଣୀ ଆନାଇ, ତୁମେ ସୁଖୀ । ତୁମେ ନିଜ ଆଖିରେ ଦେଖି ପାର । ଦେଖି ପାରିବା ! ହଁ, ଦେଖି ପାରିବା— ନୀଳ ଆକାଶ, ସୂର୍ଯ୍ୟ ଏବଂ ସବୁ ପ୍ରକାରର ରଙ୍ଗ ଦେଖି ପାରିବା— ସେ ଯେ କି ଆନନ୍ଦ ! ସତରେ ଭଉଣୀ, ଏକ ସମୟରେ ମୁଁ ଏହି ଆନନ୍ଦ ଉପଭୋଗ କରିଥିଲି । ମୋତେ ଯେତେବେଳେ ଦଶ ବର୍ଷ ପଶିବାକୁ ବସିଲା, ଠିକ୍ ସେତିକି ବେଳେ ମୁଁ ଅନ୍ଧ ହୋଇଗଲି । ମୋର

ଦୁଇଟି ଆଖି ନଷ୍ଟ ହୋଇଗଲା । ଏକ୍ଷଣି ମୋର ବୟସ ପଚିଶ । ଏହି ପନ୍ଦର ବର୍ଷ ଭିତରେ ମୋର ଚତୁର୍ଦ୍ଦିଗରେ ସବୁ କିଛି ହିଁ ମୋତେ ଘନ ଅନ୍ଧକାର ଦିଶୁଛି ।

ଭଉଣୀ, ପ୍ରକୃତିରେ ଆଶ୍ଚର୍ଯ୍ୟ ଶୋଭା-ସମ୍ପଦ ମନ ଭିତରେ ଆଣିବାକୁ ମୁଁ କେତେ ଚେଷ୍ଟା କରେ ; କିନ୍ତୁ କୌଣସି ମତେ ତାହା କରିପାରେ ନାହିଁ । ମୁଁ ତା'ର ସବୁ ରଙ୍ଗ ପାସୋରି ଦେଇଛି ! ମୁଁ ଅବଶ୍ୟ ଗୋଲାପ ଫୁଲର ସୁବାସ ଆଘ୍ରାଣ କରିପାରେ ଏବଂ ହାତରେ ଛୁଇଁ ଦେଇ ତା'ର ଗଢ଼ଣଟା ଅନୁମାନ କରିପାରେ ; କିନ୍ତୁ ତା'ର ଗର୍ବର ଧନ ରଙ୍ଗଟା— ଯାହା ସହିତ ପ୍ରାୟ ନାରୀ-ମାନଙ୍କ ଦେହର ରଙ୍ଗ ତୁଳନା କରାଯାଏ— ସେହି ରଙ୍ଗ ମୁଁ ଭୁଲି ଯାଇଛି—କିମ୍ବା ମୁଁ ତାହା ବର୍ଣ୍ଣନା କରି ପାରେ ନାହିଁ । କେବେ କେବେ ଏହି ସ୍ଥୂଳ ଦେହର ଆବରଣ ତଳେ ଅଦ୍‌ଭୁତ ରକମର କିରଣ ଯାତାୟାତ କରେ । ଡାକ୍ତରମାନେ କହନ୍ତି, ଏହା ହେଉଛି ରକ୍ତର ଗତି ; ଏଥିରୁ ଆରୋଗ୍ୟ ଲାଭର ଗୋଟାଏ ଆଶ୍ୱାସନା ମିଳିପାରେ ; କିନ୍ତୁ ସେ ଆଶା ବୃଥା । ଯେଉଁ ଆଲୋକ-ଛଟାରେ ପୃଥିବୀ ଭୂଷିତ, ପନ୍ଦର ବର୍ଷ ହେଲା ମୁଁ ଯେତେବେଳେ ତାହାକୁ ହରାଇଛି, ସେ ଆଉ କେବେ ମିଳି ପାରିବ ନାହିଁ— ଯଦି କେବେ ମିଳେ ତ ଯାଇ ସ୍ୱର୍ଗରେ ମିଳିବ ।

କ'ଣ ଲେଖିବି ତୁମକୁ ? ସେ ଦିନ ମୋର ଗୋଟାଏ ଅପୂର୍ବ ଅନୁଭୂତି ହୋଇଥିଲା । ମୋର କକ୍ଷ ଭିତରେ ଅଣ୍ଡାଳୁ ଅଣ୍ଡାଳୁ ମୋର ହାତ ଯାଇ ପଡ଼ିଲା ଗୋଟାଏ ଜିନିଷ ଉପରେ ଅନ୍ଧାରରେ— ଓଃ ! ତୁମେ ହୁଏତ କିଛି ବୁଝି ପାରିବ ନାହିଁ, ମୁଁ କାହା କଥା କହୁଛି !— ଗୋଟାଏ ଦର୍ପଣ ବିଷୟରେ ! ଗୋଟାଏ ଦର୍ପଣ ସାମନାରେ ଯାଇ ବସିଲି ଏବଂ

ଜଣେ ଯୁବକ ପରି ମୋର କେଶ ଗୁଣି ସଜାଡ଼ି ଖୋସା ବାନ୍ଧିଲା । ଓଃ ! ଯଦି ମୁଁ ନିଜକୁ ନିଜେ ଦେଖି ପାରିଥାନ୍ତି ! ଯଦି ମୁଁ ସୁନ୍ଦରୀ ବୋଲି ଜାଣି ପାରିଥାନ୍ତି— ମୋର ଚମଡ଼ା ଯେମିତି ନରମ, ସେମିତି ସଫା କି ନା—ଦୀର୍ଘ ପକ୍ଷ୍ମ ବିଶିଷ୍ଟ ମୋର ଆଖି ଦୁଇଟି ସୁନ୍ଦର କି ନା ଯଦି ଜାଣି ପାରିଥାନ୍ତି, ତାହାହେଲେ କେତେ ଖୁସି ହୋଇ ନ ଥାନ୍ତି !— ବିଦ୍ୟାଳୟରେ ପିଲାମାନେ ପ୍ରାୟ ମୋତେ କହୁଥିଲେ, ଶ୍ରେଷ୍ଠ ଶ୍ରେଷ୍ଠ ଝିଅମାନେ ବେଶୀ ବେଳ ଯାଏ ଦର୍ପଣରେ ମୁହଁ ଦେଖିଲେ ସେହି ଦର୍ପଣ ବାଟେ ସଇତାନ ଆସେ ! ମୁଁ କିନ୍ତୁ ଏତିକି କହି ପାରେ, ସଇତାନ ମୋର ଦର୍ପଣ ବାଟେ ଆସିଲେ ଖୁବ୍ ବେହାଲ ହୋଇଯାନ୍ତା— କାରଣ ମୁଁ ତ ତାକୁ ଦେଖି ପାରନ୍ତି ନାହିଁ ।

ତୁମର ଚିଠି ଏକ୍ଷଣି ସେମାନେ ମୋତେ ପଢ଼ି ଶୁଣାଇଲେ । ତୁମେ ସେଥିରେ ପଚାରିଛ, ଜଣେ ପୁଞ୍ଜିପତି ଦେଉଳିଆ ହୋଇ ଯିବାରୁ ମୋର ପିତାମାତା ସର୍ବସ୍ୱାନ୍ତ ହୋଇ ଯାଇଛନ୍ତି, ଏ କଥା ସତ କି ନା । ମୁଁ ତ ଏ କଥା କିଛି ଶୁଣି ନାହିଁ । ନା, ସେମାନେ ବଡ଼ଲୋକ । ସେମାନେ ମୋ ପାଇଁ ସବୁ ରକମ ବିଳାସ-ସାମଗ୍ରୀ ଖଞ୍ଜି ଦିଅନ୍ତି । ଯେଉଁଠି ମୋର ହାତ ବାଜେ, ସେଇଠି ମୋର ହାତ ରେଶମ ଓ ମଖମଲ ସ୍ପର୍ଶ କରେ । ଫୁଲ ଓ ମୂଲ୍ୟବାନ୍ ଲୁଗା ସ୍ପର୍ଶ କରେ । ଆମର ଭୋଜନ ଟେବୁଲରେ ପ୍ରଚୁର ଖାଦ୍ୟ ଥାଏ ଏବଂ ପ୍ରତି ଦିନ ମୋର ରସନାର ପରିତୃପ୍ତି ନିମନ୍ତେ ନାନା ପ୍ରକାର ମୁଖ ରୋଚକ ଖାଦ୍ୟ ଅଣାଯାଏ । ଭଉଣୀ ଆନାଇ, ତେଣୁ କହୁଛି, ମୋର ପରମ ଆତ୍ମୀୟମାନେ ଖୁବ୍ ଲକ୍ଷ୍ମୀବନ୍ତ ।

# ଦ୍ୱିତୀୟ ପତ୍ର

ଆନାଇ,

ତୁମ ମଥାରେ ଚକ୍କର ନାହିଁ, ମୁଁ ତୁମକୁ କ'ଣ କହିବାକୁ ଯାଉଛି । ଓଃ ! ତାହା ଶୁଣିଲେ ତୁମେ ନିଶ୍ଚୟ ହସି ହସି ଗଡ଼ି-ଯିବ । ତୁମେ ହୁଏତ ମନେ କରିବ, ମୋର ଦୃଷ୍ଟି ହରଣ ସଙ୍ଗେ ସଙ୍ଗେ ମୋର ବୁଦ୍ଧି ବୃତ୍ତି ବି ଲୋପ ପାଇଲଣି, ମୁଁ ପାଗଳ ହୋଇ ଗଲଣି ; କିନ୍ତୁ ତୁମେ ଯାହା ଇଚ୍ଛା ତାହା ଭାବ ନା କାହିଁକି—ମୋର ଜଣେ ପ୍ରେମିକ ଜୁଟିଛି । ହଁ, ଭଉଣୀ । ମୁଁ ତ ଜଣେ ଦୃଷ୍ଟିହୀନା ଅନ୍ଧ ବାଳିକା, ମୋର ପୁଣି ଜଣେ ପ୍ରଣୟୀ ! ଜଣେ ରାଜ କୁମାରୀର ପ୍ରଣୟୀ ପରି ସେ ସମ୍ଭ୍ରାନ୍ତ ଓ ନିଷ୍କପଟ । ସେ ମୋତେ କେତେ ଆଦର-ଯତ୍ନ କରନ୍ତି, କେତେ ସାଧ୍ୟ ସାଧନା କରନ୍ତି କି ଅଦ୍ଭୁତ ! ଏହା ପରେ ତୁମର ଆଉ କ'ଣ କହିବାର ଅଛି ? ପ୍ରେମ ଯେମିତି ଅନ୍ଧ, ଏମିତି ଆଉ କେହି ନୁହନ୍ତି ! ତେଣୁ ପ୍ରେମ ବୋଧହୁଏ ମୋତେ ତା'ର ନିଜର ଲୋକ ବୋଲି ମନେ କରୁଛି ।

ସେହି ଭଦ୍ରବ୍ୟକ୍ତି ଜଣକ କିପରି ଆମ ଭିତରେ ଆସି ପହଞ୍ଚିଗଲେ, ତାହା ମୁଁ ଜାଣେ ନାହିଁ । ବିନା କାରଣରେ ସେ ଆସନ୍ତି । ଏତିକି ମାତ୍ର ମୁଁ କହି ପାରେଁ, ସେ ଦିନ ସେହି ଭଦ୍ରବ୍ୟକ୍ତି ଜଣକ ମୋର ଭୋଜନ-ଟେବୁଲରେ ମୋ ବାମ ପଟରେ ବସି-ଥିଲେ—ଆଉ ମୋ ଆଡ଼େ ଖୁବ୍ ମନୋଯୋଗ ଦେଉଥିଲେ—ମୋ ପ୍ରତି ଖୁବ୍ ଯତ୍ନ ଦେଖାଉଥିଲେ ।

ମୁଁ ତାଙ୍କୁ କହିଲି,—'ଏହି ପ୍ରଥମ ଥର ଆପଣଙ୍କ ସହିତ ସାକ୍ଷାତ୍ କରିବାର ସୌଭାଗ୍ୟ ମୋର ଘଟିଛି ।'

ସେ ଜବାବ ଦେଲେ,—'ସତରେ, କିନ୍ତୁ ମୁଁ ଆପଣଙ୍କର ପିତା ମାତାଙ୍କୁ ଚିହ୍ନେ ।'

ମୁଁ ପୁଣି କହିଲି,—'ମୁଁ ଆପଣଙ୍କୁ ସ୍ୱାଗତ ଅଭିବାଦନ ଜଣାଉଛି ; କାରଣ, ଯେ ମୋର ପରମ ଦେବତା, ମୋର ସେହି ପିତାମାତାଙ୍କ ପ୍ରତି କପରି ଶ୍ରଦ୍ଧା କରିବାକୁ ହୁଏ, ତାହା ଆପଣ ଜାଣନ୍ତି ।'

ସେ ଧୀରେ ଧୀରେ କହିଲେ,—'ଖାଲି ସେମାନଙ୍କ ଉପରେ ଯେ ମୋର ମମତା ଅଛି, ତା ନୁହେ ।'

ନ ଭାବି ଚିନ୍ତି ମୁଁ ତାଙ୍କୁ ପୁଣି ପଚାରିଲି,— 'ତେବେ ଆଉ କାହାକୁ ଆପଣ ଭଲ ପାଆନ୍ତି ?'

ସେ ଉତ୍ତର ଦେଲେ,—'କାହିଁକି ? ତୁମକୁ !'

'ମୋତେ ? ତା'ର ମାନେ ?'

'ମାନେ—ମୁଁ ତୁମକୁ ଭଲ ପାଏ ।'

'ମୋତେ ? ଆପଣ ମୋତେ ଭଲ ପାଆନ୍ତି ?'

'ସତରେ ମୁଁ ତୁମକୁ ଭଲ ପାଏଁ— ଜନ୍ମଠୁ ଭାବରେ ଭଲ ପାଏଁ ।'

ତାଙ୍କର ଏହିପରି କଥାରେ ମୁଁ ଲଜ୍ଜିତ ହୋଇ ପଡ଼ିଲି । ଲଜ୍ଜାରେ ମୋର ଗଣ୍ଡ ଆରକ୍ତ ହୋଇଗଲା । ମୋର ଓଢ଼ଣାଟା କାନ୍ଧ ଉପରକୁ ଟିକିଏ ଟାଣି ଦେଲି । ସେ ନୀରବରେ ମୋ ପାଖରେ ବସି ପଡ଼ିଲେ ।

'କଥାଟା ଆପଣ ଖୁବ୍ ହଠାତ୍ କହି ପକାଇଲେ ।'

'ଓଃ । ମୋର ଦୃଷ୍ଟିରେ, ମୋର ଭାବ ଭଙ୍ଗୀରେ, ମୋର ସବୁ କାମରେ ଏ କଥା ପ୍ରକାଶ ପାଇବ ।'

'ହଁ, ତାହା ହୋଇପାରେ, କିନ୍ତୁ ମୁଁ ଯେ ଅନ୍ଧ । କୌଣସି ଅନ୍ଧ ରମଣୀକୁ ପାଇବା ପାଇଁ କେହି କ'ଣ କେବେ ସାଧ୍ୟ ସାଧନା କରେ ?'

ସେ ଅତି ଅକପଟ ଚିତ୍ତରେ ବ୍ୟକ୍ତ କଲେ,—'ଦୃଷ୍ଟିହୀନତା ପାଇଁ ମୁଁ କିଛି ମନେ କରେ ନାହିଁ । ଯଦି ତୁମେ ଆଲୁଅ ଦେଖିବାକୁ ନ ପାଅ, ସେଥିରେ ମୋର କ'ଣ ଯାଏ ଆସେ ? ତୁମର ଗଢ଼ଣଟି କ'ଣ ସୁନ୍ଦର ନୁହେଁ ? ତୁମର ପାଦ ଦୁଇଟି କ'ଣ ପକ୍ଷୀର ପାଦ ପରି ସ୍ନିଗ୍ଧ ନୁହେଁ ? ତୁମର କେଶଗୁଚ୍ଛ କ'ଣ ଦୀର୍ଘ ଓ ରେଶମୀ-କୋମଳ ନୁହେଁ ? ତୁମର ଅଙ୍ଗ କ'ଣ ଧଳା ପଥର ପରି ନୁହେଁ ? ତୁମର ମୁଖର ରଙ୍ଗ କ'ଣ ଦୁଧିଆ ଅଳତା ପରି ନୁହେଁ ? ତୁମର ହାତ କ'ଣ ପଦ୍ମ ଫୁଲର ରଙ୍ଗ ପରି ନୁହେଁ ?'

ସେ ମୋର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଲାଗିଲେ ; ମୁଁ ତନ୍ମୟ ହୋଇ ଶୁଣିବାକୁ ଲାଗିଲି ।

ତାଙ୍କ କଥା ବନ୍ଦ ହୋଇଯିବାରୁ, ସେହି କଥାଗୁଡ଼ିକ ମୋର କର୍ଣ୍ଣ କୁହରରେ ଝଙ୍କୃତ ହେବାକୁ ଲାଗିଲା । ମୋର ସ୍ୱାମୀ ଅଛି, ମୋର ତାହା ଅଛି ବୋଲି ସେ ମୋ ରୂପର କେତେ ବର୍ଣ୍ଣନା କଲେ—ତାଙ୍କ ଦୃଷ୍ଟିରେ ମୁଁ ସୁନ୍ଦରୀ ! ଭଉଣୀ ଆନାଇ, ତୁମ୍ଭମାନଙ୍କ ପରି ଝିଅମାନଙ୍କ ପକ୍ଷରେ ଏପରି ପ୍ରଣୟୀ, ଯେ ଏପରି ଭାବରେ ତୁମର ସବୁ ସୌନ୍ଦର୍ଯ୍ୟ ବର୍ଣ୍ଣନା କରେ, ସେ ତ ତୁମ୍ଭମାନଙ୍କର ପାଣିଗ୍ରହଣକାରୀ ଛଡ଼ା ଅନ୍ୟ କେହି ହୋଇ ନ ପାରନ୍ତି । ଜଣେ ଅନ୍ଧ ବାଳିକା ନିକଟରେ ଏଭଳି ପ୍ରଣୟୀ ଖାଲି ପ୍ରେମର ଜଣେ ପ୍ରାର୍ଥୀ ମାତ୍ର; କିନ୍ତୁ ମୋ ପରି ଜଣେ ଅନ୍ଧ ବାଳିକା ନିକଟରେ ସେ ପ୍ରଣୟୀ ଠାରୁ ବି ଅଧିକ, ସେ ତାହାର ଗୋଟିଏ ଦର୍ପଣ କହିଲେ ଅତ୍ୟୁକ୍ତି ହେବ ନାହିଁ !

ତାହା ପରେ ମୁଁ କ'ଣ କଲି, ଶୁଣ ଆନାଇ ! ମୁଁ ପୁଣି ତାଙ୍କୁ କହିଲି,—'ଆପଣ ଯେଉଁଭଳି କହୁଛନ୍ତି ମୁଁ କ'ଣ ସତରେ ସେହିପରି ସୁନ୍ଦରୀ ?'

'ସତ, ମୁଁ ତ ମିଛ କହୁ ନାହିଁ ।'

'ତାହାହେଲେ, ଏକ୍ଷଣି ମୋତେ କ'ଣ କରିବାକୁ କହୁଛନ୍ତି ?'

'ମୁଁ ବୃଦ୍ଧ, ତୁମେ ମୋର ସ୍ତ୍ରୀ ହୁଅ ।'

ଏହି କଥାରେ ମୁଁ ଖୁବ୍ ଉଚ୍ଚ ସ୍ୱରରେ ହସି ପକାଇଲି । ମୁଁ କହିଲି,—'ସତରେ କ'ଣ ଆପଣଙ୍କର ଏହି ଇଚ୍ଛା ? ଅନ୍ଧ ସହିତ ଚକ୍ଷୁଷ୍ମାନର, ବୃଦ୍ଧ ସହିତ ଯୁବତୀର ବିବାହ ପରି କ'ଣ ନୁହେଁ ଏହା ? ନା ! ନା ! ମୋର ପିତା ମାତା ଧନୀ । ତେଣୁ ମୁଁ ବୁଢ଼ୀ ହୋଇ ରହିଗଲେ ବି ମୋର କିଛି ଚିନ୍ତା ନାହିଁ । ମୁଁ ଆଜୀବନ ଏକା ରହିବି, ବୁଢ଼ୀ ହୋଇ ରହିବି ।'

ସେ ଆଉ କିଛି କଥା ନ କହି ଚାଲିଗଲେ । ମୋ ପକ୍ଷରେ ସବୁ ସମାନ । ତେବେ ଏତିକି ସେ ମୋତେ ଜଣାଇ ଦେଇ ଗଲେ ଯେ ମୁଁ ସୁନ୍ଦରୀ ! କିନ୍ତୁ କେଜାଣି କାହିଁକି, ମୋର ଦର୍ପଣ ମହାଶୟଙ୍କ ଉପରେ ମୋର ଟିକିଏ ମମତା ଜାତ ହୋଇଛି, ବୁଝି ପାରିଲି ।

## ତୃତୀୟ ପତ୍ର

ଭଉଣୀ ଆନାଇ,

ତୁମକୁ ଆଜି ଗୋଟାଏ ବଡ଼ ଖବର ଶୁଣାଇବାର ଅଛି । ଏହି ଜୀବନରେ କେତେ କ'ଣ ଦୁଃଖର ଘଟଣା ଅପ୍ରତ୍ୟାଶିତ ଭାବରେ ଆସି ପଡ଼େ । କ'ଣ ଘଟିଛି ତାହା ତୁମକୁ କହିବାକୁ ଯାଉଛି, ଆଉ ମୋର ଅନ୍ଧ ଆଖିରୁ ଝର ଝର ଲୋତକ ଗଡ଼ି ପଡ଼ୁଛି ।

ମୁଁ ଯାହାଙ୍କୁ ମୋର ଦର୍ପଣ ବୋଲି କହେ, ସେହି ଅପରିଚିତ ଭଦ୍ରବ୍ୟକ୍ତିଙ୍କ ସହିତ ବାକ୍ୟାଳାପ କରିବାର କିଛି ଦିନ ପରେ ମୋ ମାଆଙ୍କ ବାହୁ ଉପରେ ଭର ଦେଇ ଦିନେ ମୁଁ ବଗିଚାରେ ବୁଲୁଥିଲି,

ଏମିତି ସମୟରେ ହଠାତ୍ କିଏ ଜଣେ ତାଙ୍କୁ ବଡ଼ ପାଟିରେ ଡାକିଲା । ମୋର ମନେ ହେଲା ଆମର ଦାମୀ ମୋ ମାଆଙ୍କୁ ତୁରନ୍ତ ଖୋଜିବାକୁ ଆସି ବ୍ୟାକୁଳ କଣ୍ଠରେ ଚିତ୍କାର କରୁଛି ।

ମୁଁ ପଚାରିଲି,—'କଥା କ'ଣ କି ମାଆ ?'

'କିଛି ନୁହେଁ, ଝିଅ । ବୋଧହୁଏ କେହି ଦେଖା କରିବାକୁ ଆସିଛି । ଆମର ଯେଉଁପରି ଅବସ୍ଥା, ସେଥିରେ ସାମାଜିକ କର୍ତ୍ତବ୍ୟ କିଛି କିଛି ପାଳନ ନ କଲେ ଆମେ ଚଳି ପାରିବା ନାହିଁ ।'

ମାଆଙ୍କୁ ଚୁମ୍ବନ କରି ମୁଁ କହିଲି,—'ତାହାହେଲେ ମାଆ, ତୁମକୁ ଏଠି ଆଉ ଅଟକାଇ ରଖିବା ଠିକ୍ ନୁହେଁ । ତୁମେ ବୈଠକଖାନାକୁ ଯାଇ ଅତିଥିମାନଙ୍କୁ ଅଭ୍ୟର୍ଥନା କର । ଯାଅ ।'

ମାଆ ତାଙ୍କର ତୁଷାର ଶୀତଳ ଓଷ୍ଠାଧାରରେ ମୋ ଲଲାଟ ସ୍ପର୍ଶ କଲେ । ତା'ପରେ ସେ ଚାଲିଗଲେ—ନାଲି ଗୋଡ଼ି ପଡ଼ିଥିବା ରାସ୍ତାରେ ତାଙ୍କର ପାଦ ଶବ୍ଦ ଶୁଣିବାକୁ ପାଇଲି—କ୍ରମେ ସେହି ପାଦ ଶବ୍ଦ ଦୂରକୁ ଯାଇ ମିଳାଇ ଗଲା ।

ମାଆଙ୍କ ପ୍ରସ୍ଥାନ ପରେ ମୁଁ ଦୁଇ ଜଣ ଶ୍ରମିକଙ୍କର କଣ୍ଠ ସ୍ୱର ଶୁଣି ପାରିଲି । ସେମାନେ ଏକା ଅଛନ୍ତି ମନେ କରି ମନ ଖୋଲି କଥା ହେଉଥିଲେ । ଦେଖ ଆନାଇ, ଯେତେବେଳେ ଭଗବାନ ଆମକୁ ଗୋଟିଏ ଇନ୍ଦ୍ରିୟରୁ ବଞ୍ଚିତ କରନ୍ତି,—ମନେ ହୁଏ, ସାନ୍ତ୍ୱନା ଦେବା ପାଇଁ, ଆମର ଅନ୍ୟ ଇନ୍ଦ୍ରିୟର ଶକ୍ତି ବଢ଼ାଇ ଦିଅନ୍ତି । ଏହି କାରଣରୁ ଅନ୍ଧର ଶ୍ରବଣ ଶକ୍ତି ଚକ୍ଷୁଷ୍ମାନର ଶକ୍ତିଠାରୁ ଅଧିକ ତୀବ୍ର ହୋଇ ଥାଏ । ଯଦିଚ ସେମାନେ ଆସ୍ତେ ଆସ୍ତେ କଥା କହୁଥିଲେ, ତଥାପି ସେମାନଙ୍କର ପଦେ ହେଲେ କଥା ବି ମୋ କାନରୁ ଖସି ଯାଇ ନାହିଁ । ସେମାନେ ଏହି କଥା କହୁଥିଲେ,—'ଆହା ବିଚାରୀ ! ସେମାନଙ୍କୁ ଦେଖିଲେ ଦୁଃଖ ହୁଏ ! ପୁଣି ଘଟକମାନେ ଆସିଛନ୍ତି ।'

'ଝିଅଟିର ମନରେ ଭୁଲେ ହେଲେ ସନ୍ଦେହ ହୁଏ ନା । ସେ ଅନୁମାନ ବି କରି ପାରେ ନାହିଁ ଯେ ତାହାର ଅଜ୍ଞତାର ସୁବିଧା ପାଇ ସେମାନେ ତାକୁ ସୁଖୀ ରଖିବାକୁ ବରାବର ଚେଷ୍ଟା କରୁଛନ୍ତି ।'

'ସେ କି କଥା ?'

'ହଁ, ଏଥିରେ କୌଣସି ସନ୍ଦେହ ନାହିଁ । ଝିଅଟି କେବଳ ମେହଗିନି କାଠ ଓ ମଖମଲ ତାହାର ହାତରେ ସ୍ପର୍ଶ କରୁଛି । ତେବେ କଥା କ'ଣ କି, ମେହଗିନି ଯେ ପୁରୁଣା ଓ କଦର୍ଯ୍ୟ ହୋଇ ଗଲାଣି ଏବଂ ମଖମଲ ଯେ ଛିଣ୍ଡି ଚିକି ଚିକି ହେଲାଣି, ସେ ତାହା ଆଦୌ ବୁଝି ପାରୁ ନାହିଁ । ଭୋଜନ ସମୟରେ ଟେବୁଲରେ ବସି ନାନା ପ୍ରକାର ମୁଖରୋଚକ ଖାଦ୍ୟ ସେ ଉପଭୋଗ କରେ । ସେ ସ୍ୱପ୍ନରେ ସୁଦ୍ଧା କଳନା କରେ ନାହିଁ ଯେ ତାହା ନିକଟରୁ ଘରକରଣାର ଯାବତୀୟ ଦୁଃଖ କଷ୍ଟ ଲୁଚାଇ ରଖା ହୋଇଛି ; ଆଜି ସେହି ଭୋଜନ ଟେବୁଲରେ ବସି ତାହାର ବାପ ମାଆ ଶୁଖିଲା ରୁଟି ଛଡ଼ା ଆଉ କିଛି ଖାଆନ୍ତି ନାହିଁ । '

ଓଃ ! ଭଉଣୀ ଆନାଇ, ଏହି ମର୍ମନ୍ତୁଦ କଥା ଶୁଣି ମୋ ମନ ଭିତରେ କି ନିଦାରୁଣ କଷ୍ଟ ଜାତ ହେଲା, ତାହା ନିଶ୍ଚୟ ତୁମେ ବୁଝି ପାରୁଥିବ । ସେମାନେ ମୋର ସୁଖ ପାଇଁ କେତେ ଲାଳାୟିତ ! ମୋର ଏହି ଅନ୍ଧାର ଭିତରେ ସେମାନେ ମୋତେ, କେବଳ ମୋତେ ହିଁ ନାନା ପ୍ରକାର ବିଳାସ-ସାମଗ୍ରୀ ଦେଇ ସୁଖରେ ରଖିବାକୁ ଚାହାନ୍ତି !

ଓଃ ! କି ବିଚିତ୍ର ସେମାନଙ୍କର ଏ ବାତ୍ସଲ୍ୟ ପ୍ରେମ ! ସେମାନଙ୍କର ଏହି ଋଣ ମୁଁ ଶହେ ବର୍ଷରେ ବି ପରିଶୋଧ କରି ପାରିବି ନାହିଁ ।

## ଚତୁର୍ଥ ପତ୍ର

ଭଉଣୀ ଆନାଇ,

ଆମ ଘରର ଦୁରବସ୍ଥା ସମ୍ବନ୍ଧରେ ମୁଁ ଯେଉଁ କଥାଟି ଗୁପ୍ତ ଭାବରେ ଜାଣିଥିଲି, ତାହା କାହା ପାଖରେ ପ୍ରକାଶ କରି ନାହିଁ । ଦାରିଦ୍ର୍ୟର କଥାଟି ମୋ ପାଖରେ ଲୁଚାଇ ରଖିବାପାଇଁ ସବୁ ଚେଷ୍ଟା ଯେମିତି ବ୍ୟର୍ଥ ହୋଇଛି—ଏହି କଥାଟି ମାଆ ଜାଣି ପାରିଲେ ଏକାବେଳେ ଅଭିଭୂତ ହୋଇ ପଡ଼ିବେ । ମୋତେ ସର୍ବଦା ଦେଖାଇବାକୁ ହେବ, ଯେମିତି ଆମ ଘରର ଭଲ ଅବସ୍ଥା ସମ୍ବନ୍ଧରେ ମୋର ଯଥେଷ୍ଟ ବିଶ୍ୱାସ ଅଛି ; କିନ୍ତୁ ଆମ ଘରକୁ ରକ୍ଷା କରିବି ବୋଲି ମୁଁ ଦୃଢ଼ ସଂକଳ୍ପ ହୋଇଛି ।

ମୋର ପ୍ରଣୟାକାଙ୍କ୍ଷୀର ନାମ ଏଜ୍‌ମଁ । ସେ ମୋ ସହିତ ଦେଖା କରିବାକୁ ଆସିଲାରୁ, ଭଗବାନ ମୋତେ କ୍ଷମା କରନ୍ତୁ, ମୁଁ କ'ଣ କଲି ଜାଣ ? ପ୍ରେମିକା ଭଳି ଢଙ୍ଗ ରଙ୍ଗ ଦେଖାଇ ତାଙ୍କ ମନ ଭୁଲାଇବାକୁ ମୁଁ ଟିକିଏ ଚେଷ୍ଟା କଲି ।

ମୁଁ ତାଙ୍କୁ ପଚାରିଲି, —'ଆପଣ କ'ଣ ଏତେବ ସୁଦ୍ଧା ମୋତେ ସେହିପରି ଭଲ ପାଆନ୍ତି ?'

ସେ ଜବାବ ଦେଲେ,—'ହଁ, ମୁଁ ତୁମକୁ ଭଲ ପାଏଁ । କାରଣ, ତୁମର ଯେଉଁ ରୂପ ଲାବଣ୍ୟ ତାହା ଗୋଟାଏ ଉଚ୍ଚ ଧରଣର ରୂପ ଲାବଣ୍ୟ —ଅତିଶୟ ନିର୍ମଳ ଓ ଲଜ୍ଜାନମ୍ର ।'

'ଆଉ ମୋର ଦେହର ଗଠନ ?'

'ଦ୍ରାକ୍ଷାଲତା ଭଳି ସୁନ୍ଦର ଓ ସୁଲଳିତ ।'

'ଆଃ—ଆଉ ମୋର ଲଲାଟ ?'

'ଗଜ ଦନ୍ତ ପରି ପ୍ରଶସ୍ତ ଓ ମସୃଣ—ସେ ଲଲାଟ ନିକଟରେ ଗଜ ଦନ୍ତ ବି ହାରି ମାନେ ।'

'ସତେ ?' ଏହା କହୁଁ କହୁଁ ମୁଁ ହସିବାକୁ ଲାଗିଲି ।

'ଏ କଥାରେ ତୁମକୁ ଏତେ ମଜା ଲାଗିଲା କାହିଁକି ?'

'ନା, ନା, ତାହା ହେଉଛି ମୋ ମନର ଗୋଟାଏ କଳ୍ପନା । ମୋର ମନେ ହେଲା, ଯେମିତି ତୁମେ ମୋର ଦର୍ପଣ । ତୁମ କଥା ଭିତର ଦେଇ ମୁଁ ନିଜକୁ ଦେଖି ପାରୁଛି ।'

'ପ୍ରିୟତମେ, ତୁମେ ଚିର ଦିନ ଏହି ଭଳି ଭାବରେ ମୋତେ ଦେଖୁଥାଅ ।'

'ତୁମେ ରାଜି ତ ? ତାହାହେଲେ—!'

'ନିର୍ମଳ ଦର୍ପଣ ଭଳି ମୁଁ ତୁମର ରୂପ, ତୁମର ଗୁଣ ତୁମ ନିକଟରେ ପ୍ରତିଫଳିତ କରିବାକୁ ରାଜି ଅଛି ; କିନ୍ତୁ ତୁମେ ମୋର ସ୍ତ୍ରୀ ହେବ ବୋଲି ସମ୍ମତି ଦିଅ । ମୋର କିଛି ସମ୍ପତ୍ତି ଅଛି । ସୁତରାଂ ତୁମର କିଛି ଅଭାବ ହେବ ନାହିଁ ! ତୁମକୁ ସୁଖୀ ରଖିବାକୁ ମୁଁ ପ୍ରାଣ ପଣେ ଚେଷ୍ଟା କରିବ ।'

ଏତିକି ବେଳେ ମୋର ବାପ-ମାଆଙ୍କର କଥା ମନେ ପଡ଼ିଗଲା । ମୁଁ ଭାବିଲି, ଯଦି ମୁଁ ଏହାଙ୍କୁ ବିବାହ କରେ, ତାହାହେଲେ ସେମାନେ ଗୋଟାଏ ଋଣ ଭାରରୁ ମୁକ୍ତ ହୋଇ ପାରିବେ ।

ମୁଁ ଜବାବ ଦେଲି,—'କିନ୍ତୁ ଏହି ବିବାହରେ ତୁମର ଆତ୍ମ-ମର୍ଯ୍ୟାଦା ହାନି ହେବ । ମୁଁ ତୁମକୁ ପାଇବି ନାହିଁ ।'

ସେ କହିଲେ,—'ହାୟ, ହାୟ ! ମୋର ବି ଗୋଟାଏ କଥା ତୁମକୁ ଜଣାଇବା ଦରକାର ।'

'କଥାଟା କ'ଣ ? ଶୁଣେ ।'

'ମୁଁ ପ୍ରକୃତି ଦେବୀଙ୍କର ଗୋଟିଏ କୁତ୍ସିତ ସନ୍ତାନ । ମୋର ମୁଖ ମଣ୍ଡଳରେ ବି କୌଣସି ସୌନ୍ଦର୍ଯ୍ୟ ନାହିଁ—ମୋର ଗମନ-ଭଙ୍ଗୀରେ କୌଣସି ଗାମ୍ଭୀର୍ଯ୍ୟ ନାହିଁ । ମୋର ଚୂଡ଼ାନ୍ତ ଦୁର୍ଭାଗ୍ୟ

ଦେଉଛୁ — ଉତ୍କଟ ବସନ୍ତ ରୋଗର କ୍ଷତ ଚିହ୍ନରେ ମୋର ମୁଖ ଆଚ୍ଛନ୍ନ । ସେହି ରୋଗର ପ୍ରତିକାର ନିମନ୍ତେ ଟିକା ନେବାକୁ ଯାଇ ମୋର ସବୁ ଶାରୀରିକ ସୌନ୍ଦର୍ଯ୍ୟ ଲୋପ ପାଇଛି । ଅତଏବ ମୁଁ ଯେ ଜଣେ ଅନ୍ଧ ବାଳିକାକୁ ବିବାହ କରୁଛି, ସେଥିରେ ମୋର ସ୍ୱାର୍ଥପରତା ହିଁ ପ୍ରକାଶ ପାଉଛି । ଏଥିରେ ମୋର ନମ୍ରତା ପ୍ରକାଶ ପାଉ ନାହିଁ ।'

ମୁଁ ତାଙ୍କ ଆଡ଼କୁ ମୋ ହାତ ବଢ଼ାଇ ଦେଲି ଏବଂ କହିଲି —'ମୁଁ ଜାଣେ ନା, ତୁମେ ନିଜ ଉପରେ କେତେ କଠୋର ହେଉଛ ; କିନ୍ତୁ ଆଉ ଯାହା ହେଉ ପଛକେ, ମୋର ବିଶ୍ୱାସ, ତୁମେ ଜଣେ ଖୁବ୍ ଖାଣ୍ଟି ଲୋକ । ମୁଁ ଏବେଣି ଯେମିତି ଅଛି ତୁମେ ମୋତେ ଠିକ୍ ସେହି ଭାବରେ ଗ୍ରହଣ କର । ତୁମର ଚିନ୍ତାରୁ ମୋତେ କିଛି ବିଚଳିତ କରି ପାରିବ ନାହିଁ । ମୋର ଏହି ଅନ୍ଧକାର ମରୁଭୂମିରେ ତୁମର ପ୍ରେମ ହିଁ ମୋର ହରିତ୍ କୁଞ୍ଜ ହେବ ।'

ମୁଁ ଠିକ୍ କରୁଛି, କି ଭୁଲ୍ କାମ କରୁଛି, ତାହା ମୁଁ ଜାଣେ ନାହିଁ । ଆନାଇ ! ମୁଁ କିଛି ବୁଝି ପାରୁ ନାହିଁ; କିନ୍ତୁ ମୁଁ ଏହା ଜାଣେ, ମୋ ବାପା ମାଆଙ୍କୁ ଉଦ୍ଧାର କରିବା ପାଇଁ ମୁଁ ଏହି କାମରେ ପ୍ରବୃତ୍ତ ହେଉଛି । ମୋର ଆଶା, ହୁଏତ ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ଯାଉଁ ଯାଉଁ ମୁଁ ଠିକ୍ ରାସ୍ତାଟା ଧରି ପାରିବି ।

## ପଞ୍ଚମ ପତ୍ର

ଆନାଇ,

ଏଥର ତୁମର ଚିଠିରେ ତୁମେ ପ୍ରିୟ ସଖି ପରି ମୋ ପ୍ରତି କେତେ ସ୍ନେହ ମମତା ପ୍ରକାଶ କରିଛ, ମୋତେ ଅଜସ୍ର ପ୍ରଶଂସା

କରିଛ, ମୋତେ ଅଭିନନ୍ଦନ ଜଣାଇଛ—ଏସବୁ ସବୁଠାରେ ଚିଠିଟି ଭରି ।

ହଁ, ଭଉଣୀ, ଦୁଇ ମାସ ହେଲା ମୁଁ ବିବାହ କରିଛି । ଏହି ଦୁଇ ମାସ ଭିତରେ ମୁଁ ଉପଲବ୍ଧି କରିଛି, ନାରୀମାନଙ୍କ ଭିତରେ ମୋ ପରି ସୁଖୀ ଆଉ କେହି ନାହିଁ । ମୋର କିଛି ଆକାଙ୍କ୍ଷା କରିବାର ନାହିଁ । ମୋ ସ୍ୱାମୀଙ୍କର ମୁଁ ହୃଦୟ-ପ୍ରତିମା, ଆଉ ମୋ ବାପା ମାଆଙ୍କର ମୁଁ ଆଦରଣୀୟା କନ୍ୟା । ସେମାନେ ମୋତେ ତ୍ୟାଗ କରି ନାହାନ୍ତି ।

ମୋର ଅନ୍ଧତା ପାଇଁ ମୁଁ ଆଉ ଦୁଃଖିତ ନୁହେଁ । ଏଜନ୍ମଙ୍କ ଦୃଷ୍ଟି ଆମ ଉଭୟଙ୍କ ଉପରେ ଅଛି ।

ଯେଉଁ ଦିନ ଆମର ବିବାହ ହେଲା, ମୋର ଦର୍ପଣ ମୋର ଜାକଜମକପୂର୍ଣ୍ଣ କନ୍ୟା-ସଜା କଥା ମୋ ମାଖରେ ପ୍ରକାଶ କରିଥିଲେ । ମୋର ଅବଗୁଣ୍ଠନଟି ଅତି ସୁନ୍ଦର ହୋଇଥିଲା—ଆଉ ମୋର ସୁନ୍ଦର ଫୁଲହାରଟି ମୋତେ ଖୁବ୍ ମାନିଥିଲା । କୌଣସି ଅସଲ ଦର୍ପଣ ଏହା ଠାରୁ ଆଉ ବେଶୀ କ'ଣ କରି ପାରିଥାନ୍ତା ?

ସନ୍ଧ୍ୟା ବେଳେ ଆମେ ଦୁହେଁ ବଗିଚାରେ ବିହାର କରୁଁ । ସେଠାରେ ଫୁଲର ସୁବାସରେ, ପକ୍ଷୀର କାକଳିରେ, ଫଳର ଆସ୍ୱାଦନରେ, କୋମଳ କର ସ୍ପର୍ଶରେ ମୁଁ ବିମୁଗ୍ଧ । କେବେ କେବେ ଆମେ ଅଭିନୟ ଦେଖିବା ଲାଗି ରଙ୍ଗମଞ୍ଚକୁ ଯାଉଁ, ଏବଂ ସେଠାରେ ବି, ମୋର ଅନ୍ଧ ଚକ୍ଷୁ ଯାହା ଦେଖି ନ ପାରେ, ତାଙ୍କର ବର୍ଣ୍ଣନାର ଗୁଞ୍ଜରଣରେ ମୁଁ ସେ ସବୁ ମାନସ ପଟରେ ଦେଖି ପାରେଁ । ସେ କହନ୍ତି, ସେ ଦେଖିବାକୁ କୁତ୍ସିତ । ସେଥିରେ ମୋର କି ଯାଏ ଆସେ ? କେଉଁଟା ସୁନ୍ଦର, କେଉଁଟା କୁତ୍ସିତ, ମୁଁ ତ

ଏକ୍ଷଣି ତାହା ବୁଝି ପାରୁ ନାହିଁ । ମୁଁ ଖାଲି ବୁଝି ପାରେ ସ୍ନେହ-ମମତା, ଭଲ ପାଇବା ।

ଭଉଣୀ ଆନାଇ, ଆଜି ତାହାହେଲେ ଏତିକିରେ ରହୁଛି । ଆଶା, ମୋର ସ୍ନେହରେ ତୁମେ ନିଶ୍ଚୟ ସୁଖୀ ହେବ ।

## ଷଷ୍ଠ ପତ୍ର

ଭଉଣୀ ଆନାଇ,

ମୁଁ ମାଆ ହୋଇଛି । ମୁଁ ଗୋଟିଏ ଶିଶୁର ମାଆ ହୋଇଛି ସତ ; କିନ୍ତୁ ମୁଁ ତାକୁ ଦେଖି ପାରୁ ନାହିଁ । ସମସ୍ତେ କହୁଛନ୍ତି, ସେ ଦେଖିବାକୁ ଏମିତି ସୁନ୍ଦର ଯେ ତା ଉପରୁ ଆଖି ଫେରାଇ ହୁଏ ନା । ସେମାନେ କହନ୍ତି, ସେ ମୋର ଜୀବନ୍ତ କ୍ଷୁଦ୍ର ପ୍ରତିମୂର୍ତ୍ତି ; କିନ୍ତୁ ସେ ସମ୍ବନ୍ଧରେ ମୁଁ କିଛି କହି ପାରିବି ନାହିଁ । ଓଃ ! ମାଆର ବାତ୍ସଲ୍ୟ ପ୍ରେମ କି ବଳବତୀ ! ମୁଁ ଯେ ନୀଳ ଆକାଶ ଦେଖି ପାରେ ନା, ମୋର ସ୍ୱାମୀଙ୍କ ମୁଖ ଓ ମୋର ବାପ-ମାଆଙ୍କର ମୁଖ ଦେଖି ପାରେ ନା—ଏ ସବୁ ତ ମୁଁ ଅମ୍ଳାନ ବଦନରେ ସହ୍ୟ କରି ଆସିଛି । କେବେ ହେଲେ ଆକ୍ଷେପ ପ୍ରକାଶ କରି ନାହିଁ ; କିନ୍ତୁ ମୁଁ ଯେ ମୋର ନିଜର ସନ୍ତାନକୁ ଦେଖି ପାରିବି ନାହିଁ— ଏହା ମୋ ପକ୍ଷରେ ଅସହ୍ୟ । ଓଃ, ମୋର ଆଖି ଉପରେ ଯେଉଁ କଳା ପରଦାଟା ପଡ଼ିଛି ତାହା ଯଦି ମିନିଟିଏ ପାଇଁ, ଖାଲି ଗୋଟାଏ ସେକେଣ୍ଡ ପାଇଁ ଘୁଞ୍ଚି ଯାଏ, ଯଦି ବିଜୁଳି ପରି ତାହାର ମୁଖଟି ମୁଁ ଥରେ ଦେଖି ପାରନ୍ତି, ତାହାହେଲେ ମୁଁ କେତେ ସୁଖୀ ହୁଅନ୍ତି !— ତାହାହେଲେ ମୋ ଜୀବନରେ ଅବଶିଷ୍ଟ ଦିନ ପାଇଁ ମୁଁ ନିଶ୍ଚୟ ଗର୍ବ ଅନୁଭବ କରି ପାରନ୍ତି ।

ଏଥର ଏଜନ୍ମ ମୋର ଦର୍ପଣ ହୋଇ ପାରିବେ ନାହିଁ । ସେ ଯେତେ କହନ୍ତୁ ନା କାହିଁକି, ମୋ ଝିଅଟିର କେଶ କୁଞ୍ଚିତ, ଆଖି ଦୁଇଟି ଉଜ୍ଜ୍ୱଳ, ହସଟି ବଡ଼ ମଧୁର—ସେଥିରେ ମୋର କ'ଣ ହେବ କହନ୍ତ ?

ଯେତେବେଳେ ଝିଅଟି ମୋ ଆଡ଼କୁ ହାତ ବଢ଼ାଏ, ସେତେବେଳେ ତ ମୁଁ ତାହାର କୋମଳ ମୁଖଟି ଦେଖି ପାରେ ନାହିଁ !

## ସପ୍ତମ ପତ୍ର

ଆନାଇ,

ଜାଣ, ସତରେ ମୋର ସ୍ୱାମୀ ଜଣେ ଦେବତା । ସେ କ'ଣ କରିଛନ୍ତି ଜାଣ ? ଗଲ ବର୍ଷ ସେ ମୋ ପାଇଁ ଯେ କେତେ କ'ଣ କରିଛନ୍ତି, ତାହା ମୁଁ ବି ଜାଣି ପାରି ନାହିଁ । ସେ ମୋର ଆଖି ଭଲ କରିବାକୁ ଚାହାନ୍ତି—ଆଉ ଡାକ୍ତର ହେଉଛନ୍ତି ସେ ନିଜେ । ତାଙ୍କ ଡାକ୍ତରୀ ବିଦ୍ୟା ଭଲ ଲାଗେ ନାହିଁ, ତଥାପି ଖାଲି ମୋର ପାଇଁ ସେ ଡାକ୍ତରୀ ବିଦ୍ୟାଟା ଶିଖିଛନ୍ତି ।

ସେ କାଲି ମୋତେ ସବୁ କଥା ଖୋଲି କହିଲେ,—'ପ୍ରାଣେଶ୍ୱରୀ ! ଜାଣ, ମୁଁ କ'ଣ ଚାହେଁ ? କେଉଁ ଆଶାରେ ମୁଁ ଘୂରି ବୁଲେ ?'

'ଏହା କ'ଣ ସମ୍ଭବ ?'

'ହଁ, ଗାତ୍ର ଚର୍ମ ସୁନ୍ଦର କରିବା ଲାଗି ଯେଉଁ ଔଷଧର ପାଣି ତୁମକୁ ବ୍ୟବହାର କରିବାକୁ ଦେଇଥିଲି, ତାହା ଗୋଟିଏ ଛଳନା ମାତ୍ର— ପ୍ରକୃତରେ ତାହା ହେଉଛି ଆଉ ଗୋଟିଏ ଗୁରୁତର କାର୍ଯ୍ୟର ପୂର୍ବ ଆୟୋଜନ ।'

'ସେ କାମଟା କ'ଣ ?'

'ତାହା ହେଉଛି ଆଖିର ପର୍ଦ୍ଦା ଅପସାରଣ ।'

'ତୁମର ହାତ କ'ଣ ଥରିବ ନାହିଁ ?'

'ନା, କାହିଁକି ମୋ ହାତ ଥରିବ ? ଯେତେବେଳ ଯାଏ ମୋର ହୃଦୟ ଠିକ୍ ଅଛି, ସେତେବେଳ ଯାଏ ମୋର ହାତ ବି ଶକ୍ତ ଥିବ ।'

ମୁଁ ତାଙ୍କୁ ଚୁମ୍ବନ କରି କହିଲି,— 'ତୁମେ ମଣିଷ ନୁହ । ତୁମେ ଦୟାମୟ ଦେବତା ।'

ସେ କହିଲେ—'ଆଃ ! ଆଉ ଥରେ ମୋତେ ଚୁମ୍ବନ କର, ପ୍ରିୟତମେ ! ମୋତେ ଏହି କ୍ଷଣିକର ବିଭ୍ରମ ଉପଭୋଗ କରିବାକୁ ଦିଅ ।'

'ଏ କଥାର ଅର୍ଥ କ'ଣ, ଏଜ୍‌ମି ?'

'ଅର୍ଥାତ୍ ଭଗବାନଙ୍କ ଆଶୀର୍ବାଦରୁ ଶୀଘ୍ର ତୁମର ଆଖି ଭଲ ହୋଇଯିବ ।'

'ତା ପରେ ?'

'ତା ପରେ, ମୁଁ ଯେମିତି, ଠିକ୍ ସେମିତି ଭାବରେ ମୋତେ ଦେଖି ପାରିବ— କ୍ଷୁଦ୍ରକାୟ ନଗଣ୍ୟ ଓ କୁତ୍ସିତ ।'

ତାଙ୍କର ଏହି କଥାରେ ଅଶ୍ରୁତର ସ୍ମୃତି ମୋ ମାନସ-ପଟରେ ଭାସିଗଲା— ମୋର ଅନ୍ଧକାର ଭିତରୁ ଯେମିତି ଗୋଟାଏ ଆଲୋକର ରେଖା ବାହାରି ଆସିଲା, ମୋର କଳ୍ପନା ମଣ୍ଡଳ ପରି ଜଳିବାକୁ ଲାଗିଲା ।

ମୁଁ ଠିଆ ହୋଇପଡ଼ି କହିଲି,— 'ଏଜ୍‌ମି, ପ୍ରିୟତମ, ମୋ ପ୍ରେମ ଉପରେ ଯଦି ତୁମର ବିଶ୍ୱାସ ନ ଥାଏ, ଯଦି ତୁମେ ମନେ କର, ତୁମକୁ ଯେଉଁପରି ଭାବରେ ଦେଖେ ନା କାହିଁକି,

ମୁଁ ତୁମର ସ୍ୱେଚ୍ଛା ଦାସୀ ନୁହେଁ, ତାହାହେଲେ ମୋତେ ମୋର ଅନ୍ଧକାର ଭିତରେ, ମୋର ଶରୀ-ଗନ୍ଧ ଭିତରେ ରଖିଦିଅ ।'

ସେ କିଛି ଜବାବ ଦେଲେ ନାହିଁ, ଖାଲି ମୋର ହାତଟା ଟିକିଏ ଟିପି ଦେଲେ ।

ମୋର ମାଆ କହୁଥିଲେ, ମାସକ ଭିତରେ ମୋ ଆଖିରେ ଅସ୍ତ୍ରୋପଚାର କରାଯିବ ।

ମୋ ମାଆଙ୍କ ଠାରୁ ସ୍ୱାମୀଙ୍କର ଯେଉଁ ବର୍ଣ୍ଣନା ଶୁଣିଥିଲି, ସେ ସବୁ କଥା ମୋର ପୁଣି ମନେ ପଡ଼ିଲା । ମୋ ମାଆ କହୁଥିଲେ —ତାଙ୍କ ମୁଖରେ ବସନ୍ତର ଦାଗ ଅଛି । ବାପା କହୁଥିଲେ –ତାଙ୍କ ମୁଣ୍ଡଟା ଚନ୍ଦା । ଆମର ଦାସୀ କହୁଥିଲା— ସେ ବୁଢ଼ା ।

ମୁଖରେ ବସନ୍ତର ଦାଗର ଅର୍ଥ ଗୋଟାଏ ଶାରୀରିକ ଦୁର୍ଘଟଣା । ଲେଖକଙ୍କ ମତରେ ଚନ୍ଦା ମୁଣ୍ଡ ତ ଗୋଟାଏ ବୁଦ୍ଧିର ଲକ୍ଷଣ । ମାତ୍ର ବୁଢ଼ା ହେବା ଗୋଟାଏ ଦୁଃଖର ବିଷୟ ଅବଶ୍ୟ । ତା'ପରେ ଯଦି ଦୁର୍ଭାଗ୍ୟ କ୍ରମେ ମୋ ଆଗରୁ ତାଙ୍କର ମୃତ୍ୟୁ ହୁଏ, ତାହାହେଲେ ମୋର ଭଲ ପାଇବାର ଦିନ ସଂକ୍ଷିପ୍ତ ହେବ ।

ବାସ୍ତବିକ ଭଉଣୀ ଆନାଇ, ଯେଉଁ ବହିଟି ଆମେ ଦୁହେଁ ଦିନେ ପଢ଼ିଥିଲେ, ସେହି ଗପ ବହିଟି କଥା ତୁମର ମନେ ଅଛି ତ ? ନିଜର ଆଖିରେ ଦେଖି ଓ ମୁଖରେ ଉଚ୍ଚାରଣ କରି ତୁମେ ସେହି ଗପଟି ପଢ଼ିଥିଲ, ଆଉ ମୁଁ ମନ କର୍ଣ୍ଣ ଦେଇ ଓ ସବୁ ଶକ୍ତି ଠୁଳ କରି ତାହା ଶୁଣିଥିଲି । ସେହି ଗପର 'ସୁନ୍ଦରୀ ଓ ପଶୁ'ର ଅବସ୍ଥା ଆଜି ମୋର ହୋଇଛି । କାରଣ ମୋତେ କୌଣସି ଯାଦୁ ମନ୍ତ୍ର ଜଣା ନାହିଁ, ଯାହା ଦ୍ୱାରା ରୂପାନ୍ତର ହୋଇ ପାରିବ । ଯାହା ହେଉନା କାହିଁକି, ଭଉଣୀ ଆନାଇ, ମୋର ମଙ୍ଗଳ ପାଇଁ ତୁମେ ଭଗବାନଙ୍କ

ନିକଟରେ ପ୍ରାର୍ଥନା କର । କିଏ ଜାଣେ, ଭଗବାନଙ୍କ ଆଶୀର୍ବାଦ ଲାଭ୍ କଲେ, ହୁଏତ ଦିନେ ମୁଁ ତୁମର ଚିଠିଗୁଡ଼ିକ ପଢ଼ି ପାରିବି ।

## ଶେଷ ପତ୍ର

ଭଉଣୀ ଆନାଇ,

ଦେଖ, ମୋ ଚିଠିର ପ୍ରଥମ ଭାଗଟା ନ ପଢ଼ି ଶେଷ ଭାଗରେ ଆଖି ବୁଲାଅ ନାହିଁ । ଯାହା ଯେମିତି ଭାବରେ ଗୋଟାକ ପରେ ଗୋଟାଏ ହୋଇଛି, ଠିକ୍ ସେହି ସ୍ୱାଭାବିକ କ୍ରମ ଅନୁସାରେ ତୁମେ ମୋର ଦୁଃଖ, ମୋର ଯନ୍ତ୍ରଣା ବିପର୍ଯ୍ୟୟ ଓ ମୋର ଆନନ୍ଦରେ ଯଥା ସମ୍ଭବ ଭାଗ ନିଅ ।

ଦୁଇ ସପ୍ତାହ ହେଲା ମୋର ଆଖିରେ ଅସ୍ତ୍ରୋପଚାର ହୋଇଛି । ମୋର ଆଖି ଉପରେ ଗୋଟିଏ କର୍ଣ୍ଣିକା ହାତ ସ୍ଥାପିତ ହୋଇଥିଲା । ବୁଝି ପାରୁଛ ତ କ'ଣ ତାହା ? ଦୁଇ ଥର ମୁଁ ଖୁବ୍ ଚିତ୍କାର କଲି । ତା'ପରେ ମୋର ମନେ ହେଲା, ଯେମିତି ମୁଁ ଦିନ, ଆଲୁଅ, ରଙ୍ଗ, ସୂର୍ଯ୍ୟ ସବୁ ଦେଖି ପାରୁଛି । ସେତିକ ବେଳେ ପୁଣି ଗୋଟାଏ ପଟି ମୋର ଆଖି ଉପରେ ବସାଇ ଦିଆଗଲା । କ୍ରମେ କ୍ରମେ ମୁଁ ଆରୋଗ୍ୟ ଲାଭ କଲି ! କେବଳ ଟିକିଏ ଧୈର୍ଯ୍ୟ, ଟିକିଏ ସାହସ ସେତେବେଳେ ଦରକାର ହୋଇଥିଲା ।

ଏବେ ମୁଁ ମୋର ଜୀବନରେ ପୁଣି ଅମୃତ ସଞ୍ଚାର କରୁଛନ୍ତି ।

କିନ୍ତୁ ଗୋଟାଏ କଥା ସ୍ୱୀକାର କରିବି ? ମୁଁ ଗୋଟାଏ ନିର୍ବୁଦ୍ଧିତାର କାମ କରିଥିଲି ମୁଁ ମୋ ଡାକ୍ତରଙ୍କ କଥାର ଅବାଧ୍ୟ ହୋଇଥିଲି ; କିନ୍ତୁ ସେ ତାହା ଜାଣି ପାରି ନ ଥିଲେ । ଯାହା ହେଉ, ମୋର ଏତାଦୃଶ ଆଚରଣ ହେତୁ ଏବେଣି ଆଉ କୌଣସି ବିପଦର ଆଶଙ୍କା ନାହିଁ ।

ସେମାନେ ଝିଅକୁ ମୋ ପାଖକୁ ଆଣିଥିଲେ । କହିଲେ, ଏଯାକୁ ଚୁମ୍ବନ କର । ଝିଅ ଦାସୀର କୋଳରେ ଥିଲା ।

ଖୁବ୍ ନରମ କଣ୍ଠରେ ଝିଅ ଡାକିଲା, —'ମା' ! ସେତେବେଳେ ମୁଁ ଆଉ ରହିପାରିଲି ନାହିଁ । ମୋ ଆଖିରୁ ପଟିଟା ଛିଣ୍ଡାଇ ପକାଇଲି, —ଆଉ ଆନନ୍ଦରେ ଗଦଗଦ ହୋଇ କହି ପକାଇଲି, — 'ମୋର, ମୋର ଝିଅ ! ଆହା କି ସୁନ୍ଦର ! ଏବେ ଯେ ମୋର ଝିଅକୁ ଦେଖି ପାରୁଛି—ଦେଖି ପାରୁଛି ।'

ସେଥିକୁ ପୁଣି ମୋ ଆଖିରେ ପଟି ବାନ୍ଧି ଦେଲା ; କିନ୍ତୁ ସେହି ଅନ୍ଧକାର ଭିତରେ ମୁଁ ଏକ୍ଷଣି ଆଉ ଏକା ନାହିଁ । ଝିଅର ମୁଖଟି ମୋର ମନ ଭିତରେ ନାଚିଗଲା, ଆଉ ତତ୍‌କ୍ଷଣାତ୍ ସବୁ କିଛି ଯେମିତି ଆଲୋକିତ ହୋଇଗଲା ।

କାଲି ମାଆ ମୋତେ ଲୁଗା ପିନ୍ଧାଇ ଦେବାକୁ ଆସିଥିଲେ । ଅନେକ ବେଳ ଯାଏ ମୋର ପ୍ରସାଧନ ଚାଲିଲା । ମାଆ ମୋତେ ଖଣ୍ଡିଏ ଭଲ ରେଶମୀ ପୋଷାକ ଓ ଲେସ୍-ଦିଆ 'କଲର' ପିନ୍ଧାଇ ଦେଲେ, ଏବଂ ଆଧୁନିକ ଢଙ୍ଗରେ ମୋର କେଶ ବାନ୍ଧି ଦେଲେ । ମୋର ସାଜସଜା ଶେଷ ହୋଇଗଲା ଉତ୍ତାରୁ, ମାଆ ମୋତେ କହିଲେ,—'ତୋର ଆଖିର ପଟିଟା ଖୋଲି ପକା ।'

ମୁଁ ତତ୍‌କ୍ଷଣାତ୍ ପଟିଟା ଖୋଲି ପକାଇଲି । ଯଦିଓ ସେତେବେଳେ ଘର ଭିତରକୁ ଟିକିଏ ଗୋଧୂଳି ଆଲୁଅ ଆସୁଥିଲା, ତଥାପି ମୋର ମନେ ହେଲା, ଏମିତି ସୁନ୍ଦର ଜିନିଷ ମୁଁ ଆଜି କେବେ ଦେଖି ନାହିଁ । ତହୁଁ ମୁଁ ମୋର ମାଆଙ୍କୁ, ମୋର ବାବାଙ୍କୁ ଓ ମୋର କୁନି ଝିଅଟିକୁ ମୋ ଗୁଣ୍ଡରେ ଭିଡ଼ି ଧରିଲି ।

ବାବା ପଚାରିଲେ, 'ନିଜ ଛଡ଼ା ତୁ ଆଉ ସମସ୍ତଙ୍କୁ ଦେଖି ପାରୁଛୁ ତ ?'

ମୁଁ କହି ପକାଇଲି,—'କିନ୍ତୁ ସେ କାହାନ୍ତି ? ମୋର ସ୍ୱାମୀ କାହାନ୍ତି ?'

ମୋର ମାଆ ଜବାବ ଦେଲେ,—'ସେ ଲୁଚି ରହିଛନ୍ତି ।'

ସେତେବେଳେ ମୋର ମାନସ ପଟରେ ଭାସିଗଲା ତାଙ୍କର କୁତ୍ସିତ ଚେହେରା କଥା, ତାଙ୍କର ବେଶଭୂଷା କଥା, ତାଙ୍କର ଚନ୍ଦା ମୁଣ୍ଡ କଥା, ଆଉ ତାଙ୍କର ବସନ୍ତ ଦାଗରେ ପୂର୍ଣ୍ଣ ମୁଖର କଥା ।

ମୁଁ କହିଲି,—'ହଉପଛେ ଏକଥା, ଆସନ୍ତୁ ନା ସେ ମୋ ପାଖକୁ, ତାଙ୍କୁ ଡାକି ଦିଅ, ମୋ ଆଖିରେ ସେ ଯେ କନ୍ଦର୍ପ ଠାରୁ ବଳି ସୁନ୍ଦର ।'

ମାଆ ଜବାବ ଦେଲେ—'ତୋର ସ୍ୱାମୀ ପାଇଁ ଆମେ ଅପେକ୍ଷା କରିଛୁଁ । ତୁ ଯା ଭିତରେ ତୋର ନିଜର ମୁଖଟା ଦର୍ପଣରେ ଥରେ ଦେଖି ନେ । ତୋର ନିଜର ମୁଖ ଦେଖି ତୁ ନିଜେ ମୁଗ୍ଧ ହେବୁ, ଏମିତି ସୁନ୍ଦର ମୁଖ ତୋର ।'

ମୋ ମାଆଙ୍କ କଥା ଶୁଣି ମୁଁ ଦର୍ପଣ ପାଖକୁ ଗଲି । ମୋର ନିଜର ଟିକିଏ ଗର୍ବ ଥିଲା, କୌତୂହଳ ବି ଟିକିଏ ଥିଲା । ଯଦି ମୁଁ ସତରେ କୁତ୍ସିତ ହୋଇଥାଏ ? —ଯଦି ମୋର କୁତ୍ସିତ ଚେହେରାର କଥା ସମସ୍ତେ ମୋ ଠାରୁ ଲୁଚାଇ ରଖିଥାନ୍ତି ? —ତେଣୁ ମୁଁ ଧୀରେ ଧୀରେ ଦର୍ପଣ ପାଖକୁ ଗଲି ଏବଂ ଦର୍ପଣରେ ନିଜର ମୁଖ ଦେଖି ଆନନ୍ଦରେ ବିହ୍ୱଳ ହୋଇଗଲି । କିପରି ଚମତ୍କାର ଗଠନ, କେମିତି ଗୋଲାପୀ ରଙ୍ଗ, କେମିତି ଉଜ୍ଜ୍ୱଳ ଆଖି—ସତରେ ମୁଁ ରୂପସୀ ; କିନ୍ତୁ ଖୁବ୍ ଆସ୍ତେ ମୋର ଚେହେରାଟା ଦର୍ପଣରେ ଦେଖି ପାରିଲି । ଦର୍ପଣଟି ମଧ୍ୟ ଆନନ୍ଦରେ ଯେମିତି କମ୍ପିବାକୁ ଲାଗିଲା, ଏବଂ ଦର୍ପଣ ଭିତରେ ମୋର ପ୍ରତିବିମ୍ବଟା ଯେମିତି ଆନନ୍ଦରେ ନାଚିବାକୁ ଲାଗିଲା ।

ମୁଁ ଦର୍ପଣର ପଛ ଆଡ଼କୁ ଚାହିଁ ଦେଖିଲି, ଦର୍ପଣଟା କାହିଁକି କମ୍ପୁଛି । ତେଣୁ ସେ ଆଡ଼କୁ ଚାହିଁଲି ।

ପଛ ପଟରୁ ଜଣେ ସୁନ୍ଦର ଯୁବା ପୁରୁଷ ବାହାରି ଆସିଲେ,— ଖୁବ୍ ଲମ୍ବା ଚଉଡ଼ା ଶରୀର, ବଡ଼ ବଡ଼ କଳା ଆଖି, କୋଟରେ ସମ୍ମାନର ଚିହ୍ନ ସ୍ୱରୂପ ଗୋଟାଏ ଗୋଲାପ ଖୋସା ଯାଇଛି । ଜଣେ ଅପରିଚିତ ଯୁବକର ସାମନାରେ ଠିଆ ହୋଇଛି ଭାବି ମୁଁ ଲଜ୍ଜାରେ ସଢ଼ିଗଲି ।

ସେହି ଯୁବକଙ୍କ ଆଡ଼କୁ ଭ୍ରୂକ୍ଷେପ ନ କରି ମୋତେ ମୋର ମାଆ କହିଲେ,—'ଦେଖ୍ ତ ଥରେ, ତୁ କେଡ଼େ ସୁନ୍ଦର—ଠିକ୍ ଯେମିତି ଗୋଟାଏ ଧଳା ଗୋଲାପ ଫୁଲ ।'

ମୁଁ ଉଚ୍ଚ ସ୍ୱରରେ ଡାକିଲି,—'ମାଆ' ।

'ଦେଖ୍ ତ ଥରେ ତୋର ଏହି ଧଳା ହାତ ଦୁଇଟି,'—ଏହା କହି ସେ ମୋର ହାତର ଜାମାଟା କହୁଣୀ ପର୍ଯ୍ୟନ୍ତ ଟେକି ଦେଲେ ।

ମୁଁ କହିଲି,—'କିନ୍ତୁ ମାଆ, ଜଣେ ଅପରିଚିତ ଲୋକ ସାମନାରେ ତୁମେ ଏ କ'ଣ କରୁଛ ?'

'ଅପରିଚିତ ଲୋକ ?—ଏ ଯେ ଗୋଟିଏ ଦର୍ପଣ ।'

'ମୁଁ ତ ଦର୍ପଣର କଥା କହୁ ନାହିଁ । ଦର୍ପଣ ପଛରେ ଯେଉଁ ଯୁବା ପୁରୁଷ ଜଣକ ଥିଲେ ମୁଁ ତାଙ୍କର କଥା କହୁଛି ।'

ବାବା କହି ପକାଇଲେ,—'ଆରେ ବୋକା ! ତୋତେ ଆଉ ଏତେ ଲାଜ କରିବାକୁ ପଡ଼ିବ ନାହିଁ । ସେ ପରା ତୋର ସ୍ୱାମୀ !'

ମୁଁ ତତ୍‌କ୍ଷଣାତ୍ ଚିତ୍କାର କଲି,—'ଏଁ ! ଏ ଏଜ୍‌ମ୍ !' ଏହା କହି ମୁଁ ତାଙ୍କୁ ଚୁମ୍ବନ କରିବା ପାଇଁ ଧାଇଁଗଲି ।

ତା'ପରେ ମୁଁ ଆଉ କିଛି ପାଇଲି । ଆହା, ସେ କି ସୁନ୍ଦର ! ମୁଁ କି ସୁଖୀ ! ଯେତେବେଳେ ମୁଁ ଅନ୍ଧ ଥିଲି, ସେତେବେଳେ

ବିଶ୍ୱାସ କର ମୁଁ ତାଙ୍କୁ ଭଲ ପାଉଥିଲି । ଏକ୍ଷଣି ନୂତନ ପ୍ରେମରେ ମୋର ହୃଦୟ ଉଦ୍‌ବେଳିତ ହୋଇଛି—ତାଙ୍କର ମହତ୍ତ୍ୱରେ ମୁଁ ମୁଗ୍ଧ ହୋଇଛି । ମୋର ଅଭିଜ୍ଞତା ହେତୁ, ମୋତେ ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ ସେ ସମସ୍ତଙ୍କୁ କହିବାକୁ ହୁକୁମ ଦେଇଥିଲେ ଯେ, ସେ ନିଜେ ଦେଖିବାକୁ କୁତ୍ସିତ ।

ଏଜନ୍ ମୁଁ ମୋର ପାଦ ତଳେ ନତଜାନୁ ହୋଇ ବସିଲେ । ମାଆ ଆଖିରୁ ଲୁହ ପୋଛି ମୋତେ ନେଇ ତାଙ୍କ କୋଳରେ ବସାଇ ଦେଲେ ।

ଆନନ୍ଦର ଉଚ୍ଛ୍ୱାସରେ ମୋର ସ୍ୱାମୀ ମୋତେ କହିଲେ,—'ତୁମେ କି ସୁନ୍ଦର !'

ମୁଁ ତଳକୁ ମୁହଁ ପୋତି ଜବାବ ଦେଲି,—'ଏହା ତୁମର ଗୋଟାଏ ଗୃହ୍ଣ ବାଣୀ ।'

'ନା, ନା, ଯେତେବେଳେ କେବଳ ମୁଁ ତୁମର ଏକମାତ୍ର ଦର୍ପଣ ଥିଲି, ସେତେବେଳେ ସେହି କଥା ତ ମୁଁ ତୁମକୁ ବରାବର କହି ଆସିଛି । ଏକ୍ଷଣି ଗୃହିଁ ଦେଖ ! ଦେଖ ମୋ କଥା ସତ କି ନା ! ମୋର ଏହି ଯେ ସହଯୋଗୀ ସକର୍ମୀ—ମୁଖ ଦେଖିବାର ଦର୍ପଣ, ତାର ବି ଏହି ଏକା ମତ—ସେ ବି କହୁଛି, ମୁଁ ଯାହା କହୁଛି, ତାହା ହିଁ ଠିକ୍, ଖାଣ୍ଟି ସତ ।'

— ଲିଓ ଲା ପେ

# ଦ୍ୱନ୍ଦ୍ୱ ଯୁଦ୍ଧ

ସମାଜରେ ସମସ୍ତେ ତାଙ୍କୁ "ସୁଦର୍ଶନ ସିଗ୍‌ନୋଲସ" ବୋଲି ଡାକୁଥିଲେ । ସେ ନିଜକୁ ଭାଇକାଉଣ୍ଟ ଗନ୍‌ଠ୍ରାମ ଜୋସେଫ ଡ଼ି ସିଗ୍‌ନୋଲସ ବୋଲିଉଥିଲେ ।

ପିତୃମାତୃହୀନ ଓ ବିଶାଳ ସମ୍ପତ୍ତିର ମାଲିକ ହେତୁ, ସମସ୍ତଙ୍କ ନିକଟରେ ତାଙ୍କର ପ୍ରତିପତ୍ତି ଥିଲା । ତାଙ୍କର ଆକର୍ଷଣୀୟ ରୂପ ଥିଲା, ରସିକତାରେ ଯଥେଷ୍ଟ ପଟୁତା, ଭାବଭଙ୍ଗୀରେ ଏକ ନିଶ୍ଚିତ ସ୍ୱାଭାବିକ ନମ୍ରତା, ଆଭିଜାତ୍ୟ ଓ ଗର୍ବର ଆଭାସ ଏବଂ ନିଶଟି ବିଶାଳ ଓ ମନୋହର ଦେଖା ଯାଉଥିଲା—ନାରୀମାନେ ଏଥିରେ ବି ମୁଗ୍‌ଧ ହୋଇ ଯାଉଥିଲେ ।

ବୈଠକଖାନାରେ ଓ ବଲ୍ ନାଚ ସମୟରେ ସମସ୍ତେ ତାଙ୍କର ଅଭାବ ଅନୁଭବ କରୁଥିଲେ ଏବଂ ତାଙ୍କର ତେଜସ୍ୱୀ ଆକୃତି ସମସ୍ତଙ୍କ ପ୍ରାଣରେ ସେହି ସାହାସ୍ୟ ଈର୍ଷା ଉଦ୍ରେକ କରୁଥିଲା । ଲୋକେ ତାଙ୍କୁ କେତେକ ପ୍ରେମ ବ୍ୟାପାରରେ ସନ୍ଦେହ କରୁଥିଲେ । ଜଣେ ତରୁଣ ଭାବରେ, ତାହା ତାଙ୍କର ଯଥେଷ୍ଟ ସ୍ୱେଚ୍ଛା ବୃତ୍ତି ଶକ୍ତିର ପରିଚୟ ଦେଉଥିଲା । ସମ୍ପୂର୍ଣ୍ଣ ନୈତିକ ବାୟୁ

ମଣ୍ଡଳ ଭିତରେ, ସେ ସୁଖ ଓ ଶାନ୍ତିରେ ଦିନ ଯାପନ କରୁଥିଲେ । ତରବାରି ଚଳାଇବାରେ ଏବଂ ତା ଅପେକ୍ଷା ପିସ୍ତଲରେ ତାଙ୍କର ଦକ୍ଷତା କାହାରିକୁ ଅବିଦିତ ନ ଥିଲା ।

"ଯଦି ମୋତେ ଯୁଦ୍ଧ କରିବାକୁ ପଡ଼େ," ସେ କହୁଥିଲେ, "ତେବେ ମୁଁ ପିସ୍ତଲଟିଏ ପସନ୍ଦ କରିବି । ସେହି ଅସ୍ତ୍ରରେ ମୁଁ ନିଶ୍ଚୟ ମୋର ପ୍ରତିଦ୍ୱନ୍ଦୀଙ୍କୁ ନିହତ କରିବି ।"

ବର୍ତ୍ତମାନ, ଗୋଟିଏ ସନ୍ଧ୍ୟାରେ, ତାଙ୍କର ଦୁଇ ଜଣ ତରୁଣୀ ବାନ୍ଧବୀ ଓ ସେମାନଙ୍କ ସ୍ୱାମୀଙ୍କ ସହିତ, ସେ ରଙ୍ଗମଞ୍ଚକୁ ଯାଇଥିଲେ । ତାହା ସରିବା ପରେ ସେ ସେମାନଙ୍କୁ ନେଇ ଟରଟୋନିରେ ବରଫ ଖୁଆଇଲେ । ସେଠାରେ ସେମାନଙ୍କର ରହିବାର ପ୍ରାୟ ଦଶ ମିନିଟ ଭିତରେ, ପାଖ ଟେବୁଲରେ ବସିଥିବା ଜଣେ ଭଦ୍ରଲୋକ ତାଙ୍କ ଦଳର ଜଣେ ଭଦ୍ର ମହିଳାଙ୍କୁ ଏକ ଧ୍ୟାନରେ ନିରୀକ୍ଷଣ କରୁଥିବାର ସେ ଲକ୍ଷ୍ୟ କଲେ । ମହିଳାଟି ବ୍ୟସ୍ତ ଓ ବିରକ୍ତ ବୋଧ କରି, ଆଖି ତଳକୁ ଆଣିଲେ । ଶେଷରେ, ସେ ତାଙ୍କ ସ୍ୱାମୀଙ୍କୁ କହିଲେ :

"ସେ ଲୋକଟି ମୋତେ ଏକ ଦୃଷ୍ଟିରେ ଚାହିଁ ରହିଛି । ମୁଁ ତ ତାକୁ ଜାଣେ ନାହିଁ, ତୁମେ ଜାଣ ନା ?"

ସ୍ୱାମୀ କିଛି ଦେଖି ନ ଥିଲା, ଆଖି ଟେକିଲା, କିନ୍ତୁ ବ୍ୟକ୍ତ କଲା :

"ନା, ଆଦୌ ନୁହେ ।"

ତରୁଣୀଟି, ଅଧେ ହସି, ଅଧେ ରାଗି, ଜବାବ ଦେଲା "ଏହା ବଡ଼ ବିରକ୍ତ କରେ; ସେ ଲୋକଟି ମୋ ବରଫ ନଷ୍ଟ କରି ଦେଉଛି ।"

ସ୍ୱାମୀ କାନ୍ଧ ଉଠାଇ, ଜବାବ ଦେଲା

"ସଃ, ତା ଆଡ଼କୁ ଆଦୌ ଅନାଅ ନାହିଁ । ଯେତେ ଅଭଦ୍ର ଲୋକଙ୍କୁ ଆମେ ଭେଟୁଁ ସମସ୍ତଙ୍କ ପ୍ରତି ଯଦି ଆମେ ଲକ୍ଷ୍ୟ ଦେବା, ତାହାହେଲେ ଏହାର ସୀମା ରହିବ ନାହିଁ ।"

କିନ୍ତୁ ଖ୍ରଇକାଉଣ୍ଟ ଖାଁର ଦର୍ପରେ ଉଠିଲେ । ସେ ଦେଇଥିବା ବରଫ ଜଣେ ଅପରିଚିତ ବ୍ୟକ୍ତିଙ୍କୁ ନଷ୍ଟ କରିବାକୁ ଦେଇ ପାରିଲେ ନାହିଁ । ଏ ଅପମାନ ତାଙ୍କୁ ହିଁ ଦିଆ ଯାଉଥିଲା, ତାଙ୍କର ଯୋଗୁଁ ଓ ତାଙ୍କର ସହିତ ତାଙ୍କ ବନ୍ଧୁମାନେ ଏହି ରେସ୍ତୋରାଁକୁ ଆସିଥିଲେ । ତେଣୁ ଏ ଘଟଣାର ପ୍ରତିକାର କେବଳ ତାଙ୍କର ହାତରେ । ସେ ଲୋକଟି ଆଡ଼କୁ ଆଗେଇ ଗଲେ ଏବଂ ତାକୁ କହିଲେ :

"ମହାଶୟ, ଏହି ମହିଳାମାନଙ୍କ ପ୍ରତି ଆପଣଙ୍କର ଏ ଧରଣର ଗୃହାଣୀଟା ସହ୍ୟ କରାଯାଇ ନ ପାରେ । ମୁଁ ଅନୁରୋଧ କରୁଛି, ଆପଣ ସେପରି କରନ୍ତୁ ନାହିଁ ।"

ଅନ୍ୟ ଜଣକ ଉତ୍ତର ଦେଲା : "ତେଣୁ ଶାନ୍ତ ରକ୍ଷା କରିବା ପାଇଁ ଆପଣ ମୋତେ ଆଦେଶ ଦେଉଛନ୍ତି, ନୁହେଁ ?"

ଦାନ୍ତ କାମୁଡ଼ି, ଖ୍ରଇକାଉଣ୍ଟ ଜବାବ ଦେଲେ : "ସାବଧାନ ମହାଶୟ, ନଚେତ୍ ନିଜକୁ ଭୁଲିଯିବା ପାଇଁ ଆପଣ ମୋତେ ବାଧ କରିବେ ।"

ଗୋଟିଏ ମାତ୍ର ଅଶ୍ଳୀଳ ସ୍ୱରରେ ଉଦ୍ରଲୋକ ଉତ୍ତର ଦେଲେ, ରେସ୍ତୋରାଁଟା ସେଥିରେ ପ୍ରତିଧ୍ୱନିତ ହୋଇ ଉଠିଲା, ଏବଂ ପ୍ରତ୍ୟେକ ବ୍ୟକ୍ତି ଚମକି ପଡ଼ି ଗୁହାଁଲେ । ଯେଉଁମାନେ ଆଗରେ ବସିଥିଲେ ବୁଲି ପଡ଼ିଲେ ; ଅନ୍ୟମାନେ ମୁଣ୍ଡ ଟେକିଲେ ; ତିନି ଜଣ ଗୃହର ଗୋଇଠିରେ ବୁଲି ପଡ଼ିଲେ ; କାଉଣ୍ଟର ପାଖରେ ଦୁଇ ଜଣ ସ୍ତ୍ରୀ ଲୋକ ଆଗକୁ ଝୁଙ୍କି ପଡ଼ିଲେ, ତାପରେ ଘଟଣାକୁ ଏକବାରେ ପଛ କରିଦେଲେ, ଯେପରିକି ସେମାନେ ଦୁଇଟି ସ୍ୱୟଂଚାଳିତ ଯନ୍ତ୍ର ପରି କାମ କରି ଯାଉଥିଲେ ।

ସବୁ ନୀରବ ହୋଇଗଲା । ତାପରେ, ହଠାତ୍, ଗୋଟିଏ ତୀବ୍ର ଶବ୍ଦ ପବନକୁ କମ୍ପାଇ ଦେଲା । ଭାଇକାଉଣ୍ଟ ତାଙ୍କ ପ୍ରତିଦ୍ୱନ୍ଦ୍ୱୀକୁ ଆଘାତ କଲେ । ମଧ୍ୟସ୍ଥ ହେବା ପାଇଁ ସମସ୍ତେ ଉଠି ପଡ଼ିଲେ । ଠିକଣା ଉଦଳ ବଦଳ ହେଲା ।

ଘରକୁ ଫେରିଯାଇ, ଭାଇକାଉଣ୍ଟ କିଛି ସମୟ ନିଜ କୋଠରୀରେ ବଡ଼ ବଡ଼ ପାଦ ପକାଇ ଏ ମୁଣ୍ଡରୁ ସେ ମୁଣ୍ଡ ଘୂରି ବୁଲିଲେ । ସେ ଏତେ ଉତ୍ତେଜିତ ହୋଇ ପଡ଼ିଥିଲେ ଯେ ତାଙ୍କ ମଥା କିଛି ଧରିପାରୁ ନ ଥିଲା । ଗୋଟିଏ ମାତ୍ର ଚିନ୍ତା ତାଙ୍କ ମୁଣ୍ଡରେ ଘୂରି ବୁଲୁଥିଲା ; "ଦ୍ୱନ୍ଦ୍ୱ ଯୁଦ୍ଧ"; ଏବଂ ତଥାପି ଏହି ଚିନ୍ତା ସେ ପର୍ଯ୍ୟନ୍ତ ତାଙ୍କ ମନରେ କୌଣସି ଉତ୍ତେଜନା ସୃଷ୍ଟି କରିପାରି ନ ଥିଲା । ଯାହା କରିବା ଉଚିତ ସେ କରିଥିଲେ ; ଯେତିକି ଉଚିତ ସେ ନିଜେ ତାହା ଦେଖାଇଥିଲେ । ଲୋକେ ଏ ବିଷୟରେ କଥାବାର୍ତ୍ତା ହେବେ, ପସନ୍ଦ କରିବେ, ଏବଂ ତାଙ୍କୁ ସାବାସି ଜଣାଇବେ । ଭାବନାରେ ବିଚଳିତ ହୋଇ ପଡ଼ିଲା ପରି, ଉଚ୍ଚ ସ୍ୱରରେ, ସେ କହି ଉଠିଲେ

"ସେ ଲୋକଟା ଣ ଭଳି ପଶୁ !"

ତାପରେ ସେ ବସି ପଡ଼ିଲେ ଏବଂ ଭାବିବାକୁ ଲାଗିଲେ । ସକାଳେ କେତେ ଜଣ ସହକାରୀ ଖୋଜି ବାହାର କରିବାକୁ ପଡ଼ିବ । କାହାକୁ ସେ ବାଛିବେ ? ନିଜର ପରିଚିତ ଅତି ପ୍ରସିଦ୍ଧ ଓ ଉଚ୍ଚପଦସ୍ଥ ଲୋକମାନଙ୍କୁ ସେ ଭାବିଗଲେ । ଶେଷରେ ସେ ଦୁଇ ଜଣଙ୍କୁ ପସନ୍ଦ କଲେ । ବିଶିଷ୍ଟ ଜମିଦାର ମାରକୁଇସ ଡି ଲା ଟୁର-ନୋଏର ଓ ବିଶେଷ ବଳଶାଳୀ ସୈନିକ କର୍ଣ୍ଣେଲ ବୋରଡ଼ିନ । ସେମାନଙ୍କର ନାମ ପତ୍ର ପତ୍ରିକାରେ ବାହାରୁଥିଲା । ସେ ତୃଷା ଅନୁଭବ କଲେ ଏବଂ ଗୋଟିକ ପରେ ଗୋଟିଏ, ତିନି ଗ୍ଲାସ ପାଣି ପିଇଲେ ; ତାପରେ

ସେ ପୁଣି ଚାଲିବାକୁ ଲାଗିଲେ । ସେ ନିଜକୁ ଶକ୍ତି ସମ୍ପନ୍ନ ବୋଧ କଲେ । ସବୁ ବିଷୟରେ ସେ ନିଜକୁ କ୍ରୋଧାନ୍ୱିତ ଓ ଅବିଚଳିତ ଦେଖାଇଲେ, କଠୋର ଓ ଭୀଷଣ ସର୍ତ୍ତ ରଖିଲେ, ଏବଂ ଏକ ଭୟଙ୍କର, ଅତି ଭୟଙ୍କର, ଦ୍ୱନ୍ଦ୍ୱ ଯୁଦ୍ଧ ଦାବୀ କଲେ, ଯାହା ଦ୍ୱାରା ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ନିଶ୍ଚୟ ହଟିଯିବ ଏବଂ କ୍ଷମା ପ୍ରାର୍ଥନା କରିବ ।

ସେ ପକେଟରୁ ଠିକଣାଟି କାଢ଼ି ନେଲେ ଏବଂ ଟେବୁଲ ଉପରେ ପକାଇ ଦେଲେ ଏବଂ ରେସ୍ତୋରାଁରେ, ଓ ଫେରି ଆସି ନିଜ ଘରେ, ଗ୍ୟାସ ଆଲୁଅରେ, ଆଉ ଥରେ, ତା ଉପରେ ଆଖି ବୁଲାଇ ନେଲା ପରେ, ପୁଣି ସେ ତାହା ପାଠ କଲେ: "ଜର୍ଜ ଲାମିଲ, ୫୧ ମନ୍‌ସି ଷ୍ଟ୍ରୀଟ ।" କେବଳ ଏତିକି ମାତ୍ର ।

ଏତେ ରହସ୍ୟପୂର୍ଣ୍ଣ ମନେ ହେଉଥିବା ଏହି ସମବେତ ଅକ୍ଷରଗୁଡ଼ିକୁ ସେ ପରୀକ୍ଷା କରିବାକୁ ଲାଗିଲେ, ତାଙ୍କର ବୁଦ୍ଧି ଭ୍ରମ ହୋଇ ଯାଉଥିଲା ଜର୍ଜ ଲାମିଲ ? କିଏ ଏ ଲୋକ ? ସେ କଣ କଲା ? ସେହି ସ୍ତ୍ରୀ ଲୋକଟିକୁ ସେ କାହିଁକି ଏପରି ଭାବରେ ଅନାଇଲା ? ଜଣେ ଅଜ୍ଞାତ ଓ ଅପରିଚିତ, ଗୋଟିଏ ଧକ୍କାରେ, ଏପରି ଭାବରେ ତାଙ୍କ ଜୀବନରେ ବ୍ୟାଘାତ ସୃଷ୍ଟି କରିବା କଣ ଘୃଣାଜନକ ନୁହେଁ କି; କାରଣ ଭଲ ଲାଗିଲା ବୋଲି କଣ ସେ ସ୍ତ୍ରୀ ଲୋକଟିକୁ ଅଭଦ୍ର ଭାବରେ ଚାହିଁ ରହିବ ? ଏବଂ ଭାଇକାଉଣ୍ଟ ପୁଣି, ବଡ଼ ପାଟିରେ, ଉଚ୍ଚାରଣ କଲେ :

"କି ସୟତାନ ।"

ତାପରେ ଠିକଣା କାଗଜଟି ଉପରେ ଦୃଷ୍ଟି ନିବଦ୍ଧ ରଖି, ଠିଆ ହୋଇ, ସେ ସ୍ପନ୍ଦନହୀନ ହୋଇ ରହିଲେ । ଏହି କାଗଜ ଖଣ୍ଡିକ ଉପରେ ତାଙ୍କ ଭିତରେ ଏକ ପ୍ରକାର କ୍ରୋଧ ଜାଗି ଉଠିଲା, ଏକ ଘୃଣିତ କ୍ରୋଧ ଏକ ଅଦ୍ଭୁତ ଈର୍ଷାପ୍ରବଣତା ସହିତ

ମିଶିଥିଲା । ଏହା ସମୁଦାୟ ଗଳ୍ପଟି, କେବଳ ବୋକାମୀ ! ହାତ ପାଖରେ ଥିବା ଗୋଟିଏ କଲମ ତରାଶ ଛୁରୀ ସେ ଉଠାଇ ନେଲେ, ଏବଂ କାଗଜଟିରେ ଯେଉଁଠି ନାମ ମୁଦ୍ରିତ ହୋଇଥିଲା ତା ମଝିରେ ଫୋଡ଼ି ଦେଲେ, ଯେପରିକି ସେ କାହାରିକୁ ଆଘାତ କରୁଥିଲେ ।

ସୁତରାଂ ସେ ନିଶ୍ଚୟ ଯୁଦ୍ଧ କରିବେ ! ତରବାରୀ କି ପିସ୍ତଲ ସେ ବାଛିବେ, କାରଣ ସେ ନିଜକୁ ଅପମାନିତ ମନେ କରୁଥିଲେ । ତରବାରୀରେ ତାଙ୍କର ବିପଦର ଆଶଙ୍କା କମ ; କିନ୍ତୁ ପିସ୍ତଲରେ, ତାଙ୍କର ପ୍ରତିଦ୍ୱନ୍ଦ୍ୱୀର ପଛଘୁଞ୍ଚା ଦେବାର ସମ୍ଭାବନା ଥିଲା । ତରବାରୀରେ ଦ୍ୱନ୍ଦ୍ୱ ଯୁଦ୍ଧ କ୍ୱଚିତ ସାଙ୍ଘାତିକ ଜଣାଯାଏ, ପରସ୍ପର ଅତି ନିକଟକୁ ଯାଇ ଗଭୀର ଭାବରେ ଆଘାତ କରିବା ପାଇଁ ପ୍ରତିଦ୍ୱନ୍ଦ୍ୱୀମାନଙ୍କର ବିବେଚନାରେ ବାଧା ପ୍ରଦାନକରେ ; ପିସ୍ତଲରେ ତାଙ୍କ ଜୀବନର ଭୀଷଣ ଆଶଙ୍କା ରହିଥିଲା ; କିନ୍ତୁ ପରିସ୍ଥିତିର ସମସ୍ତ ସମ୍ମାନରେ ଓ ବିନା ଯୁଦ୍ଧରେ ସେ ମଧ୍ୟ ଏହି ବିଷୟଟିର ସମ୍ମୁଖୀନ ହୋଇ ପାରିବେ । ସେ ପାଟି କରି କହିଲେ :

"ଦମ୍ଭ ଧରିବା ଆବଶ୍ୟକ । ତାହାର ଭୟ ଜାତ ହେବ ।"

ନିଜ ସ୍ୱରର ଶବ୍ଦ ତାଙ୍କୁ ଥରାଇ ଦେଲା ଏବଂ ସେ ନିଜର ଚାରିଆଡ଼କୁ ଚାହିଁବାକୁ ଲାଗିଲେ । ସେ ଅତି ଦୁର୍ବଳ ବୋଧ କଲେ । ତଥାପି ସେ ଆଉ ଗ୍ଲାସେ ପାଣି ପିଇଲେ, ତାପରେ ବିଶ୍ରାମ ନେବା ପାଇଁ, ସେ ପୋଷାକ ପତ୍ର କାଢ଼ି ପକାଇବାକୁ ଲାଗିଲେ ।

ପ୍ରସ୍ତୁତ ହୋଇ ଯାଇ, ସେ ଆଲୁଅ ଲିଭାଇ ଦେଲେ ଏବଂ ଆଖି ବୁଜି ଦେଲେ । ତାପରେ ସେ ଭାବିଲେ :

"କାଲି ଦିନ ସାରା ମୋ ବିଷୟରେ ମୋତେ ବ୍ୟସ୍ତ ରହିବାକୁ ହେବ । ଶାନ୍ତ ହେବା ପାଇଁ, ପ୍ରଥମେ ମୋତେ ନିଶ୍ଚୟ ଶୋଇବାକୁ ହେବ ।"

ବିଛଣାରେ ତାଙ୍କୁ ଖୁବ ଗରମ ହେଉଥିଲା, କିନ୍ତୁ ସେ ଶୋଇ ପାରିଲେ ନାହିଁ । ସେ ଏପଟ ସେପଟ ହେଲେ, ପିଠି ଉପରେ ପାଞ୍ଚ ମିନିଟ ପଡ଼ି ରହିଲେ, ତାପରେ ବାମ କଡ଼ ମାଡ଼ି ଶୋଇଲେ; ତାପରେ ଡାହାଣ କଡ଼କୁ ଗଡ଼ିଗଲେ ।

ତଥାପି ତାଙ୍କୁ ଶୋଷ ଲାଗୁଥିଲା । ସେ ଉଠି ପଡ଼ିଲେ ଏବଂ ପାଣି ପିଇଲେ । ତାପରେ ଏକ ପ୍ରକାର ଅସ୍ଥିରତା ତାଙ୍କୁ ଅଧିକାର କଲା :

"ଏହା କଣ ହୋଇପାରେ ଯେ ମୋତେ ଭୟ ଲାଗୁଛି ?" ସେ କହିଲେ ।

ତାଙ୍କ କୋଠରୀ ଗୃହ ପଟେ ହେଉଥିବା ମାମୁଲି ଗୋଲମାଲରେ ତାଙ୍କ ଗ୍ରନ୍ଥି କାହିଁକି ଅତି ନିର୍ବୋଧ ଭାବରେ ଉତ୍ପନ୍ନ ହେଉଛି ?—ଯେତେବେଳେ ଘଣ୍ଟାର ଠିଂ ଠିଂ ଶବ୍ଦ ହେଉଥିଲା ଏବଂ ସ୍ପ୍ରିଙ୍ଗ ଘୂରିଯିବା ବେଳେ ସାମାନ୍ୟ ଘର୍ ଘର୍ ଶବ୍ଦ କରୁଥିଲା ? ଏବଂ ସେ ଏତେ ଦୂର ଅସୁସ୍ଥ ଅନୁଭବ କରୁଥିଲେ ଯେ, ଘଣ୍ଟା ଶବ୍ଦ ପରେ କେତେ ସେକେଣ୍ଡ ମୁହଁ ମେଲି କରି ତାଙ୍କୁ ନିଶ୍ୱାସ ନେବାକୁ ପଡ଼ୁଥିଲା । ପରିସ୍ଥିତିର ସମ୍ଭାବନା ପାଇଁ ସେ ନିଜ ସହିତ ବୁଝାମଣା କରିବାକୁ ଲାଗିଲେ ।

"ମୁଁ କାହାକୁ ଭୟ କରୁଛି ?"

ନା, ଶେଷ ପର୍ଯ୍ୟନ୍ତ ଅନୁସରଣ କରିବା ପାଇଁ ସେ ଯେତେବେଳେ ସିଦ୍ଧାନ୍ତ କରି ସାରିଛନ୍ତି ଏବଂ ବିନା ଗ୍ଲାନିରେ ଲଢ଼ିବା ପାଇଁ ସେ ଯେତେବେଳେ ସଂକଳ୍ପ କରି ସାରିଛନ୍ତି, ତାଙ୍କର କିଛିକୁ ଭୟ କରିବା ଉଚିତ ନୁହେଁ । କିନ୍ତୁ ସେ ନିଜେ ଏତେ ଅସୁସ୍ଥ ଅନୁଭବ କରୁଥିଲେ ଯେ ସେ ନିଜକୁ ପଚାରିଲେ :

"ଏହା କଣ ହୋଇପାରେ ଯେ ନିକଟରେ ଥିବା ସତ୍ତ୍ୱେ ମୁଁ ଭୟ କରୁଛି !"

ଏବଂ ଏହି ସନ୍ଦେହ ତାଙ୍କୁ ଆକ୍ରମଣ କଲା । ଏହି ଉତ୍କଣ୍ଠା, ଏହି ଆଶଙ୍କା ; ତାଙ୍କ ଇଚ୍ଛା ଅପେକ୍ଷା ଏକ ଅଦମ୍ୟ ପ୍ରବଳ କ୍ଷମତାଶାଳୀ ଶକ୍ତି ଯଦି ତାଙ୍କୁ ଜୟ କରିଥାଏ, ତେବେ ତାଙ୍କର କଣ ହେବ ? ହଁ, କଣ ଘଟିବ ? ସେଠାକୁ ଯିବାକୁ ଇଚ୍ଛା କଲେ, ସେ ନିଶ୍ଚୟ ମାଟି ଉପରେ ଗୁଳିଯାଇ ପାରିବେ । କିନ୍ତୁ ଯଦି ସେ ଥରନ୍ତି ? ଏବଂ ଯଦି ତାଙ୍କର ସଂଜ୍ଞା ଲୋପ ପାଏ ? ଏବଂ ସେ ତାଙ୍କର ସ୍ଥିତି, ତାଙ୍କର ଖ୍ୟାତି, ତାଙ୍କର ନାମ ବିଷୟ ଭାବିଲେ ।

ଏବଂ ଉଠିପଡ଼ି ଦର୍ପଣରେ ନିଜକୁ ଦେଖିନେବା ପାଇଁ ଏକ ଐକିକ ଆକାଂକ୍ଷା ତାଙ୍କୁ ଅଧିକାର କଲା । ପୁଣି ସେ ତାଙ୍କର ବତି ଲଗାଇଲେ । ମସୃଣ ଦର୍ପଣରେ ନିଜର ବଦନ ପ୍ରତିଫଳିତ ହେବାର ଦେଖିବା ମାତ୍ରେ, ସେ ନିଜକୁ ପ୍ରାୟ ଚିହ୍ନି ପାରିଲେ ନାହିଁ ଏବଂ ପୂର୍ବରୁ କେବେ ହେଲେ ଦେଖି ନ ଥିବା ଭଳି ସେ ବୋଧ କଲେ । ତାଙ୍କ ଆଖିଗୁଡ଼ିକ ବିଶାଳ ଦେଖାଗଲା ; ସେ ମଳିନ ହୋଇ ଯାଇଥିଲେ ନିଶ୍ଚୟ । ସେ ମଳିନ, ଅତି ମଳିନ ପଡ଼ିଗଲେ ।

ସେ ଦର୍ପଣ ଆଗରେ ଠିଆ ହୋଇ ରହିଲେ । ତାଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରିବା ପରି ସେ ନିଜର ଜିଭ ବାହାର କଲେ ଏବଂ ହଠାତ୍ ବନ୍ଧୁକର ଗୁଳି ପରି ଏହି ଚିନ୍ତା ତାଙ୍କ ମଥାରେ ପ୍ରବେଶ କଲା ।

"ପହରି ଦିନ ଏହି ସମୟରେ, ମୁଁ ବୋଧହୁଏ ମରି ଯାଇଥିବି ।"

ଏବଂ ତାଙ୍କ ହୃଦପ୍ଣ୍ଡ ଦ୍ରୁତ ଭାବରେ ଆଘାତ କରିବାକୁ ଲାଗିଲା ।

"ପନ୍ଦର ଦିନ ଏହି ସମୟ୍ରେ, ମୁଁ ବୋଧହୁଏ ମରି ଯାଇଥିବି । ମୋ ସାମନାରେ ଏହି ଯେଉଁ ବ୍ୟକ୍ତିଟି ଠିଆ ହୋଇଛି, ଯେଉଁ ବ୍ୟକ୍ତିକୁ ଏହି ଦର୍ପଣରେ ମୁଁ ବହୁ ବାର ଦେଖିଛି, ଆଉ ଜୀଇଁ ରହି ନ ଥିବ । ଏହା କପରି ହେବ ! ମୁଁ ଏଠାରେ ଅଛି, ନିଜକୁ ଦେଖୁଛି, ଜାଣୁଛି ବୋଲି ମୁଁ ଅନୁଭବ କରୁଛି ଏବଂ ଚବିଶ ଘଣ୍ଟା ଭିତରେ ସେହି ଖଟ ଉପରେ ମୋତେ ଶୁଆଇ ଦିଆଯିବ, ମୃତ, ମୁଦ୍ରିତ ଚକ୍ଷୁ, ଶୀତଳ, ଅଚେତନ, ପରିତ୍ୟକ୍ତ ।"

ସେ ବିଛଣା ଆଡ଼କୁ ଅନାଇଲେ ଏବଂ ଯେଉଁ ପୋଷାକ ପିନ୍ଧି ବାହାରି ଯାଇଥିଲେ ସେହି ପୋଷାକ ପିନ୍ଧି ନିଜେ ଚିତ୍ ହୋଇ ଶୋଇ ଥିବାର ସେ ପରିଷ୍କାର ଦେଖି ପାରିଲେ । ତାଙ୍କ ବଦନ ମଣ୍ଡଳରେ ମୃତ୍ୟୁର ରେଖା ପଡ଼ି ଯାଇଥିଲା ଏବଂ ହାତ ଏତେ ଶକ୍ତ ହୋଇ ଯାଇଥିଲା ଯେ ତାହା ଆଉ ଯେମିତି ହଲଚଲ ହେବ ନାହିଁ ।

ତା ପରେ ତାଙ୍କ ବିଛଣାର ଭୟ ତାଙ୍କୁ ମାଡ଼ି ବସିଲା ଏବଂ ତାହା ଆଉ ନ ଦେଖିବା ପାଇଁ ସେ ଧୂମପାନ କୋଠରୀକୁ ଚାଲି-ଗଲେ । ଯନ୍ତ୍ର ଚାଳିତ ପରି ସେ ଗୋଟିଏ ସିଗାରେଟ ବାହାର କଲେ, ନିଆଁ ଧରାଇଲେ ଏବଂ ଟହଲ ମାରିବାକୁ ଲାଗିଲେ । ତାଙ୍କୁ ଶୀତ ଲାଗିଲା । ଚାକରକୁ ଉଠାଇବା ପାଇଁ ସେ ଘଣ୍ଟି ପାଖକୁ ଚାଲିଗଲେ ; କିନ୍ତୁ ଦଉଡ଼ି ଉପରେ ହାତ ଦେଇ ସେ ରହିଗଲେ ।

"ଏହି ଲୋକଟି ହଠାତ୍ ଜାଣି ପାରିବ ଯେ ମୁଁ ଭୟ ପାଇଛି ।"

ସେ ଘଣ୍ଟି ବଜାଇଲେ ନାହିଁ, କିନ୍ତୁ ନିଆଁ ଲଗାଇଲେ । ଯେ କୌଣସି ପଦାର୍ଥ ସ୍ପର୍ଶ କଲେ ଦୁର୍ବଳ କମ୍ପନ ହେତୁ ତାଙ୍କ

ହାତ ଟିକିଏ ଥରି ଯାଉଥିଲା । ତାଙ୍କ ମନ ଅସ୍ଥିର ହୋଇଗଲା; ଯନ୍ତ୍ରଣା ହେତୁ ତାଙ୍କ ଚନ୍ଦ୍ରାଗୁଡ଼ିକ ଉଦ୍ଧ୍ୱାନ୍ତ, ଦ୍ରୁତ, ବିମର୍ଷ ହୋଇ ପଡ଼ିଲେ, ମାତାଲ ହେଲା ଭଳି ଏକ ଉନ୍ମତ୍ତତା ତାଙ୍କ ମନକୁ ଗ୍ରାସ କରି ପକାଇଲା ଏବଂ ସେ ବାରମ୍ବାର ପଚାରିଲେ ।

"ମୁଁ କ'ଣ କରିବାକୁ ଯାଉଛି ? ମୋର ବା କଣ ହେବାକୁ ଯାଉଛି ?"

ତାଙ୍କର ସାରା ଶରୀର ଆନ୍ଦୋଳିତ ହେଉଥିଲା, ତା ପରେ ଥରି ଉଠିଲା ଏବଂ କମ୍ପିଲା ; ସେ ଉଠିଲେ ଏବଂ ପରଦା ଆଡ଼େଇ, ଝରକା ପାଖକୁ ଗଲେ ।

ସକାଳ ହୋଇ ଗଲଣି, ଖରା ଦିନ । ଗୋଲାପୀ ରଙ୍ଗିଆ ଆକାଶ ସହରର କାନ୍ଥ ଓ ଗୃହ ଗୋଲାପୀ କରିଦେଲା । ଉଦୀୟମାନ ସୂର୍ଯ୍ୟର ଆଶ୍ଳେଷ ପରି, ଆଲୋକର ଏକ ବିରାଟ ଉତ୍ସ ଖେଳିଗଲା, ଜାଗ୍ରତ ପୃଥିବୀକୁ ଢ଼ାଙ୍କି ପକାଇଲା ଏବଂ ଏହି ଆଲୋକରେ, ଏକ ଉଜ୍ଜ୍ୱଳ, କ୍ଷିପ୍ର, ନୃଶଂସ ଆଶା ଭାଇକାଉଣ୍ଟଙ୍କର ହୃଦୟ ଆକ୍ରମଣ କଲା । କିନ୍ତୁ ସ୍ଥିର ହେବା ପୂର୍ବରୁ, ତାଙ୍କର ସାକ୍ଷୀମାନେ ଜର୍ଜ ଲାମିଲଙ୍କୁ ଦେଖିବା ପୂର୍ବରୁ, ଏପରି କି ସେ ଦ୍ୱନ୍ଦ୍ୱ ଯୁଦ୍ଧ କରିବାକୁ ଯାଉଛନ୍ତି କି ନାହିଁ ଜାଣିବା ପୂର୍ବରୁ, ଭୟରେ ନିଜକୁ ଏପରି ଭାଙ୍ଗି ପଡ଼ିବାକୁ ଦେବା ତାଙ୍କର ଭାରି ବୋକାମି ଥିଲା ।

ସେ ରୂପ ପ୍ରସାଧନ କଲେ, ପୋଷାକ ପରିଧାନ କଲେ ଏବଂ ଦ୍ରୁତ ପଦକ୍ଷେପରେ ବାହାରିଗଲେ ।

ଚାଲିଲା ବେଳେ ସେ ବାରମ୍ବାର ଉଚ୍ଚାରଣ କଲେ ।

"ମୋର ବର୍ତ୍ତମାନ ସଚେତନ ରହିବା ଆବଶ୍ୟକ, ଖୁବ୍ ସଚେତନ । ମୁଁ ଅବଶ୍ୟ ପ୍ରମାଣ କରିବି ଯେ, ମୁଁ ଭୀତ ନୁହେଁ ।"

ତାଙ୍କର ସାକ୍ଷୀମାନେ, ମାରକୁଇସ ଓ କଲୋନେଲ, ତାଙ୍କ

ଅଧୀନରେ ରହିଲେ ଏବଂ ତାଙ୍କ ସହିତ ଫୁର୍ତ୍ତିରେ କରମର୍ଦ୍ଦନ କରି ସର୍ତ୍ତସବୁ ଆଲୋଚନା କଲେ । କର୍ଣ୍ଣେଲ ପଚାରିଲେ

"ତୁମେ ଜଣ ଏହା ଠିକ ଯେ ସାଙ୍ଘାତିକ ଦ୍ୱନ୍ଦ୍ୱ ଯୁଦ୍ଧ ହେବାକୁ ଯାଉଛ ?"

ଭାଇକାଉଣ୍ଟ ଉତ୍ତର ଦେଲେ, "ଖୁବ୍ ସାଙ୍ଘାତିକ ।"

ମାରକୁଇସ ପୁଣି ପଚାରିଲେ, "ତୁମେ ଜଣ ପିସ୍ତଲ ବ୍ୟବହାର କରିବ ?"

"ହଁ ।"

"ଆମେ ଆଉସବୁ ଠିକ୍ କରିଦେବୁ । ତୁମେ ନିଶ୍ଚିନ୍ତ ରୁହ ।"

ଭାଇକାଉଣ୍ଟ ଶୁଖିଲା, ଭଙ୍ଗା କଣ୍ଠରେ ପ୍ରକାଶ କଲେ :

"କୋଡ଼ିଏ ପାଦ ଦୂରରୁ ଏବଂ ବାହୁ ତଳକୁ କରିବା ପରିବର୍ତ୍ତେ ଉପରକୁ ଟେକା ହେବ । ଜଣେ ଗୁରୁତର ଭାବରେ ଆଘାତ ନ ପାଇବା ଯାଏ ଗୁଳି ଚାଲିବ ।"

ପରିତୃପ୍ତ ସ୍ୱରରେ, କର୍ଣ୍ଣେଲ ବ୍ୟକ୍ତ କଲେ :

"ଏସବୁ ତ ଚମତ୍କାର ସର୍ତ୍ତ । ତୁମେ ଉତ୍ତମ ଗୁଳି ଚାଳନା କର, ସବୁ ଆଶା ତୁମ ସପକ୍ଷରେ ରହିବ ।"

ସେମାନେ ବିଦାୟ ନେଲେ । ସେମାନଙ୍କୁ ଅପେକ୍ଷା କରିବା ପାଇଁ ଭାଇକାଉଣ୍ଟ ଘରକୁ ଫେରି ଆସିଲେ । ତାଙ୍କର ଉତ୍ତେଜନା ମୁହୂର୍ତ୍ତିକ ପାଇଁ କମି ଯାଇଥିଲା, ବର୍ତ୍ତମାନ ବେଳକୁ ବେଳ ବଢ଼ିଲା । ତାଙ୍କର ହାତ, ଗୋଡ଼ ଓ ଛାତିରେ ସେ ଏକ ପ୍ରକାର କମ୍ପନ, ସ୍ନାୟବୀ ଆନ୍ଦୋଳନ ଅନୁଭବ କଲେ, ସେ ସ୍ଥିର ହୋଇ ବସି କିମ୍ବା ଠିଆ ହୋଇ ରହି ପାରିଲେ ନାହିଁ । ପାଟିରେ ଆଉ ଲାଳ ଦେଖା ଯାଉ ନ ଥିଲା ଏବଂ ପ୍ରତି ମୁହୂର୍ତ୍ତରେ ସେ ଜିଭରେ ଶବ୍ଦ କରୁଥିଲେ ଯେପରି କି ଉପର ପାଟିରୁ ତାହା ପୋଛି ଆଣୁଥିଲେ ।

ସେ ଜଳଖିଆ ଖାଇବାକୁ ବସିଲେ, କିନ୍ତୁ ଖାଇ ପାରିଲେ ନାହିଁ । ତାପରେ ସାହସ ସଞ୍ଚୟ କରିବା ପାଇଁ ସେ ମଦ ପିଇବାକୁ ଭାବିଲେ ଏବଂ ଗୋଟାଏ ଗ୍ଲେଟ ମଦ ବୋତଲ କାଢ଼ି ଆଣିଲେ, ଗୋଟିକ ପରେ ଗୋଟିଏ ଛଅଟି ଗ୍ଲାସରେ ତାକୁ ନିଃଶେଷ କରି-ଦେଲେ ।

ଠିକ୍ ଆତ୍ମାର ବିସ୍ମୃତି ପରେ, ଜଳନ୍ତା ନିଆଁ ପରି ଏକ ଉତ୍ତାପ ତାଙ୍କୁ ଆକ୍ରମଣ କଲା । ସେ ଭାବିଲେ

"ମୁଁ ପ୍ରତିକାର ସ୍ଥିର କରିଛି । ବର୍ତ୍ତମାନ ସବୁ ଠିକ୍ ହୋଇଯିବ ।"

କିନ୍ତୁ ଘଣ୍ଟାକ ପରେ ସେ ବୋତଲ ଖାଲି କରିଦେଲେ ଏବଂ ତାଙ୍କର ଉତ୍ତେଜକ ଅବସ୍ଥା ଅସହ୍ୟ ହୋଇ ପଡ଼ିଲା । ଭୂଇଁରେ ଗଡ଼ିବା ପାଇଁ, ଚିତ୍କାର କରିବା ପାଇଁ ଏବଂ କାମୁଡ଼ିବା ପାଇଁ ସେ ଗୋଟିଏ ନିର୍ବୋଧ ଉଦ୍‌ବେଗ ଅନୁଭବ କଲେ । ତାପରେ ସନ୍ଧ୍ୟା ମାଡ଼ି ଆସିଲା ।

ଘଣ୍ଟାର ଗୋଟିଏ ପାହାର ତାଙ୍କୁ ଏତେ ଦୂର ବିଚଳିତ କରି ପକାଇଲା ଯେ, ସାକ୍ଷୀମାନଙ୍କୁ ଯାଇ ପାଖରେ ଆଣିବା ପାଇଁ ତାଙ୍କର ଯଥେଷ୍ଟ ଶକ୍ତି ନ ଥିଲା । ସେମାନେ ତାଙ୍କ ସ୍ୱରରେ ପରିବର୍ତ୍ତନ ଲକ୍ଷ୍ୟ କରି ପାରିବେ । ଏହି ଉପରେ "ଶୁଭ ସନ୍ଧ୍ୟା" ଜ୍ଞାପନ କରିବାପାଇଁ, ଏପରିକି ଗୋଟିଏ ମାତ୍ର ଶବ୍ଦ ଉଚ୍ଚାରଣ କରିବା ପାଇଁ, ତାଙ୍କର ସାହସ ନ ଥିଲା ।

କର୍ଣ୍ଣେଲ ଜଣାଇଲେ

"ତୁମର ମନୋମତ ସର୍ତ୍ତ ଅନୁସାରେ ସବୁ ବ୍ୟବସ୍ଥା ହୋଇଛି । ତୁମର ପ୍ରତିଦ୍ୱନ୍ଦୀ ଅପମାନିତର ସୁବିଧା ଦାବୀ କରୁଥିଲା,

କିନ୍ତୁ ସେ ଶୀଘ୍ର ନଇଁ ପଡ଼ିଲା ଏବଂ ସବୁ ଗ୍ରହଣ କରିଗଲା । ତାହାର ସାକ୍ଷୀ ଦୁଇ ଜଣ ମିଲିଟାରୀ ଲୋକ ।"

ଭାଇକାଉଣ୍ଟ ଉଚ୍ଚାରଣ କଲେ

"ଧନ୍ୟବାଦ ।"

ମାରକୁଇସ ପୁଣି କହିଲେ :

"ଆମେ ଆସୁଛୁ ଏବଂ ଯାଉଛୁ ବୋଲି ଆମକୁ ମାଫ୍ କରିବେ, କାରଣ ଆମର ଆହୁରି ହଜାରେ କଥା କରିବାର ଅଛି । ଗୁରୁତର କ୍ଷତ ପରେ ଯୁଦ୍ଧ ବନ୍ଦ ହେବା ହେତୁ, ଜଣେ ଭଲ ଡାକ୍ତର ଲୋଡ଼ା ହେବ ଏବଂ ତୁମେ ତ ଜାଣ ଯେ, ଗୁଳି କଥାଟା ସାମାନ୍ୟ କଥା ନୁହେଁ । ତା ପରେ କୌଣସି ଘର ପାଖରେ, ଗୋଟିଏ ସ୍ଥାନ ଆଗରୁ ଖୋଜି ବାହାର କରିବାକୁ ହେବ ଦରକାର ପଡ଼ିଲେ, ଆମେ ଆହତ ଲୋକଙ୍କୁ ସେଠାକୁ ନେଇଯାଇ ପାରିବା ଇତ୍ୟାଦି, ଇତ୍ୟାଦି; ଶେଷରେ ଏସବୁ ପାଇଁ ଆମ ହାତରେ ଦୁଇ ତିନି ଘଣ୍ଟା ମାତ୍ର ସମୟ ଅଛି ।"

ଦ୍ୱିତୀୟ ଥର ପାଇଁ, ଭାଇକାଉଣ୍ଟ ଉଚ୍ଚାରଣ କଲେ :

"ଧନ୍ୟବାଦ ।"

କର୍ଣ୍ଣେଲ ପଚାରିଲେ :

"ତୁମେ କିପରି ଅଛ ? ଶାନ୍ତ ତ ?"

"ହଁ, ଖୁବ ଶାନ୍ତ, ତୁମକୁ ଧନ୍ୟବାଦ ।"

ତା ପରେ ଦୁଇ ଜଣ ଚାଲିଗଲେ ।

ସେ ଯେତେବେଳେ ନିଜକୁ ପୁଣି ଏକୁଟିଆ ପାଇଲେ, ସେ ନିଜକୁ ପାଗଳ ବୋଲି ବୋଧ କଲେ । ତାଙ୍କର ଚାକର ଆଲୁଅ ଲଗାଇ ଦେଇଗଲା, କେତୋଟି ଚିଠି ଲେଖିବା ପାଇଁ ସେ ଟେବୁଲ ଆଗରେ ବସିଲେ । ଖଣ୍ଡିଏ କାଗଜର ଉପର ଭାଗରେ "ଏହା

ମୋର ବନ୍ଧୁ"— ଲେଖି ସାରି, ସେ ଥରିଯାଇ ଉଠି ପଡ଼ିଲେ ଏବଂ ତାକୁ ନିଜ ପାଖରୁ ଠେଲି ଦେଲେ, ଦୁଇଟି କଥା ଭାବିବା କିମ୍ବା କଣ କରିବାକୁ ହେବ ଦୃଢ଼ ସିଦ୍ଧାନ୍ତ କରିବା ପାଇଁ ସେ ନିଜକୁ ଅସାମର୍ଥ୍ୟ ଅନୁଭବ କରୁଥିଲେ ।

ତାହା ହେଲେ ସେ ଗୋଟିଏ ଦ୍ୱନ୍ଦ୍ୱ ଯୁଦ୍ଧ କରିବା ପାଇଁ ଯାଉଥିଲେ ! ସେଥିରୁ ରକ୍ଷା ପାଇବାର ଆଉ ଉପାୟ ନ ଥିଲା । କିପରି ସେ ଏହା କରି ପାରିବେ ? ସେ ଯୁଦ୍ଧ କରିବା ପାଇଁ ଇଚ୍ଛା କରୁଥିଲେ, ଏହା ତାଙ୍କର ଉଦ୍ଦେଶ୍ୟ ଏବଂ ସେଥିପାଇଁ ସେ ଦୃଢ଼ ପ୍ରତିଜ୍ଞ, ଏବଂ ତଥାପି, ସେ ଅନୁଭବ କଲେ, ଯେ ତାଙ୍କ ମନର ସମସ୍ତ ଚେଷ୍ଟା ଓ ଇଚ୍ଛାର ସମସ୍ତ ପ୍ରାବଲ୍ୟ ସତ୍ତ୍ୱେ, ସାକ୍ଷାତ ସ୍ଥଳୀକୁ ଯିବା ପାଇଁ ଆବଶ୍ୟକୀୟ ଶକ୍ତି ସୁଦ୍ଧା ସେ ସଞ୍ଚୟ କରି ପାରିବେ ନାହିଁ । ଯୁଦ୍ଧ, ନିଜର ଢଙ୍ଗ ଢାଙ୍ଗ, ଏବଂ ତାଙ୍କ ପ୍ରତିଦ୍ୱନ୍ଦ୍ୱୀର ଅବସ୍ଥିତି ବିଷୟ ସେ କଳ୍ପନା କରିବାକୁ ଚେଷ୍ଟା କଲେ ।

ସମୟ ସମୟରେ, ପାଟି ଭିତରେ ତାଙ୍କ ଦାନ୍ତସବୁ ଟିକିଏ ଶବ୍ଦ ଶବ୍ଦ କରି ଥରୁଥିଲା । ସେ ପଢ଼ିବାକୁ ଚେଷ୍ଟା କଲେ ଏବଂ ଦ୍ୱନ୍ଦ୍ୱ ଯୁଦ୍ଧର ଚେଟୁଭିଲାର୍ଡ ଆଇନ ଟିପି ନେଲେ । ତା ପରେ ସେ ନିଜକୁ ପଚାରିଲେ

"ମୋ ପ୍ରତିଦ୍ୱନ୍ଦ୍ୱୀ କଣ ଅନେକ ସମୟରେ ଯୁଦ୍ଧ କରିଛି ? ସେ କଣ ପରିଚିତ ? ସେ କଣ ପାରଙ୍ଗମ ? କିପରି ବା ମୁଁ ଜାଣିବି ?"

ପିସ୍ତଲରେ ଧୂରନ୍ଧର ବ୍ୟକ୍ତିମାନଙ୍କ ବିଷୟରେ ବେରନ ଡି ଭକ୍ସଙ୍କର ବହି କଥା ତାଙ୍କର ସ୍ମରଣ ହେଲା, ଏବଂ ସେ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ତାକୁ ଓଲଟାଇଗଲେ । ଜର୍ଜ ଲମିଲ ଉଲ୍ଲେଖ ନ ଥିଲା । ତଥାପି, ଯଦି ଏହି ଲୋକଟି ଧୂରନ୍ଧର ହୋଇ ନ ଥାନ୍ତା,

ସେ ତତ୍କ୍ଷଣାତ ଏହି ଉପଯୁକ୍ତର ଅସ୍ତ୍ର ଓ ସାଙ୍ଘାତିକ ସର୍ତ୍ତସବୁ ଗ୍ରହଣ କରି ନ ଥାନ୍ତା ।

ଯାଉଁ ଯାଉଁ, ଛୋଟ ଷ୍ଟାଣ୍ଡରେ ରଖାଯାଇ ଥିବା ଗ୍ୟାସଟିନ ରିନେଟ୍‌ସର ଗୋଟିଏ ବାକ୍ସ ଖୋଲିଲେ, ଗୋଟିଏ ପିସ୍ତଲ କାଢ଼ିଲେ, ଫୁଟାଇବା ଅବସ୍ଥାରେ ତାହା ଧରିଲେ, ଏବଂ ତାଙ୍କ ବାହୁ ଉଠାଇଲେ । କିନ୍ତୁ ତାଳୁରୁ ତଳିପା ଯାଏ ସେ ଥରିଲେ ଏବଂ ବିରକ୍ତି ତାଙ୍କର ବୁଦ୍ଧି ବୃତ୍ତି ଲୋପ କରି ଦେଲା ।

ତା ପରେ ସେ କହିଲେ, "ଏହା ଅସମ୍ଭବ । ଏହି ଅବସ୍ଥାରେ ମୁଁ ଯୁଦ୍ଧ କରି ନ ପାରେ ।"

ନଳୀର ମୁଣ୍ଡ ଆଡ଼େ, ସେହି ମୃତ୍ୟୁବାହୀ, କ୍ଷୁଦ୍ର, କଳା ଗହ୍ୱରଆ ଛିଦ୍ର ଆଡ଼େ, ସେ ଚାହିଁଲେ, ଏବଂ ନିନ୍ଦା, ତାଙ୍କ ମହଲରେ ଫୁସ୍‌ଫାସ୍ କଥାବାର୍ତ୍ତା, ବୈଠକଖାନାମାନଙ୍କରେ ଥଟ୍ଟା, ମହିଳାମାନଙ୍କର ତିରସ୍କାର, ପତ୍ରିକାମାନଙ୍କର କଟାକ୍ଷ, ଭୀରୁମାନଙ୍କର ତାଙ୍କ ପ୍ରତି ଅପମାନ ବିଷୟ ସେ ଭାବିଲେ ।

ସେ ଅସ୍ତ୍ରଟି ପରୀକ୍ଷା କରିବାକୁ ଲାଗିଲେ, ଏବଂ ଘୋଡ଼ା ଟେକି, ସେ ହଠାତ୍ ଦେଖିଲେ ଗୋଟିଏ ଗୁଳି ଛୋଟ ନାଲି ଶିଖା ଭଳି ତା ଭିତରେ ଜଳୁଛି । ସେତେବେଳେ ପିସ୍ତଲରେ ଗୁଳି ଭର୍ତ୍ତି ହୋଇଥିଲା, ଭୁଲ୍‌ରେ ଏବଂ ସେ ଏହି ଆବିଷ୍କାରରେ ଏକ ବିଶୃଙ୍ଖଳ, ଦୁର୍ବୋଧ ଆନନ୍ଦ ଅନୁଭବ କଲେ ।

ଯଦି ଅନ୍ୟ ଲୋକଟି ସାମନାରେ ତାଙ୍କର ଶାନ୍ତ, ଉଦାର, ଧୈର୍ଯ୍ୟ ଯାହା ତାଙ୍କର ରହିବା ଉଚିତ, ନ ରହେ, ସେ ଚିର ଦିନ ପାଇଁ ହାରିଯିବେ । ସେ ଚିହ୍ନା ପଡ଼ିଯିବେ, ଅସମ୍ମାନର ସଂଜ୍ଞା ପରିଧାନ କରିବେ, ପୃଥିବୀରୁ ବହିଷ୍କୃତ ହେବେ । ଏବଂ ଏହି ଶାନ୍ତ, ଶୌର୍ଯ୍ୟ ଆକୃତି ତାଙ୍କର ରହିବ ନାହିଁ, ଏହା ସେ ଜାଣିଥିଲେ,

ସେ ଅନୁଭବ କରିଥିଲେ । ଯାହା ହେଉ, ଯୁଦ୍ଧ କରିବାକୁ ବ୍ୟଗ୍ର ଥିବାରୁ, ସେ ସାହସୀ ଥିଲେ । ସେ ବୀର ଥିଲେ, ଯେହେତୁ······ ତାଙ୍କର ପ୍ରକାଶୋନ୍ମୁଖୀ ଚିନ୍ତା ରୂପ ଧାରଣ କଲା ନାହିଁ, ଏପରିକି ତାଙ୍କର ନିଜ ମନ ଭିତରେ ; କାରଣ, ତାଙ୍କର ମୁହଁ ମେଲା କରି ସେ ତାଙ୍କ ପିସ୍ତଲର ନଳଟି ତାଙ୍କ ତଣ୍ଟି ଭିତରେ ପୂରାଇଦେଲେ ଏବଂ ଘୋଡ଼ା ଟିପି ଦେଲେ······ ।

ଯେତେବେଳେ ତାଙ୍କର ଚାକର, ଶବ୍ଦ ଶୁଣି, ତାଙ୍କ ନିକଟ ଦୌଡ଼ି ଆସିଲା, ତାଙ୍କୁ ମୃତ ହୋଇ ମରି ପଡ଼ିଥିବାର ଦେଖିଲା, ଟେବୁଲ ଉପରେ ଥିବା ଧଳା କାଗଜ ଉପରେ ରକ୍ତର ଗୋଟିଏ ଧାରା ଛିଟିକି ପଡ଼ିଥିଲା ଏବଂ ଏହା ଚାରୋଟି ଶବ୍ଦ ଉପରେ ଗୋଟିଏ ବଡ଼ ନାଲି ଚିହ୍ନ ଆଙ୍କି ଦେଇଥିଲା :

"ଏହା ମୋର ଦଲିଲ ଅଟେ ।"

— ଗୀ ଦ ମୋପାସାଁ

# ଲତିଫା

"ଲତିଫାର ଚକ୍ଷୁ ନ ଦେଖିଥିଲେ ଚକ୍ଷୁ କେତେ ସୁନ୍ଦର ହୋଇପାରେ ତାହା ଜଣାଯାଏ ନାହିଁ ।" ଏହି କଥା ମୁଁ ଯେତେବେଳେ କହୁଥିଲି, ସେତେବେଳେ ମୁଁ ଥିଲି ଗ୍ରେଟ ପିଲା— ଆଉ ଲତିଫା ଥିଲା ଗୋଟିଏ ଗ୍ରେଟ ଆରବ ବାଳିକା— ସେତେବେଳେ ଶିଶୁ କହିଲେ ଚଳେ ।

ତାପରେ ଏତେ ଗୁଡ଼ାଏ ବର୍ଷ ଗଲି ଯାଇଛି—ମୁଁ ଆଜି ବି ଏହି କଥା କହୁଛି ।

ସମୟଟା ଥିଲା ଜାନୁଆରୀ ମାସ, ବର୍ଷା କାଳ । ମୁଁ ଦଳେ ଆରବଙ୍କ ସାଙ୍ଗରେ କ୍ଷେତରେ ଥିଲି—ସେମାନେ ଆମର ପ୍ରଥମ ଅଙ୍ଗୁର କ୍ଷେତ ତିଆରି କରୁଥିଲେ । ମୋ ମନରେ ଥିଲା ଉତ୍ସବର ଆନନ୍ଦ, ମୋର ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ବି ଥିଲା ତାର ଆଭାସ । ଦିନଟା ଥିଲା ସୁନ୍ଦର, ଉଜ୍ଜ୍ୱଳ । ବାୟୁ ଥିଲା ପରିଷ୍କାର, ମୃଦୁ, ଈଷଦୁଷ୍ଣ ଏବଂ ଶକ୍ତିପ୍ରଦ । ପୂର୍ବ ଦିଗରେ ଦଣ୍ଡାୟମାନ ସୂର୍ଯ୍ୟଙ୍କ ଠାରୁ ସବୁ ଜିନିଷ ଉପରେ ଝରି ପଡ଼ୁଥିଲା ଗୋଟିଏ ପ୍ରାତଃକାଳୀନ ଉଜ୍ଜ୍ୱଳ ଦ୍ୟୁତି । ନିଶ୍ୱାସ ଗ୍ରହଣ କରି ଫୁସ୍‌ଫୁସ୍‌କୁ ପୂର୍ଣ୍ଣ ମାତ୍ରାରେ ଭରି ଦେଇ ଆନନ୍ଦ ମିଳୁଥିଲା । ଚତୁର୍ଦ୍ଦିଗରେ ସବୁ କିଛି ଥିଲା

ସବୁଜ ଏବଂ ଅକର୍ଷିତ ପାହାଡ଼ ଉପରେ ଲାବଣ୍ୟମୟ ସୁନ୍ଦର ବନ୍ୟ ଫୁଲଗୁଡ଼ିକ ଦୋହଲୁଥିଲେ ।

ଇଟା ଏବଂ 'ଇଞ୍ଜିନ' ପରିଷ୍କାରକାରିଣୀ ଆରବ ବାଳିକାଙ୍କ ମଧ୍ୟରେ ମୁଁ ଗୋଟିଏ ନୂତନ ମୁଖ ଦେଖିଲି । ସେ ମୁଖଟି ଗୋଟିଏ ଚଉଦ ବର୍ଷ ବୟସର ସଜୀବ ସତେଜ କିଶୋରୀର—ତାହାର ପରିଧାନ ନୀଳ ପୋଷାକ । ଗୋଟିଏ ସାଦା ଓଢ଼ଣୀର ପ୍ରାନ୍ତ ଦ୍ୱାରା ତାହାର ମୁଖଟି ଢଙ୍କା, ଆଉ ଅପର ପ୍ରାନ୍ତଟି ପଡ଼ିଛି ତାହାର କାନ୍ଧରେ ।

ମୁଁ ଲେଖି ରଖିବା ଉଦ୍ଦେଶ୍ୟରେ ତାକୁ ପଚାରିଲି, "ତୋର ନାମ କଣ ?"

ସୁନ୍ଦରୀ ଲଜ୍ଜାଶୀଳା ବାଳିକାଟି ନିଜର ଶ୍ରେଷ୍ଠ ମୁହଁଟି ମୋ ଆଡ଼କୁ ଫେରାଇଲା, ଆଉ ତାହାର କଳା ଚକ୍ଷୁ ଦୁଇଟି ଚକ୍ ଚକ୍ କରି ଉଠିଲା ।

"ଲଞ୍ଜିଫ ।"

ତାହାର ଚକ୍ଷୁ ଦୁଇଟି ଥିଲା ସୁନ୍ଦର—ବଡ଼, କଳା ଏବଂ ଦ୍ୟୁତିମୟ । ଚକ୍ଷୁର ମଣି ଦୁଇଟି ସୁଖ ଓ ଜୀବନର ଆନନ୍ଦରେ ଝଲମଲ ହେଉଥିଲା ।

"ଶେଖ୍ ସେ ରାବଜୀର ଝିଅ", କହିଲା ଆଡାଲ ନାମରେ ଜଣେ ତରୁଣ ଆରବ । ସେ ସେହି ମୁହୂର୍ତ୍ତରେ ଗୋଟିଏ ବଡ ପଥର ଧୁଆଁଉଥିଲା । ସେ ଯେପରି ବର୍ତ୍ତମାନ କଥାଗୁଡ଼ାକ ପବନରେ ଫିଙ୍ଗି ଦେଲା ।

"ସୁନ୍ଦର ଗ୍ରୀଷ୍ମ ରାତିରେ ଠିକ୍ ଦୁଇଟି ତାରା ପରି"...... ଆଡାଲ ଦୁଷ୍ଟ ଚକ୍ଷୁରେ ମୋ ଆଡ଼କୁ ଚାହିଁ ଚାହିଁ ତାହାର ସୁନ୍ଦର ଦୃଢ଼ କଣ୍ଠରେ ଗୀତ ଗାଇବାକୁ ଲାଗିଲା ।

ସେହି ଦିନ ଠାରୁ ମୋର କାମରେ ଦେଖା ଦେଲା ନୂଆ ଆଗ୍ରହ । ଯେତେବେଳେ ନିଜକୁ କ୍ଲାନ୍ତ ବା ବିଷଣ୍ଣ ମନେ ହୁଏ, ସେତେବେଳେ ମୁଁ ଗୁହିଁ ଦିଏ ଲଭିଫା ଆଡ଼େ, ମେଜିକ୍‌ର ଯାଦୁ ସ୍ପର୍ଶ ଲାଗି ଯେପରି ସଙ୍ଗେ ସଙ୍ଗେ ମୋର ବିଷଣ୍ଣତା ଓ ଅବସାଦ କଟିଯାଏ ।

ସମୟ ସମୟରେ ମୁଁ ଅନୁଭବ କରୁଥିଲି ଯେ ଲଭିଫା ବି ଏକ ଦୃଷ୍ଟିରେ ମୋ ଆଡ଼େ ଅନାଇ ରହୁଛି । ପ୍ରାୟ ତାହାର ଚକ୍ଷୁର ଦୀପ୍ତି ମୁଁ ଅନୁଭବ କରୁଥିଲି ଏବଂ କେବେ କେବେ ତାହାର ଦୃଷ୍ଟିରେ ବିଷାଦ ବି ମିଶିଥିଲା ।

ଥରେ ମୁଁ ମୋର ଗ୍ରେ ଧୂସର ରଙ୍ଗର ଗଧରେ ଚଢ଼ି କ୍ଷେତକୁ ଯାଉଥିଲି । କୂଅ ପାଖରେ ଦେଖାଦେଲା ଲଭିଫା ସାଙ୍ଗରେ, —ତା ମଥାରେ କଳସୀ । ସେ ଶ୍ରମିକଙ୍କ ପାଇଁ ଜଳ ନେଇ ଯାଉଥିଲା ।

"ଲଭିଫା, କମଣ ଅଛୁ ?"

"ମୋ ବାବା ମୋତେ କାମକୁ ଯିବାକୁ ଦେଉ ନାହିଁ"..... କଥା ଗୁଡ଼ାକ ତା ପାଟିରୁ ଏପରି ଭାବରେ ବାହାରି ଆସିଲା ଯେ ମନେ ହେଲା, ଯେପରି ସେ ବହୁତ ଦିନରୁ ଚୁପ ଦିଆ ହୋଇଥିବା କୌଣସି କଷ୍ଟର ହାତରୁ ତାହାର ହୃଦୟକୁ ମୁକ୍ତ କରିବାକୁ ଗୁହୁଁଛି । ତାହାର ଗଳାର ସ୍ୱର ବିଷଣ୍ଣ; ଯେପରି କୌଣସି ବିପଦ ପାତ ହୋଇଛି ।

"କାମ କରିବା ଠାରୁ ତୋତେ କ'ଣ ଘରେ ରହିବାକୁ ବେଶୀ ଭଲ ଲାଗେ ନାହିଁ ?"

ଲଭିଫା ମୋ ଆଡ଼କୁ ଅନାଇଲା, ତାହାର ଚକ୍ଷୁ ଦୁଇଟି ମ୍ଳାନ ହୋଇଗଲା—ଯେପରି ତା ଚକ୍ଷୁ ଉପରେ ଛାୟା ପଡ଼ୁଛି । କେତୋଟି ମୁହୂର୍ତ୍ତ ପାଇଁ ସେ ନୀରବ ରହିଲା ।

"ମୋ ବାବା ଆଗରର ଶେଖର ପୁଅ ସାଙ୍ଗରେ ମୋତେ ବାହା ଦେବାକୁ ଚାହେଁ" ।

"ଆଉ ତୁ କ'ଣ ଚାହୁଁ ?"

"ମୋର ବରଂ ମରଣ ଭଲ ।"

ପୁଣି ସେ ନୀରବ ରହିଲା ! ତାପରେ ସେ ପ୍ରଶ୍ନ କଲା, "ହାଓ୍ୱାଜା, ଏ କଥା କ'ଣ ସତ ଯେ ଆପଣଙ୍କ ଜାତିର ଲୋକେ ଥରେ ମାତ୍ର ବାହା ହୁଅନ୍ତି ?"

"ସତ, ଲତିଫା" ।

"ଆଉ ଆପଣମାନେ କଣ ସ୍ତ୍ରୀଙ୍କୁ ମାରନ୍ତି ନାହିଁ ?"

"ନା । ଯେଉଁ ନାରୀ ପୁରୁଷକୁ ଭଲ ପାଏ ଏବଂ ପୁରୁଷ ଯାହାକୁ ଭଲ ପାଏ, ତାକୁ କ'ଣ ମାରନ୍ତି ?"

"ଆପଣଙ୍କ ଭିତରେ ଝିଅ ଯାହାକୁ ଚାହେଁ, ତାକୁ କ'ଣ ବାହା ହୋଇ ପାରେ ?"

"ନିଶ୍ଚୟ ।"

"ଆଉ ଆମକୁ ଏମାନେ ବିକ୍ରି କରନ୍ତି ଘରବାହୀ ପଶୁ ଭଳି ।"

ଏହି ମୁହୂର୍ତ୍ତଗୁଡ଼ିକ ଭିତରେ ଲତିଫାର ଚକ୍ଷୁ ଦୁଇଟି ଆହୁରି ସୁନ୍ଦର ଦେଖାଗଲା—ଆହୁରି ଗଭୀର, ଆହୁରି କଳା । ଏକ ମୁହୂର୍ତ୍ତ ପରେ ସେ କହିଲା, "ମୋ ବାବା କହନ୍ତି ଯେ ଆପଣ ଯଦି ମୁସଲମାନ ହୋଇଥାନ୍ତେ, ତାହାହେଲେ ମୋତେ ସେ ଆପଣଙ୍କ ହାତରେ ସମର୍ପି ଦିଅନ୍ତେ" ।

"ମୋ ହାତରେ ?"

ମୁଁ ନିଜର ଇଚ୍ଛା ବିରୁଦ୍ଧରେ ଓ ସଶବ୍ଦରେ ହସି ଉଠିଲି । ଯନ୍ତ୍ରଣାରେ ପରିପୂର୍ଣ୍ଣ ଚକ୍ଷୁ ଦୁଇଟି ଉଠାଇ ଲତିଫା ମୋ ଆଡ଼କୁ ଅନାଇଲା ।

ମୁଁ କହିଲି, "ଲତିଫା, ତୁମେ ଇହୁଦୀ ଧର୍ମ ଗ୍ରହଣ କର, ମୁଁ ତୁମକୁ ବିଭା ହେବି ।"

"ବାବା ତାହାହେଲେ ମୋତେ ଓ ଆପଣଙ୍କୁ— ଦୁହିଁଙ୍କୁ ହତ୍ୟା କରିବେ ।"

ପର ଦିନ ଶେଖ୍ ସୋରାବଜୀ ମୋର ଅଙ୍ଗୁର କ୍ଷେତକୁ ଆସିଲା ।

ବୃଦ୍ଧ ସୋରାବଜୀର ମୁଖରେ ଥିଲି ସୁନ୍ଦର ସାଦା ଦାଢ଼ୀ, ମଥାରେ ଦୀର୍ଘ ଟୋପି । ଗୋଟିଏ ତେଜସ୍ୱିନୀ ସାଦା ଘୋଡ଼ାରେ ଚଢ଼ି ସେ ଆସେ । ଘୋଡ଼ାଟି ସତେଜରେ ଡେଇଁ ଡେଇଁ ଚାଲେ ।

ସେ ଶ୍ରମିକଙ୍କୁ ଅଭିବାଦନ ଜଣାଇଲେ, ଶ୍ରମିକମାନେ ବି ସମସ୍ତେ ସମ୍ମାନପୂର୍ବରେ ପ୍ରତ୍ୟଭିବାଦନ ଜଣାଇ ନୀରବ ହୋଇ ରହିଲେ । ମୋ ଆଡ଼କୁ ସେ ଏକ ଖରବ୍ ଦୃଷ୍ଟି ହାଣିଲା ଏବଂ ତିକ୍ତ କଣ୍ଠରେ ମୋତେ ଅଭିବାଦନ ଜଣାଇଲା । ମୁଁ ବି ସମାନ ଶୈତ୍ୟର ସହିତ ଜବାବ ଦେଲି । ଶେଖ୍ ଓ ଔପନିବେଶିକମାନଙ୍କ ମଧ୍ୟରେ ପ୍ରେମର ସମ୍ପର୍କ ନ ଥିଲା, ସେମାନେ ସମସ୍ତେ ଇହୁଦୀଙ୍କୁ ଭୀଷଣ ଘୃଣା କରୁଥିଲେ ।

ତା ଝିଅକୁ ସେଠାରେ ଦେଖି ଶେଖ୍‌ର ରାଗ ଚଢ଼ିଗଲା । ସେ ସଗର୍ଜନରେ କହିଲା "ଏହି ଇହୁଦୀ ପାଖକୁ ଆସିବାକୁ ତୋତେ ମୁଁ ବାରଣ କରି ନାହିଁ ?"

"ମୁସଲମାନ ହୋଇ ତୁମେ ଯେଉଁମାନେ କାଫେରଙ୍କ ନିକଟରେ ଶ୍ରମ ବିକ୍ରି କର, ତୁମକୁ ବି ଧିକ୍ !"

ତା ହାତରେ ଥିବା ଛଡ଼ିଟା କେତେ ବାର ଲତିଫାର ମଥା ଓ କାନ୍ଧରେ ପଡ଼ିଲା । ଭୀଷଣ ଭାବରେ ବିଗିଡ଼ିବାରୁ ମୁଁ ତା ଆଡ଼କୁ ଆଗେଇବାକୁ ଚେଷ୍ଟା କଲି— କିନ୍ତୁ ଲତିଫା, ବିପନ୍ନ, କଲା,

ଅଶ୍ରୁସିକ୍ତ ଚକ୍ଷୁଦୁଇଟି ଟେକି ମୋ ଆଡ଼କୁ ଚାହିଁଲା--- ଯେପରି ମୋତେ ନୀରବ ରହିବା ପାଇଁ ଅନୁରୋଧ ଜଣାଇଲା ।

ଶେଖ ଏବଂ ତାହାର ପୁଅ ଚାଲିଗଲେ । ଶ୍ରମିକମାନେ ବି ନିଶ୍ୱାସ ଛାଡ଼ି ବଞ୍ଚିଲେ ।

"ଶେଖ୍ ସୋରାବଜୀ ହୃଦୟହୀନ", ଜଣେ କହିଲା ।

ଦ୍ୱିତୀୟ ବ୍ୟକ୍ତି କହିଲା, "ସେ ଆଜି ଏକ୍ଷଣି ଅଧେ ମଜୁରି ଦେଇ ଶ୍ରମିକଙ୍କୁ ସକାଳୁ ସନ୍ଧ୍ୟା ଯାଏ ଖଟାଇବାର ସୁଯୋଗ ପାଉ ନାହିଁ ବୋଲି ଏତେ ରାଗି ଯାଇଛି । ଇହୁଦୀମାନେ ପ୍ରତିଦ୍ୱନ୍ଦିତା କରୁଛନ୍ତି ।"

ଓଠରେ ମୃଦୁ ଦୁଷ୍ଟ ହସର ଲହରୀ ଖେଳାଇ ଆଟାଲା କହିଲା, "ଓ, ଆଜି ସେ କାହିଁକି ରାଗିଛି ମୁଁ ତାହା ଜାଣେ !"

ଲତିଫା ଆଉ କାମ କରିବାକୁ ଫେରି ଆସିଲା ନାହିଁ ।

ଯେଉଁ ଘରେ ସାଧାରଣତଃ ଆହାରାଦି କରୁଥିଲି, ସେହି ଘରୁ ଆସିବା ବାଟରେ କେତେ ସପ୍ତାହ ପରେ ଦିନେ ଦିପହରେ ତା ସାଙ୍ଗରେ ଦେଖା ହେଲା । ସେ ଘରର ବାହାରେ ଭୂଇଁରେ ବସି ମୁରଗୀ ବିକ୍ରୀ କରୁଥିଲା । ମୋତେ ଦେଖି ସେ ଉଠି ଛିଡ଼ା ହେଲା । ତାହାର ଚକ୍ଷୁ ଦୁଇଟି ଦେଖିଲି ଆହୁରି ସୁନ୍ଦର—ଆହୁରି ବେଶୀ କରୁଣ ।

"କିପରି ଅଛ ଲତିଫା ?"

"ଧନ୍ୟବାଦ, ଡାଓୟୁଜା !"

ତାହାର ଗଳା କମ୍ପୁଥିଲା । ଲତିଫା ପ୍ରାୟ ମୁରଗୀ ବିକ୍ରୀ କରିବାକୁ ଆସେ ଏବଂ ସବୁଦିନ ଦିପହର ବେଳେ ହିଁ ଆସେ ।

ଦିନେ ଆଟାଲା ମୋତେ କହିଲା, "ଡାଓୟୁଜା, ଲତିଫା ଆଗରକୁ ଯାଇଛି; ଶିଖିର ପୁଅ ତାକୁ ବଶ କରିଛି—ଲୋକଟା

କୁତ୍ସିତ ଆଉ ବଦମାସ !" ତାହାର କଥାଗୁଡ଼ିକ ମୋ ବକ୍ଷରେ ଛୁରି ପରି ବାଜିଲା ।

ପରେ ମୁଁ ଶୁଣିବାକୁ ପାଇଥିଲି ଯେ ଲତିଫାର ସ୍ୱାମୀର ଘର ନିଆଁ ଲାଗି ପୋଡ଼ି ଯାଇଛି, ଲତିଫା ବାପଘରକୁ ଚାଲି ପଳାଇ ଆସିଥିଲା— ପୁଣି ତା ଇଚ୍ଛା ବିରୁଦ୍ଧରେ ତାକୁ ସ୍ୱାମୀ ଘରକୁ ଫେରାଇ ନେଇ ଯାଇଛନ୍ତି ।

କେତୋଟି ବର୍ଷ ଚାଲିଗଲା । ମୁଁ ମୋର ନିଜ ଭିଟାର ଘରେ ବାସ କରୁଥିଲି । ଅନ୍ୟର କଳା ଚକ୍ଷୁ ମୋତେ ଲତିଫାର କଳା ଚକ୍ଷୁ କଥା ଭୁଲିଯିବାକୁ ବାଧା କରିଥିଲା ।

ଦିନେ ଘରୁ ବାହାରି ଆସି ମୁଁ ଦେଖିବାକୁ ପାଇଲି ଯେ ଦୁଇ ଜଣ ବୃଦ୍ଧା ଆରବ ରମଣୀ ମୁର୍ଗୀ ଧରି ଅପେକ୍ଷା କରିଛନ୍ତି ।

"ତୁମେ କ'ଣ ଚାହଁ ?"

ଜଣେ ନାରୀ ଉଠି ଛିଡ଼ା ହେଲା ଏବଂ ମୋ ଆଡ଼କୁ ଅନାଇଲା ।

"ହାଓୟାଜା ମୁସା ?"

"ଲତିଫା ?"

ହଁ, ଲତିଫା ହିଁ ; ଏକ କୁଞ୍ଚିତ ଶୀର୍ଣ୍ଣ ମୁଖ ବୃଦ୍ଧା ନାରୀ । ସେ "ବୃଦ୍ଧା" ହୋଇ ପଡ଼ିଥିଲା—କିନ୍ତୁ ତାହାର ଚକ୍ଷୁରେ ସେହି ପୁରୁଣା ଦିନର ଦ୍ୟୁତିର ଅବଶେଷ ସେତେବେଳେ ବି ଥିଲା ।

"ଆପଣ ଦାଢ଼ି ରଖିଛନ୍ତି, କିପରି ସେପରି ବଦଳି ଯାଇଛନ୍ତି —"ସେ ମୋ ଉପରୁ ଚକ୍ଷୁ ହଟାଇ ନ ନେଇ ମୃଦୁ ସ୍ୱରରେ କହିଲା ।

"ତୁମେ କିପରି ଅଛ ? ତୁମେ ଏତେ ବଦଳି ଯାଇଛ କାହିଁକି ?"

"ହାଓୟାଜା, ସବୁ ଆଲ୍ଲାଙ୍କ ଦୟା !"

ସେ ନୀରବ ହେଲା । ତାପରେ କହିଲା, "ଡାଓସ୍କାଜା ମୁସା ବଡ଼ ହୋଇଛନ୍ତି ?"

"ହଁ, ଲତିଫା ।"

"ମୋର ତାଙ୍କୁ ଦେଖିବାକୁ ଇଚ୍ଛା ହେଉଛି ।"

ମୁଁ ସ୍ତ୍ରୀକୁ ବାହାରକୁ ଡାକି ଆଣିଲି । ଲତିଫା ବହୁ କ୍ଷଣ ଧରି ତା ଆଡ଼କୁ ଚାହିଁ ରହିଲା ।

ତାହାର ଚକ୍ଷୁରେ ଜଳ ।

ତା ପର ଠାରୁ ମୁଁ ଆଉ ଲତିଫାକୁ ଦେଖି ନାହିଁ ।

— ମୋସେ ସ୍କିଲ୍ୟାନ୍ସ୍କି

# ଚାକିରୀ

ମଣ୍ଟେଗ୍ରେଭିପ୍ଲାସ ପରିବାର ଖଣିଜ ବିଦ୍ୟାଟିକୁ ସେମାନଙ୍କର ସଂପୂର୍ଣ୍ଣ ନିଜସ୍ୱ ସମ୍ପତ୍ତି କରି ପକାଇଛନ୍ତି ।

ଏହି ପରିବାରର ଜର୍ଜେସ ମଣ୍ଟେଗ୍ରେଭିପ୍ଲାସ ହେଉଛନ୍ତି ସ୍ୱନାମଧନ୍ୟ ପୁରୁଷ । ସେ ଏହି ବଂଶର ପ୍ରତିଷ୍ଠାକୁ ଗଜଲକ୍ଷ୍ମୀ ପରି ଜୟ କରି ଆଣିଛନ୍ତି । ଆଜକୁ ତିରିଶ ବର୍ଷ ହେଲା ସେ ଫରାସୀ ଏକାଡେମୀରେ ଖଣିଜ ବିଭାଗର କର୍ତ୍ତାଙ୍କ ଆସନ ଅଧିକାର କରି ରହିଛନ୍ତି । ସେହି ଦିନରୁ ହିଁ ଏହି ବିଭାଗର ସୃଷ୍ଟି । ତାଙ୍କର ଜ୍ୟେଷ୍ଠ ପୁତ୍ର ହିଁୟା ମଣ୍ଟେଗ୍ରେଭିପ୍ଲାସ ମ୍ୟୁଜିୟମରେ ଖଣିଜ ଅଧ୍ୟାପକ —କନିଷ୍ଠ ପୁତ୍ର ଅଁରି ନର୍ମାଲ ସ୍କୁଲରେ ଖଣିଜ ବିଦ୍ୟା ଶିକ୍ଷା ଦିଅନ୍ତି । ବଡ଼ ଜୋଇଁ ପିଇରୁ ଦୋନୋ ସରବୋର୍ଣ୍ଣ କଲେଜର ଖଣିଜ ଅଧ୍ୟାପକ । ମଝିଆଁ ଜୋଇଁ ଗୃର୍ଲସ ବୋନ-ଗୁଁ ପେ ଏହି ପରିବାରର ସୁଜନ ବୋଲି ଖଣିଜ ଅଧ୍ୟାପନା କରନ୍ତି, କିନ୍ତୁ ଗୃକଶଠି ସ୍ତେଠ—ଭୁଲେଁ ଫ୍ୟାକାଲ୍‌ଟିରେ ସହକାରୀ ଶିକ୍ଷକ ମାତ୍ର ।

ଏଥି ପାଇଁ ମଟିଁଆଁ ଝିଅର ମନରେ ଅଶାନ୍ତିର ସୀମା ନାହିଁ। ସ୍ୱାମୀଙ୍କର ଆପଣ ଭାଇମାନଙ୍କ ଓ ବଡ଼ ଭଉଣୀଙ୍କ ପର ଉଚ୍ଚ ନୁହେଁ। ସ୍ୱାମୀଙ୍କ ସଙ୍ଗେ ସୁଦୂର ଗ୍ରାମରେ ତାଙ୍କୁ ରହିବାକୁ ହୁଏ। ମାଆ ଶ୍ରୀମତୀ ମଣଟେଗ୍ରେଭ୍ୟୁ'ସଙ୍କର ବ ସେଥିପାଇଁ ମନରେ ଖୁବ୍ କ୍ଷୋଭ—ଛୁଟି ହେଲେ ମଟିଁଆଁ ଝିଅ ଓ ଜୋଇଁ ତାଙ୍କ ପାଖକୁ ଆସନ୍ତି। ମଟିଁଆଁ ଜୋଇଁଙ୍କୁ ବର୍ଷରେ ତିନ ଥର ମାତ୍ର ଛୁଟି ମିଳେ। ସେ ସ୍ୱାମୀଙ୍କୁ ନିତ ତାଗିଦ କରନ୍ତି—ତୁମର ଘର ପାଡର ଅନ୍ତର, ମଟିଁଆଁଟିକୁ ଫରାସୀ ଏକାଡେମୀକୁ ଆଣିବ ନାହିଁ ନା!

ସ୍ୱାମୀ ଗମ୍ଭୀର କଣ୍ଠରେ କହନ୍ତି—ଏଠାରେ ଆଉ ସ୍ଥାନ କାହିଁ?

ଏହିପରି ଅଭିଯୋଗ ଓ ଅଶାନ୍ତି ଭିତରେ ଦିନ ଗଡ଼ିଯାଏ।

ହଠାତ୍ ସରକାର ସ୍ଥିର କଲେ—ସରବୋର୍ଣ୍ଣରେ ଖଣିଜ ପାଇଁ ଆଉ ଜଣେ ଅଧ୍ୟାପକର ସ୍ଥାନ ଖୋଲା ହେବ।

ଶ୍ରୀମତୀ ମଣଟେଗ୍ରେଭ୍ୟୁାସ ସ୍ୱାମୀଙ୍କୁ ଧରିଲେ—ଏହି କାର୍ଯ୍ୟଟି ମୋ ଗ୍ଳ୍‌ସର ପାଇବା ଦରକାର। ନା, ମୁଁ କୌଣସି ଆପତ୍ତି ଶୁଣିବି ନାହିଁ। ସମସ୍ତେ ଭଲ ଭଲ ଚାକିରି କରୁଛନ୍ତି, ଆଉ ମୋର ଗ୍ଳ୍‌ସଟି କେବଳ—

ଜର୍ଜେଶ କହିଲେ—ହୁଁ, କିନ୍ତୁ ମନ୍ତ୍ରୀ ନିଜେ ଲୋକ ବାଛିବେ! ତାଙ୍କର କିଏ ଲୋକ ଅଛି!

—ନା, ତାଙ୍କୁ ତୁମେ କହିବ, ଗ୍ଳ୍‌ସ ତୁମର ଜୋଇଁ। ତୁମେ ଏତେ ଦିନର ପୁରୁଣା ଲୋକ, କହିବାକୁ ଗଲେ ତୁମର ଦୌଲତରେ ହିଁ ଖଣିଜ ବିଭାଗଟା ଚାଲୁଛି।

ଜର୍ଜେଶ କହିଲେ—କିନ୍ତୁ ମନ୍ତ୍ରୀଙ୍କର ନିଜର ଲୋକ, ତାହାର ବ୍ୟବସ୍ଥା କରିବା ପାଇଁ ଏ ସ୍ଥାନଟି ଖୋଲା ହେଉଛି!

ଶ୍ରୀମନ୍ତ କହିଲେ—କିନ୍ତୁ ଗ୍ଲର୍ସ ଏଠେ ଧନ ହେଲା ଖଣିଜ ପଡ଼ାଉଚ୍ଛି ; ତାହାର ଦାବୀ ତ ଅଗ୍ରାହ୍ୟ କରାଯାଇ ନପାରେ । ତା ଛଡ଼ା ଏହା ତ ମନ୍ତ୍ରୀଙ୍କର ପୈତୃକ ଜମିଦାରୀ ନୁହେଁ ଯେ ନିଜର ଲୋକଙ୍କୁ ଏଥିରେ ବସାଇବାକୁ ହେବ । ସେ ଲୋକଟି କିଏ, ତାହାର କ'ଣ ଅଭିଜ୍ଞତା ଅଛି ? ନା, ମୁଁ ଶୁଣିବି ନାହିଁ । ତୁମେ ଯାଅ, ଯାଇ ମନ୍ତ୍ରୀଙ୍କୁ ଗ୍ଲର୍ସର ଦାବୀ କଥା କୁହ ।

ଶ୍ରୀମନ୍ତଙ୍କ କଥାରେ ତାଙ୍କୁ ଯିବାକୁ ପଡ଼ିଲା । ଜର୍ଜେଶ ମନ୍ତ୍ରୀଙ୍କୁ ଗ୍ଲର୍ସର ଦାବୀ କଥା ଜଣାଇଲେ ।

ମନ୍ତ୍ରୀ କହିଲେ—କିନ୍ତୁ ସେହି ସ୍ଥାନ ପାଇଁ ମୁଁ ତ ଲୋକ ଠିକ୍ କରି ସାରିଛି, ଜର୍ଜେଶ । ସୁପିରିୟର କାଉନ୍‌ସିଲ ସେହି ଲୋକଟିର ଦରଖାସ୍ତ ମଞ୍ଜୁର କରିଛି । ତୁମର ଏହି ଲୋକଟି କିଏ, ଶୁଣେ ?

—ଗ୍ଲର୍ସ ବେବନିଗୁଁସ୍ପେ, ଖଣିଜରେ ଚମତ୍କାର ଜ୍ଞାନ ।

—ତୁମର ଜୋଇଁ ନା ସେ ?

—ହଁ ।

ମନ୍ତ୍ରୀ କହିଲେ—ମୁଁ ଗ୍ଲର୍ସର କଥା ଶୁଣିଛି । କିନ୍ତୁ ନା, ମୁଁ ଆଶା ଦେଇ ପାରୁ ନାହିଁ, ଜର୍ଜେଶ ! ତାଙ୍କୁ ବାଛିବା, ନା, ଅସମ୍ଭବ ।

—କାହିଁକି ? କେଉଁଥି ପାଇଁ ଅସମ୍ଭବ ? ତା ବିରୁଦ୍ଧରେ କେହି କିଛି କଥା କହୁଛି ?

—ନା, ନା, ନା, ତାହା ନୁହେଁ ।

ଜର୍ଜେଶ କହିଲେ—ତାହା ହେଲେ ? ସେ ମେଧାବୀ ଛାତ୍ର, ତାହାର ବିଶ୍ୱବିଦ୍ୟାଳୟ ରେକର୍ଡ଼ ଅତି ଉଜ୍ଜ୍ୱଳ । ଖଣି

ବିଷୟରେ ସେ ଯେଉଁ ସବୁ ପ୍ରବନ୍ଧ ଲେଖିଛୁ, ଏକାଡେମୀ ଅଫ୍‌ ସାଇନ୍ସେସ ସେହି ସବୁ ପ୍ରବନ୍ଧର କି ସୁଖ୍ୟାତି କରିଛି !

ମନ୍ତ୍ରୀ କହିଲେ—ଗୃଲ୍‌ସର କୃତିତ୍ୱ ବା ଜ୍ଞାନ ସମ୍ବନ୍ଧରେ ମୋ ମନରେ ଏତିକି ଟିକିଏ ହେଲେ ଦ୍ୱିଧା ନାହିଁ !

—ତାହା ହେଲେ ତାହାର ଦାବୀ କାହିଁକି ଅଗ୍ରାହ୍ୟ ହେବ ?

ମନ୍ତ୍ରୀ ଏକ ଗଭୀର ନିଶ୍ୱାସ ତ୍ୟାଗ କରି କହିଲେ—ଏ କଥା ତୁମେ ପଚାରି ପାର । ତାହାର ଯୋଗ୍ୟତା ସମ୍ବନ୍ଧରେ କାଉନ୍‌ସିଲରେ କାହାରି ମନରେ ସଂଶୟ ନାହିଁ । ସେହି ଦିଗରୁ ତାହାର ଦାବୀ ସମସ୍ତଙ୍କ ଠାରୁ ବେଶୀ ! କିନ୍ତୁ—

—କେଉଁଥି ପାଇଁ କିନ୍ତୁ ?

—କହିବି ?

—ନିଶ୍ଚୟ କହିବେ ।

—ତାହାର ଦାବୀ ଗ୍ରାହ୍ୟ ହେବ ନାହିଁ କେବଳ ଗୋଟିଏ କାରଣ ହେତୁ, ଏବଂ ସେହି କାରଣଟି, ସେ ତୁମର ଜୋଇଁ !

—ମୋ ଜୋଇଁ ବୋଲି ଆପଣମାନେ ତାହାର ଯୋଗ୍ୟତା ଉପେକ୍ଷା କରିବେ !

ମନ୍ତ୍ରୀ କହିଲେ—ଖଣିଜ ବିଭାଗଟା ତୁମର ଜମିଦାରୀ ଭଳି ହୋଇ ଯାଇଛି, ଜର୍ଜେଶ । ତୁମେ ଅଛ—ତୁମର ଦୁଇ ପୁଅ ଅଛନ୍ତି—ତୁମର ଜଣେ ଜୋଇଁ ଅଛି—ମାନେ, ଏ ବିଭାଗଟିରେ ତୁମ୍ଭେମାନେ ଏକଚାଟିଆ ଅଧିକାର ସାବ୍ୟସ୍ତ କରିଛ । ବାହାରର ଅନ୍ୟ ଲୋକେ ଏ ବିଭାଗରେ ମଥା ଢଳାଇବେ, ସେ ଉପାୟ ନାହିଁ ! ତେଣୁ କାଉନ୍‌ସିଲ ଏହି ସମ୍ପର୍କରେ ସୁବିଚାର କରିବାକୁ ଚାହେଁ । ଏହା ଯେମିତି ତୁମ୍ଭେମାନେ ଗୋଟାଏ ବଂଶର ମୂଳଭିତ୍ତି ପକାଇଛ ! ବୁଝୁଛ ନା ?

ଜର୍ଜେଶ କହିଲେ—କିନ୍ତୁ ଏପରି ଦୃଷ୍ଟାନ୍ତ ତ ଆମ୍ଭର ଅନେକ ଅଛି ।

ମନ୍ତ୍ରୀ କହିଲେ—ସେହିସବୁ ଦୃଷ୍ଟାନ୍ତରେ ମୋର ପ୍ରୟୋଜନ ନାହିଁ । ଏହି ରାଜ୍ୟର କୌଣସି ବିଭାଗରେ ଏପରି ପ୍ରିୟାପ୍ରୀତି ତୋଷଣ ମୁଁ ଅନ୍ତତଃ ସହ୍ୟ କରି ପାରିବି ନାହିଁ । ଯେଉଁଠି ଏପରି ଘଟଣା ଦେଖିବି, ତାହା ବିରୁଦ୍ଧରେ ମୁଁ ସଂଗ୍ରାମ କରିବି, ଏହା ମୋର ପଣ ! ପରିବାର ରକ୍ଷଣା-ବେକ୍ଷଣ—ନାଁ, ଆଦୌ ନୁହେଁ ।

ନିଶ୍ୱାସ ଛାଡ଼ି ଜର୍ଜେଶ କହିଲେ—ଖୁବ୍ ଭଲ କଥା, ସନ୍ଦେହ ନାହିଁ । କିନ୍ତୁ ଏହା ଦ୍ୱାରା ଶୋଷଣ ଅବିଚାର କରା ହେବ ନାହିଁ ନା ? ଯୋଗ୍ୟ ଲୋକ ଉପରେ ଅବିଚାର ? ଏ ପଣ ରକ୍ଷା କରିବା ପାଇଁ ଆପଣଙ୍କୁ ଅଯୋଗ୍ୟ ଲୋକ ନେବାକୁ ହେବ !

—ଅଯୋଗ୍ୟ ! ତୁମେ ଭାବ, ତୁମର ପୁଅ ଓ ଜ୍ୱାଇଁ, ଏହିମାନଙ୍କର ହିଁ କେବଳ ଯୋଗ୍ୟତା ଅଛି ? ଯୋଗ୍ୟତା ହେତୁ ଟୁକଣ୍ଡି କରୁଛନ୍ତି, ଆଉ ବାକି ସମସ୍ତେ ଅଯୋଗ୍ୟ ?

ଜର୍ଜେଶ କହିଲେ—ତା ନୁହେଁ । ମାନେ, ଟୁଲିସ ସହିତ ମୋ ଝିଅର ବିବାହ ହେବା ପୂର୍ବରୁ ସେ ଥିଲା ଏକାଡେମୀରେ ମୋର ଛାତ୍ର ଏବଂ ଖୁବ୍ ମେଧାବୀ ଛାତ୍ର ।

ମନ୍ତ୍ରୀ କହିଲେ—ଯେଉଁ ପିଲାଟିକୁ ଏହି ନୂଆ ଟୁକଣ୍ଡିରେ ନେଉଛି, ତାହାର ଯୋଗ୍ୟତା ସମ୍ବନ୍ଧରେ କେହି ଗୋଟିଏ ବି ପ୍ରଶ୍ନ କରି ପାରିବେ ନାହିଁ, ଜର୍ଜେଶ । ତାହାର ନାମ ଶୁଣିଲେ ତୁମେ ବି ସ୍ୱୀକାର କରିବ, ସେ ଅଯୋଗ୍ୟ ନୁହେଁ ।

ସପ୍ରଶ୍ନ ଦୃଷ୍ଟିରେ ଜର୍ଜେଶ ମନ୍ତ୍ରୀଙ୍କ ଆଡ଼କୁ ଅନାଇଲେ ।

ମନ୍ତ୍ରୀ କହିଲେ—ଏ ପିଲାଟିର ନାମ ପଲ୍ ରାଜ, ସେ ବର୍ତ୍ତମାନ ନର୍ମାଲ ସ୍କୁଲରେ ଟୁକଣ୍ଡି କରୁଛି ।

ଜନେର୍ଶଲ୍ର ଭ୍ରୁ କୁଞ୍ଚିତ ହେଲା । ସେ କହିଲେ—ପଲ୍ ଗ୍ରାଜ ?

—ହଁ, ତାହାର ନିବନ୍ଧ ପଢ଼ିଛ ?

—ପଢ଼ିଛି ।

—କେମିତିକା ଲେଖିଛି ?

—ଚମତ୍କାର !

ମନ୍ତ୍ରୀ କହିଲେ—ତା ସମ୍ବନ୍ଧରେ ମୁଁ ଯେଉଁ ରିପୋର୍ଟ ପାଇଛି, ଖୁବ୍ ଭଲ ।

—ହଁ, କିନ୍ତୁ ବୟସରେ ନିହାତି ପିଲା ।

—ଭଲ ତ । ଶିକ୍ଷା ବିଭାଗରେ ଆମର ତରୁଣ କିଶୋର-ମାନଙ୍କୁ ହିଁ ଦରକାର । ଯେତେବେଳେ ତୁମର ଜୋଇଁକୁ ନ ନେଇ ପଲ୍‌କୁ ଆମେ ନେଉଛୁଁ, ସେତେବେଳେ ନିଶ୍ଚୟ ଅଯୋଗ୍ୟର ନିର୍ବାଚନ ହେଉଛି, ଏ କଥା ଅବଶ୍ୟ କହିବ ନାହିଁ !

—କିନ୍ତୁ ମୋର ସ୍ତ୍ରୀ ମନରେ ଖୁବ୍ ଆଘାତ ପାଇବ ।

—ସେଥିପାଇଁ ମୁଁ ଖୁବ୍ ଦୁଃଖିତ । କିନ୍ତୁ ସରକାରୀ ଚାକିରୀରେ ଲୋକ ନିଯୁକ୍ତ କରିବାକୁ ହେଲେ ତାହାର ଯୋଗ୍ୟତା ପ୍ରତି ନଜର ରଖିବାକୁ ହେବ, ଶ୍ରୀମତୀ ମଣ୍ଟେଗ୍ରଭିଏସଙ୍କ ମନର କଥା ଖାଲି ଭାବିଲେ ଚଳିବ ନାହିଁ । ମୁଁ ଜୁଲ୍‌ସର ଦାବୀ ଅବଶ୍ୟ ଅସ୍ୱୀକାର କରୁ ନାହିଁ ।

—ଜୁଲ୍‌ସ ଯେ ଏ ଚାକିରୀ ପାଇଲା ନାହିଁ, ସେଥିପାଇଁ ମୁଁ ଖେସାରତ ଦାବୀ କରିପାରେ ନାହିଁ ? ତାହାର କୌଣସି ବ୍ୟବସ୍ଥା ?

—ଜୁଲ୍‌ସ ଏକାଡେମୀରେ ଚାକିରୀ କରୁଛି ନା ?

— ସେ ଭୁବନେଶ୍ୱରରେ ଆଜକୁ ଛଅ ବର୍ଷ ହେଲା ଅଛି ।
ଉତ୍କଳରୁ ଡିଗ୍ରୀ ପାଇଛି । ବୟସ ପଇଁତିରିଶ ବର୍ଷ । ବର୍ତ୍ତମାନ ସ୍କୁଲରେ ଶିକ୍ଷକତା କରୁଛି । ତାକୁ ଅଧ୍ୟାପକ କରିଦେଇ ପାରନ୍ତେ ନାହିଁ ? ଭୁବନେଶ୍ୱରରେ ଅଧ୍ୟାପକର ସ୍ଥାନ ନାହିଁ । ସେଠାରେ କୌଣସି ସ୍ଥାନର ବ୍ୟବସ୍ଥା ? ତାହାହେଲେ ବୃଦ୍ଧ ବୟସରେ ସ୍ତ୍ରୀର ଗଞ୍ଜଣାରୁ ଅନ୍ତତଃ ମୋତେ ଶାନ୍ତି ମିଳିବ ।

ମନ୍ତ୍ରୀ କଣ ଭାବିଲେ, ଆଉ କହିଲେ — ବୁଝିଛି । ବେଶ୍, ମୁଁ କଥା ଦେଉଛି, ଗୁଲସ ପାଇଁ ମୁଁ ସେହି ବ୍ୟବସ୍ଥା କରିଦେବି ।

ଜଗଦୀଶ କହିଲେ — ଖାଲି କଥା ଉପରେ ତ ନିର୍ଭର କରିହୁଏ ନାହିଁ । ମୁଁ ପକ୍କା ବ୍ୟବସ୍ଥା ଚାହେଁ ।

ମନ୍ତ୍ରୀ କହିଲେ — ପକ୍କା କଥା ଦେବାକୁ ହେଲେ ତା ପୂର୍ବରୁ ସୁପିରିୟର କାଉନ୍‌ସିଲ ସହିତ ପରାମର୍ଶ ପ୍ରୟୋଜନ ।

— ଆପଣ ଇଚ୍ଛା କଲେ ବର୍ତ୍ତମାନ ପକ୍କା କଥା ଦେଇ ପାରନ୍ତି । ଫ୍ୟାକଲଟି, ସୁପିରିୟର କାଉନ୍‌ସିଲ — ଏସବୁ ଆପଣଙ୍କର କୌଣସି କଥାରେ 'ନା' କହି ପାରିବେ ନାହିଁ — ମୁଁ ଜାଣେ ।

— ମୋ କଥା ଉପରେ ନିର୍ଭର କରିପାର, ଜଗଦୀଶ ।

ଜଗଦୀଶ କହିଲେ — ତାହା ହେଲେ ଫେରିଯାଇ ମୋ ସ୍ତ୍ରୀକୁ ମୁଁ କ'ଣ କହିବି ?

ମନ୍ତ୍ରୀ କହିଲେ — ବେଶ୍, ପକ୍କା କଥା ଦେଉଛି, ତୁମର ଜୋଇଁ ଗୁଲସକୁ ମାସକ ଭିତରେ ଅଧ୍ୟାପକର ସ୍ଥାନ ଦେବି ।

ମନ୍ତ୍ରୀ ଚୌକିରୁ ଉଠି ଠିଆ ହେଲେ — ଜଗଦୀଶ ବି ଉଠି ପଡ଼ିଲେ । ମନ୍ତ୍ରୀ କହିଲେ — ପିଲାକୁ ଏ ଚାକିରୀ ଦିଆ ଯାଉଛି ବୋଲି ବର୍ତ୍ତମାନ ତୁମ ମନରେ ଆଉ କୌଣସି ଅଭିମାନ ନାହିଁ ତ ?

ଜର୍ଜେଁଶ କହିଲେ—ନା, ନା । ଆପଣ ଯୋଗ୍ୟ ଲୋକକୁ ତ ଏ ଗୃକଶଠା ଦେଉଛନ୍ତି । ମୋର ସ୍ତ୍ରୀ ବ ଆପଣଙ୍କର ଏ ନିର୍ବାଚନରେ ଖୁବ୍ ଖୁସି ହେବ । କାରଣ, ପଲ୍ ସମ୍ଭବତ ମୋ ସାନ ଝିଅର ବଶ୍ୱାଘର ହେଉଛି, ବବାହ କଥା ପକ୍କା ।

— ପଲ୍ କ୍ଲେଶିୟୋ

# କାନ୍ଥ

## — ଏକ —

ଦୁଆରେ ଧକ୍କା ମାରିବାର ଶବ୍ଦ ହେଲା । ଶ୍ରୀମତୀ ଦାରବେଦାତ୍ ଚମକି ପଡ଼ି, କ୍ଷୀଣ କଣ୍ଠରେ କହିଲେ, "ଭିତରକୁ ଆସ ।"

ଟିକିଏ ବିରକ୍ତ ମନରେ, ସେ ଭାବୁଥିଲେ ଯେ ଏକ୍ଷଣି ତାଙ୍କର ସ୍ୱାମୀ ଆସି ପହଞ୍ଚି ଦାଣ୍ଡ କବାଟ ଖଡ଼ଖଡ଼ କରିବେ । ସପ୍ତାହର ଅନ୍ୟ ଦିନଗୁଡ଼ିକରେ ସେ ଖାଲି ସନ୍ଧ୍ୟା ବେଳେ ଆସନ୍ତି, ନୀରବରେ ତାଙ୍କ ଭ୍ରୂ ଚୁମ୍ବନ କରନ୍ତି ଏବଂ ଖଣ୍ଡିଏ ଆରାମ ଚୌକିରେ ତାଙ୍କ ସାମନାରେ ବସି ବହି ପଢନ୍ତି । କିନ୍ତୁ ଗୁରୁବାରଟା ହେଲା ଶ୍ରୀଯୁକ୍ତ ଦାରବେଦାତ୍‌ଙ୍କ ବାରି ଏହି ଦିନ ସାଧାରଣତଃ ତିନିଟାଠାରୁ ଚାରିଟା ଯାଏଁ, ଘଣ୍ଟାଏ ସେ ନିଜ ଝିଅପାଖରେ କଟାନ୍ତି । ଯିବା ଆଗରୁ ସେ ନିଜ ସ୍ତ୍ରୀଙ୍କୁ ଦେଖା କରନ୍ତି, ଏବଂ ଉଭୟେ ବିତୃଷ୍ଣ ମନରେ ନିଜ ଜାମାତା ସମ୍ବନ୍ଧରେ ଆଲୋଚନା କରନ୍ତି । ଗୁରୁବାରର ଏହିସବୁ କଥାବାର୍ତ୍ତା ଶ୍ରୀମତୀ ଦାରବେଦାତଙ୍କୁ ଅବସନ୍ନ କରି ପକାଏ, କାରଣ ଏହାର ବିନ୍ଦୁ-ବିସର୍ଗ ସୁଦ୍ଧା ତାଙ୍କୁ ଆଗୁଆ

ଦେଖାଯାଏ । ଆଜିର ଆଲୋଚ୍ୟ ଗୁରୁବାରଟି ତାଙ୍କ ପକ୍ଷରେ ଅନ୍ୟାନ୍ୟ ଦିନ ଠାରୁ ଅଧିକ ଜଘନ୍ୟ ଥିଲା ଆଜି ତାଙ୍କୁ ନିଜ ସ୍ୱାମୀଙ୍କ ପାଖରେ ଇଭ୍‌ର ସ୍ୱୀକାରୋକ୍ତି, ବିଷୟ ପୁଣି କହିବାକୁ ପଡ଼ିବ, ଏବଂ ଏହା ଶୁଣି ତାଙ୍କ ସ୍ୱାମୀଙ୍କର ବିପୁଳ ବପୁଟି କିଭଳି କ୍ରୋଧରେ ଫୁଲି ଉଠିବ ତାହା ବି ଦେଖିବାକୁ ପଡ଼ିବ । ଏହା ଚିନ୍ତା କଲା ମାତ୍ରେ ଶ୍ରୀମତୀ ଦାରବେଦାନ୍ତଙ୍କ ଦେହରୁ ଝାଳ ବହିଗଲା ।

ଶ୍ରୀଯୁକ୍ତ ଦାରବେଦାନ୍ତ ଗୋଡ଼ ଟିପିଟିପି ପ୍ରବେଶ କଲେ । ପ୍ରତି ଗୁରୁବାରରେ ଯେମିତି କହନ୍ତି, ସେ ଆଜି ବି କହିଲେ, "ମୁଁ ଇଭ୍‌କୁ ଦେଖିବାକୁ ଯାଉଛି ।" ଶ୍ରୀମତୀ ଦାରବେଦାନ୍ତ ତାଙ୍କ ଆଡ଼କୁ ଚାହିଁ ସସ୍ମିତ ବଦନରେ କହିଲେ, "ମୋ ପାଇଁ ତାକୁ ଚୋଟିଏ ଚୁମ୍ବନ ଦେବ ।"

ଶ୍ରୀଯୁକ୍ତ ଦାରବେଦାନ୍ତ ଉତ୍ତର ଦେଲେ ନାହିଁ ଏବଂ ଦୁଃଶ୍ଚିନ୍ତାରେ ତାଙ୍କ କପାଳ ରେଖାଙ୍କିତ ହୋଇଗଲା—ପ୍ରତି ଗୁରୁବାରରେ ଠିକ୍ ଏହି ସମୟରେ ତାଙ୍କର ଯେମିତି ହୁଏ । "ତା ପାଖରୁ ଫେରି ଆସିବା ବେଳେ ଭାବୁଛି, ଫ୍ରାଙ୍କଙ୍କ ସାଙ୍ଗରେ ଥରେ ଦେଖା କରିବି । ବ୍ୟାପାରଟିର ଗୁରୁତ୍ୱ ବୁଝାଇ ସେ ଇଭ୍ ସାଙ୍ଗରେ କଥାବାର୍ତ୍ତା କରୁ । କଥାଟା ଥରେ ତାକୁ ବୁଝାଇବାକୁ ସେ ଚେଷ୍ଟା କରନ୍ତୁ ହେଲେ !"

ସେ ଡକ୍ଟର ଫ୍ରାଙ୍କଙ୍କ ଠାକୁ ଘନଘନ ଯାଆନ୍ତି । କିନ୍ତୁ ବୃଥା । ଶ୍ରୀମତୀ ଦାରବେଦାନ୍ତ ଭ୍ରୂ ଉତ୍ତୋଳନ କଲେ । ସେ ତାଙ୍କ ଓଷ୍ଠରେ ସ୍ୱୀକୃତି ପ୍ରଦାନ କରୁଥିଲେ ବି ଅଧର କୋଣରୁ 'ନା'ର ଆଭାସ ମିଳୁଥିଲା ।

"ଇଭ୍ ଠାରୁ ତାକୁ ଜବରଦସ୍ତି କାଢ଼ି ନେବା ପାଇଁ କୌଣସି ଉପାୟ ବାହାର କରିବାକୁ ହେବ ।"

"ଆଗର ତ ମୁଁ ତୁମକୁ କହିଛି, ଏହା ଅସମ୍ଭବ । ତାହା ଛଡ଼ା, ସେମିତି ସୁବିଧାଜନକ ଆଇନ କାନୁନ ମଧ୍ୟ ନାହିଁ । ସେ ଦିନ ଫ୍ରାଙ୍କ୍ ମୋତେ କହୁଥିଲେ ଯେ, ସେମାନଙ୍କର ତାଙ୍କ ପରିବାର ସହିତ ଖୁବ୍ ଗୋଳମାଳ ହୋଇଛି : ସେମାନେ କିଛି ସ୍ଥିର କରିପାରୁ ନାହାନ୍ତି, ଆଜି ସେମାନେ ଗୃହାନ୍ତ ରୋଗୀଟି ଘରେ ରହୁ । ତେଣୁ ଡାକ୍ତରଙ୍କର ହାତ ବାନ୍ଧି ହୋଇ ଯାଇଛି । ସେମାନେ କେବଳ ପରାମର୍ଶ ଦେଇ ପାରନ୍ତି । ଏପୁ। ତ ? ପିଫ୍ଲେର୍‌ର ଦୁର୍ନାମ ରଟନା ନ ହେଲେ, ଇଭ୍ ତାକୁ ଛାଡ଼ି ଯାଇ ପାରିବ ନାହିଁ ।"

ଶ୍ରୀମତୀ ଦାଇବେଦାତ୍ କହିଲେ, "ଆଜି ସେ କଥା ତ କିଛି କାଳରେ ହେଇପାଉ ନାହିଁ ।"

"ନା," କହି ସେ ଦର୍ପଣ ଆଡ଼କୁ ବୁଲିପଡ଼ି, ଦାଢ଼ୀ କୁଣ୍ଡାଇବାକୁ ଲାଗିଲେ । ଶ୍ରୀମତୀ ଦାଇବେଦାତ୍ ଅପ୍ରୀତ ନୟନରେ ନିଜ ସ୍ୱାମୀଙ୍କର ସବଳ ଉତ୍କ୍ରମ ଗ୍ରୀବା ଉପରେ ଦୃଷ୍ଟି ନିକ୍ଷେପ କଲେ ।

ଶ୍ରୀଯୁକ୍ତ ଦାଇବେଦାତ୍ କହିଲେ; "ଯଦି ଇଭ୍ ଆଜି ଭଳି ଦିନ ଏମିତି କରେ, ତାହାହେଲେ ତାର ପାଗଳାମି ପିଫ୍ଲେର୍‌ର ପାଗଳାମିକୁ ଟପିଯିବ । ଏହା ଭୟଙ୍କର ଅସ୍ୱାସ୍ଥ୍ୟକର । ସେ ତାକୁ ଦଣ୍ଡେ ହେଲେ ଛାଡ଼ି କୁଆଡ଼େ ଯାଏ ନାହିଁ । ଖାଲି ତୁମକୁ ଯାହା ଟିକଏ ଦେଖା କରିବାକୁ ଆସେ । ଆଉ କାହା ସାଙ୍ଗରେ ସେ ଦେଖା କରେ ନାହିଁ । ତାଙ୍କର ସେହି କୋଠରୀଟିରେ ଦମ୍ ବନ୍ଦ ହୋଇଯାଏ । ଇଭ୍ ତ ଆଦୌ ଝରକା ଖୋଲେ ନାହିଁ, କାରଣ ପିଫ୍ଲେର୍ ତାହା ଚାହେଁ ନାହିଁ । ଯେମିତି ରୋଗୀକୁ ପଚାରି ସବୁ କିଛି କରିବା ଦରକାର ! ମୋର ଅନୁମାନ, ସେମାନେ ବୋଧହୁଏ ଧୂପ ଦିଅନ୍ତି । ସତେ କି ସେଟା ଗୋଟାଏ ଗୀର୍ଜା ! ସତରେ,

ବେଳେ ବେଳେ ମୁଁ ତ ତାକୁ ହୋଇପାଏଁ ତୁମେ ତ ଜାଣ, ତା ନୟନରେ ଯେମିତି ମାଦକତା ପୂରି ରହିଛି ସବୁ ବେଳେ ।”

"ମୁଁ ତ ଲକ୍ଷ୍ୟ କରି ନାହିଁ," ଶ୍ରୀମତୀ ଦାରବେଦାତ କହିଲେ । "ସେ ତ ମୋତେ ମାମୁଲି ଧରଣର ମାଲୁମ ହୁଏ । ବରଂ ସେ ହମର୍ଷ ଦେଖା ଯାଏ ।"

"ଇଭ୍ରି ମୁହଁ ମଉଳି ଭଳି ଦିଶିଲାଣି । ସେ କ'ଣ ଶୋଉ ନାହିଁ କି ? ଆଉ ଖାଉ ନାହିଁ କି ? କିନ୍ତୁ ଆମର ତ ଏସବୁ କଥା ତାକୁ ପଚାରିବାର ନୁହେଁ । ମାତ୍ର ମୋର ମନେ ହୁଏ, ପିପ୍ରେର୍ ଭଳି ଗୋଟାଏ ଲୋକର ପାଖରେ ଶୋଇଲେ, ରାତି ସାରା ତ ତା'ର ଆଖି ପତା ପଡ଼ୁ ନ ଥିବ...।" ସେ କାନ୍ଧ ହଲାଇଦେଲେ । "ମୋତେ ଏତିକି ହତିହ ବୋଧ ହେଉଛି ଯେ ଆମେ ତାର ପିତାମାତା ହୋଇ ସୁଦ୍ଧା ତାକୁ ରକ୍ଷା କରିବାର ଅଧିକାର ଆମ ହାତରେ ନାହିଁ । ମୋ ମତରେ, ଫ୍ରାଙ୍କଫ୍‌ ପିପ୍ରେରକୁ ବରଂ ଭଲ ଭାବରେ ଦେଖାଶୁଣା କରି ପାରିବ । ସେଠାରେ ଗୋଟାଏ ବଡ଼ ଉଦ୍ୟାନ ଅଛି ଏବଂ ତା'ର ସମ ଶ୍ରେଣୀୟ ଲୋକମାନେ ବି ସେଠାରେ ଅଛନ୍ତି । ତା' ପରି ଲୋକମାନେ ତ ପିଲା ! ତାକୁ ସେମାନଙ୍କ ପାଖରେ ଏ ଥର ଛାଡ଼ି ଦେଇଦେବ । ମୁଁ ତ କହିବି, ତାରି ନିଜର ଭଲ ପାଇଁ, ମୂଳରୁ ତାକୁ ସେଠାରେ ଛାଡ଼ି ଦିଆ ଯିବାର ଥିଲା ।"

ମୁହୂର୍ତ୍ତକ ପରେ, ସେ ପୁଣି କହିଲେ, "ମୁଁ ତୁମକୁ କହି ଦେଉଛି, ଏକାକମା ପିପ୍ରେର୍ ସାଙ୍ଗରେ ତା'ର ରାତି କଟାଇବା ମୁଁ ପସନ୍ଦ କରେ ନାହିଁ । ଧର ଯଦି କିଛି ହୋଇଗଲା—ପିପ୍ରେର ଯେମିତି ଧୂର୍ତ୍ତ ।"

ଶ୍ରୀମତୀ ଦାରବେଦାତ କହିଲେ, "ମୁଁ ତ ଜାଣେ ନାହିଁ, ଆମର ବିଚଳିତ ହେବାର କିଛି କାରଣ ଅଛି ବୋଲି । ସେ ତ

ସବୁ ବେଳେ ଯେମିତି ଦିଶେ । ସବୁ ବେଳେ ତ ସେ ସମସ୍ତଙ୍କୁ ଅଡ଼ାରେ ଉଡ଼ାଇଦିଏ । ବିଚାରା ଭାରି ଅଭାଗା । ତା ଗର୍ବର ଫଳ ଏ । ସେ ଭାବେ, ସେ ଆମ ସମସ୍ତଙ୍କ ଠାରୁ ଖୁବ୍ ଚାଲାକ । ବରଂ ଏହା ତା' ପକ୍ଷରେ ଏକ ଆଶୀର୍ବାଦ ଯେ ନିଜର ଅବସ୍ଥା ସେ ଦେଖି ପାରୁ ନାହିଁ ।"

ଇଭ୍‌ର ବିବାହର ପ୍ରଥମ କେତେ ଦିନ ଶ୍ରୀମତୀ ଦାର-ବେଦାତ ତାଙ୍କୁ କହିଥିଲେ, ତାଙ୍କ ଜାମାତା ସମ୍ଭବତଃ ସେ ଯେମିତି ଶୀଘ୍ର ଟିକିଏ ଘନିଷ୍ଠତା ସ୍ଥାପନ କରି ପକାଏ । ମାତ୍ର ଶ୍ରୀଯୁକ୍ତ ଦାର-ବେଦାତ ଏହାକୁ ଅବଶ୍ୟ ସମର୍ଥନ ଜଣାଇ ନ ଥିଲେ ।

ସେ ନିଜ କଥା କହି ଚାଲିଲେ, "ଫ୍ରାଙ୍କ୍ ମୋତେ ନେଇ ସେହି ସ୍ଥାନଟି ଦେଖାଇ ଦେଇଛି । ଖୁବ୍ ଚମତ୍କାର ସ୍ଥାନ । ରୋଗୀ-ମାନଙ୍କର ବିଶ୍ରାମକାମରା ଅଛି — ସେଥିରେ ଚମଡ଼ା ଆରାମ-ଚୌକି, ଦିବା-ଶଯ୍ୟା ଇତ୍ୟାଦି ଥାଏ । ସେମାନଙ୍କର ଟେନିସ ଖେଳିବା ପାଇଁ ପଡ଼ିଆ ଅଛି । ଗୋଟାଏ ସନ୍ତରଣ-ସରୋବର ମଧ୍ୟ ସେମାନେ କରିବାକୁ ବସିଛନ୍ତି ।"

ଝରକା ଆଗରେ, ବାହାରକୁ ଅନାଇ, ସେ ସ୍ଥାଣୁ ଭଳି ଠିଆ ହୋଇଥିଲେ । ହଠାତ୍ ଚୌକିଟି ଉପରେ ଭରା ଦେଇ ସେ ଅନାୟାସରେ ବୁଲି ପଡ଼ିଲେ, କାନ୍ଧ ନଇଁଗଲା, ପକେଟରେ ହାତ ରହିଥିଲା । ଶ୍ରୀମତୀ ଦାରବେଦାତଙ୍କର ମନେ ହେଲା ଯେମିତି ତାଙ୍କ ଦେହରୁ ଏ କ୍ଷଣି ଝାଳ ବହିଯିବ ପ୍ରତି ଥର ସେହି ଏକା କଥା । ଶ୍ରୀଯୁକ୍ତ ଦାରବେଦାତ ଏତେ ବେଳେ ପିଞ୍ଜରା-ବନ୍ଧ ଭାଲୁ ଭଳି ଏ ପାଖରୁ ସେ ପାଖ ଯାଏ ଟହଲ ମାରୁଥାନ୍ତି ଏବଂ ପ୍ରତି ପଦକ୍ଷେପରେ ତାଙ୍କ ଜୋତାର ମଚ ମଚ ଶବ୍ଦ ଶୁଣା ଯାଉଥାଏ ।

"ତୁମକୁ ନେହୁରା ହେଉଛି, ଟିକିଏ ବସିପଡ଼ ! ତୁମେ ମତେ କ୍ଲାନ୍ତ କରି ଦେଉଛ ।" ଟିକିଏ ଇତସ୍ତତ ହୋଇ, ସେ ପୁଣି କହିଲେ, "ଗୋଟାଏ ଦରକାରୀ କଥା ତୁମକୁ କହିବାକୁ ଅଛି ।"

ଶ୍ରୀଯୁକ୍ତ ଦାରବେଦାତ୍ ଆରାମ-ଚୌକିରେ ବସିପଡ଼ି, ଆଣ୍ଠୁ ଉପରେ ହାତ ରଖିଲେ । ଗୋଟାଏ ମୃଦୁ ଶିହରଣ ଶ୍ରୀମତୀ ଦାରବେଦାତଙ୍କ ମେରୁଦଣ୍ଡ ଦେଇ ଉପରକୁ ଉଠିଗଲା ବେଳେ ଆସିଛି, ତାଙ୍କୁ ଶୁଣାଇଦେବାକୁ ହେବ ।

"ତୁମେ ତ ଜାଣ", ଅପ୍ରସ୍ତୁତ ଭାବରେ ଟିକିଏ କାଶି ଶ୍ରୀମତୀ କହିଲେ—"ମଙ୍ଗଳବାର ଦିନ ମୋର ଇଭ୍ ସାଙ୍ଗରେ ଦେଖା ହୋଇଥିଲା ।"

"ହୁଁ... ।"

"ଆମେ ଢେର୍ ବିଷୟରେ କଥା ହେଲୁ । ସେ ତ ଖୁବ୍ ସୁନ୍ଦର ଦିଶୁଥିଲା । ତା'ପରେ ପିଯେରର୍ ବିଷୟରେ ତାକୁ ଟିକିଏ ପଚାରିବାରୁ ଦେଖିଲି—" ପୁଣି ଅପ୍ରସ୍ତୁତ ହୋଇ, ସେ ଯୋଗ କଲେ—"-ଯେ ସେ ପିଯେରର ପ୍ରତି ଅତିଶୟ ଆସକ୍ତ ।"

"ମୁଁ ତ ସେୟା ଖୁବ୍ ଭଲ ଭାବରେ ଜାଣେ," ଶ୍ରୀଯୁକ୍ତ ଦାରବେଦାତ୍ କହି ପକାଇଲେ ।

ଏଥିରେ ଶ୍ରୀମତୀ ଦାରବେଦାତ୍ ଟିକିଏ ବିରକ୍ତ ହେଲେ; ସବୁ ବେଳେ ଏହିପରି ବିଶଦ ଭାବରେ ତାଙ୍କୁ କଥା କହିବାକୁ ହୁଏ ।

"କିନ୍ତୁ ମୋର କହିବାର କଥା," ସେ କହିଲେ—"ଆମେ ଯାହା ଭାବୁଛୁ କଥାଟା ସେୟା ନୁହେଁ । ଇଭ୍‌ର ତା' ପ୍ରତି ଆସକ୍ତି ଭିନ୍ନ ଭାବରେ ।"

ଉଦ୍‌ବିଗ୍ନ ଦୃଷ୍ଟିରେ ଚାହିଁ, ଶ୍ରୀଯୁକ୍ତ ଦାରବେଦାର୍ ଥମ ଥମ ହୋଇ କହିଲେ, "ତୁମେ କଣ ସବୁ କହିବାକୁ ଚାହଁ, ଶୁଣେ ?"

ଶ୍ରୀମତୀ ଦାରବେଦାର୍ କହିଲେ, "ଚାର୍ଲସ, ମୋତେ କ୍ଳାନ୍ତ କର ନାହିଁ । ତୁମର ବୁଝିବା ଉଚିତ, ମା'ଆ ଭାବରେ କେତେକ କଥା ମୁଁ ଏଠାରେ ଖୋଲି ଖୋଲି ପ୍ରକାଶ କରି ପାରୁ ନାହିଁ ।"

ଶ୍ରୀଯୁକ୍ତ ଦାରବେଦାର୍ ବିରକ୍ତ ହୋଇ କହିଲେ, "ତୁମେ କଣ ଯେ କହୁଛ, ମୁଁ ତା'ର ଅନୁସ୍ୱାର ବିସର୍ଗ କିଛି ବୁଝି ପାରୁ ନାହିଁ । ତୁମେ କଣ କହିବାକୁ ଚାହଁ... ।"

"ହଁ !" ସେ କହିଲେ ।

"ତଥାପି ସେମାନେ...ଏକ୍ଷଣି, ତଥାପି...?"

"ହଁ ! ହଁ ! ହଁ !" ତିନୋଟି ବିତୃଷ୍ଣ ଓ ଶୁଷ୍କ କ୍ଷୁଦ୍ର ଶବ୍ଦରେ ସେ କହିଲେ ।

ଶ୍ରୀଯୁକ୍ତ ଦାରବେଦାର୍ ହାତ ଲମ୍ବାଇ ଦେଲେ, ମୁଣ୍ଡ ନୁଆଁଇଲେ ଏବଂ ନୀରବ ରହିଲେ ।

ଚିନ୍ତାକୁଳ ହୋଇ, ତାଙ୍କ ସ୍ତ୍ରୀ କହିଲେ, "ଚାର୍ଲସ, ହୁଏତ ଏହା ମୋର ତୁମକୁ କହିବା ଅନୁଚିତ ! ତଥାପି ମୁଁ ଏହାକୁ ଚୁପି ରଖି ପାରିଲି ନାହିଁ ।"

"ଆମ ଝିଅ," ସେ ଧୀରେ ଧୀରେ କହିଗଲେ—'ଏଣ୍ଟୁ ପାଗଳାଟା ସାଙ୍ଗରେ ! ସେ ତ ଆଜି ତାକୁ ଚିହ୍ନି ପାରୁ ନାହିଁ । ତାକୁ ଆଗାଥା ବୋଲି ଡାକୁଛି । ଇଭ୍ ତାର ଆତ୍ମ ମର୍ଯ୍ୟାଦାର କାଣ୍ଡଜ୍ଞାନ ସବୁ ହରାଇ ବସିଲାଣି ।"

ମଥା ଟେକି ସେ କଠିନ ଦୃଷ୍ଟିରେ ତାଙ୍କ ସ୍ତ୍ରୀଙ୍କ ଆଡ଼କୁ ଅନାଇଲେ । "ତୁମେ ଠିକ୍ ଜାଣ, ତୁମେ ଭୁଲ୍ କରୁ ନାହିଁ ତ ?"

"ତିଳେ ହେଲେ ମୋ ସନ୍ଦେହର ନାହିଁ," ସେ ଶୀଘ୍ର କହି ପକାଇଲେ । "ତୁମ ପରି ମୋର ବି ତାକୁ ପରତେ ଆସୁ ନାହିଁ । ଏବେ ବି ଜୁହେଁ । ସେହି ପାଗଳଟା ଯେ ତା ଦେହ ଛୁଇଁଥିବ, ଏହା ଭାବିଲା କ୍ଷଣି···ତେଣୁ··· ।" ସେ ଦୀର୍ଘ ନିଶ୍ୱାସ ଗୁଡ଼ି କହିଲେ, "ମୋର ଅନୁମାନ, ତା'ର ବଳରେ ସେ ଇଭ୍‌କୁ ଟାଣି ଧରିଛି ।"

"ସେ ଯେତେବେଳେ ଇଭ୍‌କୁ ଗ୍ରହଣ କରିବା ପାଇଁ ଆମ ପାଖକୁ ଆସିଥିଲା, ସେତେବେଳେ ମୁଁ ତୁମକୁ ଯାହା କହିଥିଲି ତୁମର ମନେ ଅଛି ତ ?" ଶ୍ରୀଯୁକ୍ତ ଦାରିବେଦାତ୍ ଚିତ୍କରିଲେ, "ମୁଁ ତୁମକୁ କହିଥିଲି ନା, ମୁଁ ମନେ କରୁଛି, ଇଭ୍ ତା ଉପରେ ଖୁବ୍ ପ୍ରସନ୍ନ । ତୁମେ ମୋ କଥା ମାନିଲ ନାହିଁ ।" ଖୁବ୍ ବେଶି ତଳକୁ ମୁହଁ ପୋତି, ସେ ହଠାତ୍ ଟେବୁଲକୁ ବାଡ଼େଇଲେ । "ଏହା ହେଲା ମନୋବିକାର ! ସେ ତାକୁ ଭିଡ଼ି ଧରେ, ତାକୁ ଚୁମ୍ବନ କରେ ଏବଂ ଆଗାଥା ବୋଲି ଡାକେ, ଉଡ଼ନ୍ତା ମୂର୍ତ୍ତିମାନଙ୍କ ବିଷୟରେ ଗୁଡ଼ାଏ ଅସଙ୍ଗତ କଥା ବକେ ଏବଂ ଭଗବାନ ଜାଣନ୍ତି ସେ ଆଉ କ'ଣ କରେ ! ଇଭ୍‌ର ତୁଣ୍ଡରୁ କିଛି ପଦେ କଥା ବାହାରେନି ! କିନ୍ତୁ ଏ ଦୁହିଁଙ୍କ ଭିତରେ କିଛି ଅଛି ! ସେ ତା' ପାଇଁ ଅନୁତାପ କରୁ, ତାକୁ ଗୋଟାଏ ସ୍ୱାସ୍ଥ୍ୟ-ନିବାସକୁ ପଠାଇ ଦେଉ, ଆଉ ତା' ସାଙ୍ଗରେ ନିତି ଯାଇ ଦେଖାକରୁ,—ଏ ବେଶ୍ ଚମତ୍କାର ! କିନ୍ତୁ ମୁଁ କଦାପି ଭାବି ନ ଥିଲି···ବିଧବା ।" ସେ ଗମ୍ଭୀର ହୋଇ କହିଲେ, "ମୁଁ ତୁମକୁ ସଫା ସଫା କହି ଦେଉଛି ; ଯଦି ତାର ବୁଦ୍ଧି ବୃତ୍ତି ଥାଏ, ସେ ଜଣେ ପ୍ରେମିକ ଗ୍ରହଣ କରୁ ।"

"ଗେଟ୍ ଚୁଦ୍ଧ, ଗ୍ଲେର୍ସ !" ଶ୍ରୀମତୀ ଦାରବେଦାନ୍ତ ଚିତ୍କାର କଲେ ।

ଟେବୁଲ୍ ଉପରୁ ତାଙ୍କ ଟୋପି ଓ ବେତ ଖଣ୍ଡିକ ଉଠାଇ ନେଇ, ଶ୍ରୀଯୁକ୍ତ ଦାରବେଦାନ୍ତ କହିଲେ, "ତୁମେ ଏକ୍ଷଣି ମୋତେ ଯାହା କହିଲ, ସେଥିରେ ମୋତେ କିଛି ଆଶା ଦେଖାଯାଉ ନାହିଁ । ଯେ କୌଣସି ମତେ, ମୁଁ ତା' ସାଙ୍ଗରେ ଆଜ କଥା ହେବି, କାରଣ ସେଇଟା ମୋର କର୍ତ୍ତବ୍ୟ ।"

ଶ୍ରୀମତୀ ଦାରବେଦାନ୍ତଙ୍କର ଇଚ୍ଛା, ସେ ଏଠାରୁ ଶୀଘ୍ର ଚାଲି ଯାଆନ୍ତୁ ।

ତାଙ୍କୁ ହେମତ ଦେବା ପାଇଁ ସେ କହିଲେ, "ତୁମେ ତ ଜାଣ, ଇଭ୍ କଉଳ ଜଦ୍‌ଖୋର୍ । ସେ ଜାଣେ, ପିୟେର୍ ଭଲ ହେବନାହିଁ । ତଥାପି ଆଜ ସେ ବଡ଼ ଅବାଧ । ସେ ଜଣାଇ ଦେବାକୁ ଚାହେ ନା ଯେ ତାର ଭୁଲ୍ ହୋଇଛି ।"

ଶ୍ରୀଯୁକ୍ତ ଦାରବେଦାନ୍ତ ଅନ୍ୟମନସ୍କ ଭାବରେ ଦାଢ଼ୀ ସାଉଁଳି ସାଉଁଳି କହିଲେ, "ଜଦ୍‌ଖୋର୍ ? ହୋଇପାରେ । ଯଦି ତୁମ କଥା ଠିକ୍ ହୋଇଯାଏ, ଇଭ ଶେଷରେ ହାଲିଆ ହୋଇ ପଡ଼ିବ । ସବୁ ବେଳେ ସେ ହରଷ ନ ଥାଏ କି ବେଶି କିଛି କହେ ନାହିଁ । ମୁଁ ତାକୁ ସମ୍ବୋଧନ କଲେ, ଉଁ କି ଚୁଁ କିଛି ନ କହି ସେ ତା ଶିଥିଳ ହାତଟା ମୋ ଆଡ଼କୁ ବଢ଼ାଇଦିଏ । ସେମାନେ ଏକା ହେବା କ୍ଷଣି, ତାଙ୍କ ନିଜ ରାଜ୍ୟକୁ ଫେରି ଯାଆନ୍ତି । ଇଭ୍ ମୋତେ କହେ, ତାର ମତିଭ୍ରମ ହେତୁ ବେଳେ ବେଳେ ପିୟେର୍ ଚେଁ ଚେଁ ଚିତ୍କାର କରେ, ଯେମିତି କି କିଏ ତା ତଣ୍ଟିଟା କାଟି ଦେଉଛି । ସେ ଦେଖେ ମୂର୍ତ୍ତିମାନେ ଆସି ତାକୁ ଡରାଉଛନ୍ତି । ସେ କହେ, ସେମାନେ ତା ଘର ଚାରିପଟେ ଉଡ଼ି ବୁଲି ତାକୁ ଆଖି ଦେଖାନ୍ତି ।"

ସେ ଦସ୍ତାନା ପିନ୍ଧି ପୁଣି କହିଲେ, "ଇଭ୍ ଦିନେ ନା ଦିନେ କ୍ଳାନ୍ତ ହୋଇ ପଡ଼ିବ । ମୁଁ କହୁ ନାହିଁ ଯେ ସେ ଭଲ ହେବ ନାହିଁ । କିନ୍ତୁ ଧର, ତା' ଆଗରୁ ଯଦି ସେ ନିଜେ ପାଗଳ ହୋଇଯାଏ ? ମୋର ଇଚ୍ଛା, ସେ ଟିକିଏ ବାହାରକୁ ଯାଇ ଏ ଦୁନିଆକୁ ଦେଖୁ ସେ ନିଶ୍ଚୟ କେତେ ସୁନ୍ଦରୀ ତରୁଣୀଙ୍କୁ ଭେଟିବ—କେତେକଙ୍କର ନିଶ୍ଚୟ ଉଜ୍ଜ୍ୱଳ ଭବିଷ୍ୟତ୍ ଥିବ । ଏଠାରେ ସେଠାରେ ଟିକିଏ ବୁଲାଚଲା କଲେ, ଗୋଟିଏ ନୂଆ ଜୀବନ ଧାରଣ କରିବା ପାଇଁ ତାର ନିଶ୍ଚୟ ଆଗ୍ରହ ଜାତ ହେବ ।"

ଆଲୋଚନା ପୁଣି ମୂଳରୁ ଆରମ୍ଭ ହୋଇପାରେ, ଏହି ଭୟରେ ଶ୍ରୀମତୀ ଦାଉଟେବେଦାତ ଆଉ କିଛି ଉତ୍ତର ଦେଲେ ନାହିଁ । ତାଙ୍କ ସ୍ୱାମୀ ତାଙ୍କ ଉପରେ ନଇଁ ପଡ଼ିଲେ ।

ସେ କହିଲେ, "ତାହା ହେଲେ, ମୁଁ ଯାଉଛି ।"

କପାଳଟା ତାଙ୍କ ଆଡ଼କୁ ଟେକି, ଶ୍ରୀମତୀ ଦାଉବେଦାତ କହିଲେ, "ମୋ ପାଇଁ ତାକୁ ଚୁମ୍ବନ ଦେବେ, ଆଉ ତାକୁ ମୋର ହୋଇ କହିବ, ସେ ବଡ଼ ହୀନକପାଳୀ ।"

ସ୍ୱାମୀ ଚାଲିଯିବା କ୍ଷଣି, ଶ୍ରୀମତୀ ଦାଉବେଦାତ ଆରାମ ଚୌକୀରେ ପଡ଼ିଯାଇ, ଆଖି ମୁଦିଦେଲେ ।

× × × ×

ରୁ ଦୁ ବାକ୍‌ରେ ଗୋଟିଏ ପୁରୁଣା କୋଠାର ଷଷ୍ଠ ତାଲାରେ ଇଭ୍ ତା ସ୍ୱାମୀ ସହିତ ବାସ କରୁଥିଲା । ଶ୍ରୀଯୁକ୍ତ ଦାଉବେଦାତ ଧୀରେ ଧୀରେ ୧୧୨ଟି ପାହାଚ ଚଢ଼ିଗଲେ । ଦୁଆର ମୁହଁରେ ଘଣ୍ଟି ଟିପିବା ବେଳକୁ ତାଙ୍କ ଦମ୍ ଫାଟିଯାଇ ନ ଥିଲା ।

ଇଭ୍ ଦୁଆର ଫିଟାଇଲା । ତାର ଚାକରାଣୀ ନ ଥିଲା । କୌଣସି ବାଳିକା ତା ପାଖରେ ରହି ପାରନ୍ତି ନାହିଁ । ସେ ତାକୁ ଚୁମ୍ବନ କରି ପଚାରିଲେ, "କିରେ, କେମିତି ଅଛୁ ?"

•

ଇଭ୍ କମ୍ପିତ ନମ୍ରସ୍ୱରରେ ତାଙ୍କୁ ଅଭ୍ୟର୍ଥନା ଜଣାଇଲା ।

ତାର ଚିବୁକ ଛୁଇଁ, ଶ୍ରୀଯୁକ୍ତ ଦାରବେଦାତ କହିଲେ, "ତୁ ଟିକିଏ ମଳିନ ଦିଶୁଛୁ । ଠିକ୍ ଭାବରେ ବ୍ୟାୟାମ କରୁ ନାହୁଁ କି ?"!

ମୁହୂର୍ତ୍ତିକର ନିସ୍ତବ୍ଧତା ।

ଇଭ୍ ପଚାରିଲା, "ମାଆ ଭଲ ତ ?"

"ଭଲ ନୁହେଁ, କି ବେଶି ଖରାପ ବି ନୁହେଁ । ତୁ ପରା ମଙ୍ଗଳବାର ଦିନ ତାଙ୍କୁ ଦେଖିଥିଲୁ ? ତେବେ, ସେ ସେମିତି ଭଳି ଅଛି । ତୋର ଲୁସୀ ପିଉସୀ କାଲି ତାଙ୍କୁ ଦେଖା କରିବାକୁ ଆସିଥିଲା । ସେ ତାଙ୍କୁ ଦେଖି ଖୁସି ହେଲା । ତାର ଇଚ୍ଛା, ଅତିଥିମାନେ ବରାବର ଆସନ୍ତୁ । ତୋ ଲୁସୀ ପିଉସୀ ସେମିତି ବନ୍ଧକୀ ବ୍ୟବସାୟ ସଂକ୍ରାନ୍ତରେ ପ୍ୟାରିସକୁ ଆସିଥିଲା । ବୋଧହୁଏ ମୁଁ ତୋତେ ସେ ଅଭିପ୍ରାୟ କଥା କହିଥିଲି । ସେ ମୋ ମତ ପଚାରିବାରୁ ମୁଁ ତାକୁ କହିଲି : ବିକି ଦିଅ । ସେ ବି ଜଣେ କ୍ରେତା ପାଇଗଲା : ବ୍ରେଟନେଲ, ତୁ ତ ତାକୁ ଜାଣୁ, ଏବେ ବ୍ୟବସାୟରୁ ସେ ଅବସର ନେଇଛି ।"

ସେ ହଠାତ୍ ରହିଗଲେ : ଇଭ୍ ଶୁଣି ଶୁଣୁ ନ ଥିଲା । ସେ ଦୁଃଖିତ ହେଲେ, ଇଭକୁ ଆଉ କିଛି ଭଲ ଲାଗୁ ନାହିଁ । କହି ବି ନା ! ଆଗରୁ ତା ହାତରୁ ବହି କାଢ଼ି ନେବାକୁ ପଡ଼ୁଥିଲା । ଏକ୍ଷଣି ସେ ଖଣ୍ଡିଏ ସୁଦ୍ଧା ପଢ଼ି ପାରୁ ନାହିଁ ।

"ପିଟେର୍ କେମିତି ଅଛି ?"

"ଭଲ," ଇଭ୍ କହିଲା । "ଆପଣ ତାଙ୍କୁ ଦେଖା କରିବାକୁ ଚାହାନ୍ତି ?"

"ନିଶ୍ଚୟ," ଶ୍ରୀଯୁକ୍ତ ଦାରବେଦାତ ଉତ୍ଫୁଲ୍ଲ ସ୍ୱରରେ କହିଲେ । "ତାକୁ ଟିକିଏ ଦେଖା କରିଯିବି ।"

ଏହି ହତଭାଗ୍ୟ ତରୁଣଟି ପ୍ରତି ତାଙ୍କ ହୃଦୟ ଅନୁକମ୍ପାରେ ପୂର୍ଣ୍ଣ ଥିଲା । କିନ୍ତୁ ସେ ତ୍ରୁଟିପୂର୍ଣ ବ୍ୟକ୍ତିଙ୍କୁ ଘୃଣା କରନ୍ତି । ପିଓ୍ୱେରର ଦୋଷ ନାହିଁ । ଦୋଷ ତା ବଂଶର । ଶ୍ରୀଯୁକ୍ତ ଦାରବେଦାନ୍ତ ଦୀର୍ଘଶ୍ୱାସ ଛାଡ଼ିଲେ : ସବୁ ଚେଷ୍ଟା ବ୍ୟର୍ଥ ହୋଇଛି । ଖୁବ୍ ବିଳମ୍ବ ହୋଇଗଲା । ନା, ପିଓ୍ୱେର୍ ଦାୟୀ ନୁହେଁ । ତଥାପି ସେ ସବୁବେଳେ ବଂଶର ଦୋଷଟି ବହନ କରୁଛି । ଏହା ହିଁ ତ ତା' ଚରିତ୍ରର ମୂଳ ଭିତ୍ତି । ଏହା ଏକଟି କମ୍ପ ପକ୍ଷାଘାତ ନୁହେଁ ଯେ ରୋଗୀକୁ ଅଲଗା ରଖିଦେଇ ହେବ । ଇଭ୍ ତାକୁ ବିବାହ ହେବା ବେଳକୁ ସେ ପାଗଳ ହୋଇ ସାରିଥିଲା ।

ଶ୍ରୀଯୁକ୍ତ ଦାରବେଦାନ୍ତ ଚିନ୍ତା କରିବାକୁ ଲାଗିଲେ, ଆଶ୍ଚର୍ଯ୍ୟ ଲାଗୁଛି, ଡାକ୍ତରୀର ଆରମ୍ଭ କେଉଁଠି, ବା ତାର ଶେଷ କେଉଁଠି ! ପ୍ରତି କ୍ଷେତ୍ରରେ, ସେ ନିଜକୁ ଖୁବ୍ ତନ୍ନତନ୍ନ କରି ସଦାବେଳେ ଦେଖୁଥିଲେ । କିନ୍ତୁ ଏହା କ'ଣ ତା ରୋଗର କାରଣ ନା ଫଳ ? ଗୋଟିଏ ଲମ୍ବା, ପ୍ରାୟ ଅନ୍ଧାରୁଆ ବାରଣ୍ଡାରେ ସେ ତାଙ୍କ ଝିଅର ପଛେ ପଛେ ଚାଲିଲେ ।

"ଏହି ତାଲଟା ତୁମ ପକ୍ଷରେ ଖୁବ୍ ବଡ଼," ସେ କହିଲେ ।

"ଆପଣ ପ୍ରତି ଥର ଏୟା କହନ୍ତି, ବାପା," ଇଭ୍ ଜବାବ ଦେଲା । "କିନ୍ତୁ ମୁଁ ତ ଆପଣଙ୍କୁ କହିଛି, ପିଓ୍ୱେର୍ ନିଜ କକ୍ଷ ଛାଡ଼ିବାକୁ ଚାହାନ୍ତି ନାହିଁ ।"

ଇଭ୍ ବାସ୍ତବିକ ବିସ୍ମୟକର । ଅନ୍ୟମାନେ ତାକୁ ଦେଖି ବିସ୍ମିତ ହେଉଥିଲେ, ସେ ତା ସ୍ୱାମୀର ଅବସ୍ଥା ଉପଲବ୍ଧି କରିଛି କି ନା କେଜାଣି ! ପିଓ୍ୱେର୍ ବଦ୍ଧ ପାଗଳ ଥିଲେ ସୁଦ୍ଧା, ଇଭ୍ ତାକୁ ଶ୍ରଦ୍ଧା କରୁଥିଲା ।

ଟିକଏ ବିରକ୍ତ ହୋଇ, ଶ୍ରୀଯୁକ୍ତ ଦାର୍‌ବେଦାତ କହି ଗ୍ଲେ,
"ତୁମରି ଭଲ ପାଇଁ ତ ମୁଁ କହୁଛୁ । ମୁଁ ଯଦି ନାରୀ ହୋଇଥାନ୍ତି,
ଏହିସବୁ ଆଟେଲ୍‌କରୀନ କୋଠରୀ ଦେଖି ମୋତେ ଡର ଲାଗନ୍ତା ।
ମୋର ଇଚ୍ଛା, ତୁମେ ଗୋଟାଏ ଭଲ ଘରେ ରୁହ । ଆଉଟଡ଼ଲ୍‌ରେ
ଓଦୋଟି ଲେଖାଏଁ ମୁକ୍ତ-ବାୟୁ ବିଶିଷ୍ଟ କୋଠରୀ ମିଳୁଛି । ଲୋକ
କହୁଛି ନାହାନ୍ତି ବୋଲି ଭଡ଼ା ବି କମ । ଏଇଟା ତ ଠିକ୍ ବେଳ ।"

ଇଭ୍ ସନ୍ତର୍ପଣରେ ଦୁଆର ଖୋଲି ଦେଲା ଏବଂ ସେମାନେ
ପ୍ରବେଶ କଲେ । ଧୂଅର ବଦଳ ସୁଗନ୍ଧରେ ଶ୍ରୀଯୁକ୍ତ
ଦାରବେଦାତଙ୍କର କଣ୍ଠ ରୁଦ୍ଧ ହୋଇଗଲା । ପରଦାଗୁଡ଼ିକ ପଡ଼ିଥିଲା ।
ଭିତରେ ଆରାମ ଚୌକିର ମଥା ଉପରକୁ ଗୋଟାଏ ସବୁ ବେକ
ଦିଶୁଥିଲା । ପିଅେର୍ ବୁଲି ବସିଥିଲା । ସେ ଖାଉଥିଲା ।

ଚକ୍କର କରି, ଶ୍ରୀଯୁକ୍ତ ଦାରବେଦାତ ପଚାରିଲେ, "କରେ,
ପିଅେର୍, ଆଜି କେମିତି ଅଛୁ ?" ସେ ତା ପାଖକୁ ଯାଇଁ ଗଲେ
ରୋଗୀଟି ଗୋଟାଏ ଗ୍ଲେଟ୍ ଟେବୁଲ୍ ଆଗରେ ବସିଥିଲା ଓ ଧୂଆଁ
ଦିଶୁଥିଲା ।

ଆଉ ଟିକଏ ବଡ଼ା ଗଳାରେ, ଶ୍ରୀଯୁକ୍ତ ଦାରବେଦାତ କହିଲେ,
"ଅଣ୍ଡା ଖାଉଥିଲୁ ପରା ! ବେଶ୍ ଭଲ !"

"ମୁଁ କାଲି ନୁହେଁ," ପିଅେର୍ ଶାନ୍ତ କଣ୍ଠରେ କହିଲା ।

ବିରକ୍ତ ହୋଇ, ଶ୍ରୀଯୁକ୍ତ ଦାରବେଦାତ ନିଜର ସାକ୍ଷୀ
ଭାବନରେ ଇଭ୍ ଆଡ଼କୁ ଅନାଇଲେ । କିନ୍ତୁ ଇଭ୍ ତାଙ୍କ ଉପରେ
କଠିନ ଦୃଷ୍ଟି ପକାଇ ନୀରବ ରହିଲା । ସେ ବୁଝିଲେ, ଇଭ୍ କ୍ଷୁଣ୍ଣ
ହୋଇଛି । ତା' ପକ୍ଷରେ ଖୁବ୍ ଖରାପ । ଏହି ପିଲାଟି ସାଙ୍ଗରେ ଠିକ୍
କେଉଁପରି ଭାବରେ ଯେ କଥା କହିବାକୁ ହେବ ତାହା ଜାଣିବା ସମ୍ଭବ
ନୁହେଁ । ଖୁବ ବର୍ଷର ପିଲାଟିଏ ଠା'ରୁ ବି ତାର ବୁଦ୍ଧି ଜ୍ଞାନ କମ ।

ତଥାପି ଇଭ୍‌ର ଇଚ୍ଛା ଯେ ସେ ତା ସହିତ ଜଣେ ବୟସ୍କ ଲୋକ ପରି ବ୍ୟବହାର କରନ୍ତୁ । ଅଥଚ ତରୁଣ ଲୋକ—ବିଶେଷତଃ ପାଗଳାଙ୍କୁ ଦେଖିଲେ ତାଙ୍କ ଅନ୍ତର ବିତୃଷ୍ଣାରେ ପୂର୍ଣ୍ଣ ହୋଇଯାଏ, କାରଣ ସେମାନେ ଭୁଲ୍ କରନ୍ତି । ଉଦାହରଣ ସ୍ୱରୂପ, ଅଭାଗା ପିୟେର୍ ସବୁ ବେଳେ ଭୁଲ୍ କରେ ଏବଂ ପଦେ ବି ଉଚିତ କଥା କହିପାରେ ନାହିଁ ।

ଇଭ୍ ଅଣ୍ଡା-ଖୋଳଗୁଡ଼ାକ ଓ କପ୍‌ଟା ଉଠାଇ ନେଲା । ଖଣ୍ଡିଏ ଛୁରୀ ଓ ଗୋଟିଏ କଣ୍ଟା ଆଣି ସେ ପିୟେର୍ ଆଗରେ ରଖିଦେଲା ।

ପ୍ରଫୁଲ୍ଲ ଚିତ୍ତରେ ଶ୍ରୀଯୁକ୍ତ ଦାରବେଦାତ ପଚାରିଲେ, "ସେ ଏବେ କ'ଣ ଖାଇବ କି ?"

"ମାଂସ ।"

ପିୟେର୍ ତା'ର ଲମ୍ବ ରକ୍ତହୀନ ଆଙ୍ଗୁଳି ଅଗରେ କଣ୍ଟାଟା ଉଠାଇ ନେଲା । ତାକୁ ଧରି ଟିକିନିଖି ପରୀକ୍ଷା କଲା ପରେ ସେ ଟିକିଏ ହସିଦେଲା ।

"ଆଜି ଏଥିରେ ଖାଇବି ନାହିଁ," ସେ ତାକୁ ଥୋଇଦେଇ, ଗୁଣୁଗୁଣୁ ହୋଇ କହିଲା, "ମୋତେ ବାରଣ କରିଛନ୍ତି ।"

ଇଭ୍ ଚାଲିଆସି ଉଦ୍‌ବିଗ୍ନ ଆବେଗରେ କଣ୍ଟାଟି ନିରୀକ୍ଷଣ କଲା ।

ପିୟେର କହିଲା, "ଆଗାଥା, ମୋତେ ଆଉ ଗୋଟାଏ କଣ୍ଟା ଆଣି ଦିଅ ।"

ଇଭ୍ ଆଣିଦେଲା ଏବଂ ପିୟେର୍ ଖାଇ ବସିଲା । ଇଭ୍ ସନ୍ଦେହଜନକ କଣ୍ଟାଟି ଉଠାଇ ନେଇ, ଦୃଢ଼ ଭାବରେ ତା' ହାତରେ ଧରିଲା । ତା'ର ଦୃଷ୍ଟି ତା' ଉପରେ ନିବଦ୍ଧ ଥିଲା । ମନେ ହେଉଥିଲା,

ସେ ଯେମିତି କଣ କରିବା ପାଇଁ ତ' ଅନ୍ତର ଭିତରେ ଘୋଷଣା ଚେଷ୍ଟା କରୁଥିଲା । ଶ୍ରୀଯୁକ୍ତ ଦାଉବେଦାତ ଭାବୁଥିଲେ, କି ସନ୍ଦେହଜନକ ସେମାନଙ୍କର ଭାବଭଙ୍ଗୀ ଓ ସମ୍ପର୍କ !

ଇଭ୍ ଦୀର୍ଘଶ୍ୱାସ ପକାଇ, କଣ୍ଟାଟି ପରିବେଷଣ-ଟେବୁଲ ଉପରେ ଥୋଇଦେଲା । ଶ୍ରୀଯୁକ୍ତ ଦାଉବେଦାତ ଅନୁଭବ କଲେ, ତାଙ୍କ ଚିତ୍ତ ଯେମିତି ଉପରକୁ ଉଠୁଛି । ଅଭାଗା ଲୋକଟିର ଖାମଖିଆଲ ଭିତରକୁ ଯିବାକୁ ସେ ପସନ୍ଦ କଲେ ନାହିଁ—ଏପରିକି ପିୟେର୍ ପକ୍ଷରେ ମଧ୍ୟ ତାହା ଅପକାରକ ।

ସେ ପରିବେଷଣ-ଟେବୁଲ ପାଖକୁ ଗଲେ, ଏବଂ ସଦମ୍ଭରେ କଣ୍ଟାଟି ଉଠାଇ ନେଇ ତାଙ୍କ ଆଙ୍ଗୁଠିରେ ତାର ଦାନ୍ତଗୁଡ଼ାକ ପରୀକ୍ଷା କରିବାକୁ ଲାଗିଲେ । ତା'ପରେ ସେ ପିୟେର୍ ଆଡ଼କୁ ବୁଲି ପଡ଼ିଲେ । କିନ୍ତୁ ପିୟେର୍ ସେତେବେଳେ ଶାନ୍ତ ଭାବରେ ମାଂସ କାଟୁଥିଲା : ସେ ତା ଶ୍ୱଶୁରଙ୍କୁ ଏକ ନରମ, ବ୍ୟଞ୍ଜନାହୀନ ଦୃଷ୍ଟିରେ ଚାହିଁଲା ।

"ତୋ ସାଙ୍ଗରେ ଟିକିଏ କଥା ଅଛି," ଶ୍ରୀଯୁକ୍ତ ଦାଉବେଦାତ ଇଭ୍‌କୁ କହିଲେ ।

ଇଭ୍ ଆଜ୍ଞାଧୀନ ଭାବରେ ତାଙ୍କ ପଛେ ପଛେ ପାଖ କୋଠରୀକୁ ଆସିଲା । ସୋଫା ଉପରେ ବସିପଡ଼ି, ଶ୍ରୀଯୁକ୍ତ ଦାଉବେଦାତଙ୍କର ଖିଆଲ ହେଲା କଣ୍ଟାଟା ତାଙ୍କ ମୁଠା ଭିତରେ ରହିଛି । ସେ ତତ୍‌କ୍ଷଣାତ୍ ସେଟାକୁ ଟେବୁଲ ଉପରେ ପକାଇ ଦେଲେ ।

ସେ କହିଲେ, "ଏଠା ଅବଶ୍ୟ ଟିକିଏ ଭଲ ଅଛି ।"

"ମୁଁ ଆଉ ଏଠାକୁ ଆସେ ନାହିଁ ।"

ଶ୍ରୀଯୁକ୍ତ ଦାଉବେଦାତ ଗୋଟାଏ ସିଗାରେଟ ବଳିବାକୁ ଲାଗିଲେ । ଆଲୋଚନାଟା କିପରି ଭାବରେ ଆରମ୍ଭ କରିବାକୁ

ହେବ, ସେ ତାହା ଆଗ୍ରହ ସହକାରେ ଚିନ୍ତା କଲେ । ସେ ଆଖି ଟେକି ଚାହିଁଲେ । ନିଜ ଝିଅର ସୁନ୍ଦର ଅଙ୍ଗ ଲକ୍ଷଣଗୁଡ଼ିକ ଆଉ ଥରେ ଦେଖି ନେବାକୁ ତାଙ୍କର ଇଚ୍ଛା ହେଲା । ତା ମୁହଟି ଦେଖି ସେ ନିରାଶ ହେଲେ । ଦିନେ ଯାହା ଏତେ ଯୁକ୍ତିଯୁକ୍ତ ଓ ସ୍ୱଚ୍ଛ ଥିଲା, ଆଜି ତାହା ଅନୁଜ୍ଜ୍ୱଳ ଓ ତମସାଚ୍ଛନ୍ନ ହୋଇ ଯାଇଛି ।

"ମୋର ଭୟ ହେଉଛି, ତୁ ଦିନକୁ ଦିନ ରୋଗଣା ହୋଇ ଯାଉଛୁ," ସେ ତାକୁ କହିଲେ ।

ଇଭ୍ ଜବାବ ଦେଲା ନାହିଁ । ମୁହୂର୍ତ୍ତିକ ପାଇଁ ଶ୍ରୀଯୁକ୍ତ ଡାରବେଦାଭ ତାର କୃଷ୍ଣ କେଶ ଗୁଚ୍ଛ ତଳେ ଜୀର୍ଣ୍ଣଶୀର୍ଣ୍ଣ ମୁଖଟିକୁ ଟିକିଏ ଦେଖିନେଲେ । ତାଙ୍କୁ ମନେ ହେଲା, ସେ ଯେମିତି ଜଣେ ଭିକାରୁଣୀ ଭଳି ଦିଶୁଛି ।

ଇଭ୍ ତାଙ୍କ ଆଡ଼କୁ ଅନାଇ ଟିକିଏ ହସିଲା । ଶ୍ରୀଯୁକ୍ତ ଡାରବେଦାଭ ସିଗାରେଟ ଲଗାଇ ଧୂଆଁ ଛାଡ଼ିବାକୁ ଲାଗିଲେ ।

ସେ ଆରମ୍ଭ କଲେ, "ଦେଖ ଇଭ୍, ମୋର ତୋତେ କିଛି କହିବାର ଅଛି । ଆଗରୁ ଆମେ ଯେମିତି କଥାବାର୍ତ୍ତା କରୁଥିଲେ, ଆଜି ସେମିତି କଥା ହେବା । ଆ, ବସ, ଶାନ୍ତ ଶିଷ୍ଟ ପିଲାଟି ଭଳି ମୋ କଥା ଶୁଣ । ତୋର ଏହି ବୁଢ଼ା ବାପ ଉପରେ ବିଶ୍ୱାସ ରଖ, ମା !"

ଇଭ୍ କହିଲା, "ମୁଁ ପଛକେ ଠିଆ ହେଉଛି । ଆପଣ କଣ କହିବାକୁ ଚାହାନ୍ତି, କହନ୍ତୁ ?"

ଶ୍ରୀଯୁକ୍ତ ଡାରବେଦାଭ ଟିକିଏ ଅଧିକ ନୀରସ ଗଳାରେ କହିଲେ, "ମୁଁ ତୋତେ ଗୋଟାଏ କଥା ପଚାରିବି । ଏହିସବୁର ପରିଣାମ କଅଣ ?"

"ଏହିସବୁ ?" ଇଭ୍ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ହଁ...ଏହି ଯେଉଁ ଭାବରେ ତୁ ତୋର ସାରା ଜୀବନ ବିତାଇବାକୁ ଯାଉଛୁ। ଶୁଣ !" ସେ କହି ଚାଲିଲେ, "ତୁ ଭାବ ନା, ମୁଁ ତୋତେ ବୁଝି ପାରୁ ନାହିଁ। କିନ୍ତୁ ତୁ ଯାହା କରିବାକୁ ଚାହୁଁଛୁ ତାହା ମଣିଷର ସାଧ୍ୟାତୀତ। ଗୋଟାଏ ତୁଚ୍ଛ କଳ୍ପନାକୁ ଧରି ତୁ ବଞ୍ଚିବାକୁ ଚାହୁଁଛୁ ? ତୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୋହୁ ଯେ ସେ ଗୋଟାଏ ରୋଗୀ। ତୁ ଆଜିକାର ପିୟେରକୁ ଦେଖିବାକୁ ଚାହୁଁ ନାହଁ। କେବଳ ଅତୀତର ପିୟେର ତୋ ଆଖିରେ ଭାସୁଛି। କିନ୍ତୁ ମାଆ, ଏ ବାଜି ଜିଣିବା ସମ୍ଭବ ନୁହେଁ।"

"ଆପଣ ଭୁଲ କରୁଛନ୍ତି, ବାବା," ଇଭ୍ ଚେଷ୍ଟା କରି କହିଲା। "ମୁଁ ଭଲ କରି ଜାଣେ ଯେ ପିୟେର୍...।"

ତା ତୁଣ୍ଡରେ କଥା ଫିଟିଲା ନାହିଁ। ଆରାମ ଚୌକିର ପଛରେ ହାତ ରଖି ସେ ନିଜକୁ ଖୁବ୍ ଦୃଢ଼ କରି ଠିଆ ହେଲା। ତାର ତଳ ଓଠରେ କିଛି ନୀରସ ଓ କୁତ୍ସିତ ଭାବନା ଖେଳୁଥିଲା।

"ତାହା ହେଲେ...?" ଶ୍ରୀଯୁକ୍ତ ଦାରବେଦାତ ବିସ୍ମିତ ସ୍ୱରରେ ପଚାରିଲେ।

"ତାହା ହେଲେ...?"

"ତୁ...।"

"ସେ ଯେମିତି, ମୁଁ ସେମିତି ତାଙ୍କୁ ଭଲ ପାଏଁ", ଇଭ୍ ତରବରରେ ଉତ୍ତର ଦେଇ, ବିରକ୍ତ ଦୃଷ୍ଟିରେ ତାଙ୍କୁ ଚାହିଁଲା।

"ଅସମ୍ଭବ," ଶ୍ରୀଯୁକ୍ତ ଦାରବେଦାତ ଦୃଢ଼ ଭାବରେ କହିଲେ। "ଏହା ଆଦୌ ସତ ନୁହେଁ। ତୁ ତାକୁ ଭଲ ପାଉ ନାହଁ। କି ପାଇ ପାରିବୁ ନାହିଁ। ଜଣେ ସୁସ୍ଥ ସବଳ ବ୍ୟକ୍ତି ବିଷୟରେ ହିଁ କେବଳ ତୋର ଏ ଧାରଣା ଜନ୍ମି ପାରେ। ବରଂ ତୁ ପିୟେର୍‌କୁ

ଦେଖୁଛି। କିନ୍ତୁ ମୋତେ କହନା, ଯେ ତୁ ତାକୁ ଭଲ ପାଉ। ମୁଁ ତୋତେ ବିଶ୍ୱାସ କରି ପାରିବ ନାହିଁ।"

ଅନ୍ୟମନସ୍କ ଭାବରେ କାର୍ପେଟ ଆଡ଼କୁ ଅନାଇ, ଇଭ୍ ନିର୍ବାକ୍ ହୋଇଗଲା।

ହଠାତ ଧୋଇ, ଶ୍ରୀଯୁକ୍ତ ଦାରବେଦାତ ଚିତ୍କାର କଲେ, "ବେଶ୍, ଯଦି ତୁ ତାକୁ ଭଲ ପାଉଥାଉ, ତାହାହେଲେ ସେଇଟା ତୋ ପକ୍ଷରେ, ମୋ' ପକ୍ଷରେ ଓ ତୋର ଅଭାଗୀ ମାଆ ପକ୍ଷରେ ଏକ ଶୋଚନୀୟ ଦୁର୍ଭାଗ୍ୟ। କାରଣ ଯାହା ତୋ ପାଖରେ ଲୁଚାଇ ରଖିଥାନ୍ତି ଆଜି ମୁଁ ତାହା ତୋ ପାଖରେ ଫିଟାଇ ଦେଉଛି ତିନୋଟି ବର୍ଷ ନ ପୂରୁଣୁ ପିୟେରର ସମ୍ପୂର୍ଣ୍ଣ ଉନ୍ମାଦ ହୋଇଯିବ। ସେ ଗୋଟାଏ ପଶୁ ପାଲଟିଯିବ।"

ଇଭ୍ ଅବିଚଳିତ ଭାବରେ ଠିଆ ହୋଇଥିଲା। ସେ ତା ଆଖିପତା ବି ଉଠାଇଲା ନାହିଁ।

"ମୁଁ ଜାଣେ।"

"କିଏ ତୋତେ କହିଲା ?" ସେ ସ୍ତମ୍ଭିତ ହୋଇ ପଚାରିଲେ।

"ଫ୍ରାଙ୍କଟ୍ ! ଛଅ ମାସ ଆଗରୁ ମୁଁ ଜାଣିଛି।"

"ତୋତେ ନ କହିବାକୁ ମୁଁ ତାକୁ ସାବଧାନ କରି ଦେଇଥିଲି," ତିକ୍ତ ସ୍ୱରରେ ଶ୍ରୀଯୁକ୍ତ ଦାରବେଦାତ୍ କହିଲେ। "ହେଉ, ଭଲ ହୋଇଛି। କିନ୍ତୁ ଏପରି ସ୍ଥଳେ ତୋର ବୁଝିବା ଉଚିତ ଯେ ପିୟେରକୁ ତୋ ପାଖରେ ରଖିବା ଅକ୍ଷମଣୀୟ। ଯେଉଁ ସଂଗ୍ରାମରେ ତୁ ଅବତୀର୍ଣ୍ଣ ହୋଇଛୁ, ତାହା ବ୍ୟର୍ଥ ହେବ। ତାର ରୋଗ ତାକୁ ଛାଡ଼ିବ ନାହିଁ। ଯଦି କିଛି କରିବାର ଥାଆନ୍ତା, ଯଦି ସେବା ଶୁଶ୍ରୂଷା ଦ୍ୱାରା ଆମେ ତାକୁ ରକ୍ଷା କରି ପାରନ୍ତେ, ମୁଁ ତୋତେ ତାହା କରିବାକୁ କହନ୍ତି। କିନ୍ତୁ ଦେଖ୍ : ତୁ ରୂପସୀ, ବୁଦ୍ଧିମତୀ, ତୁ ନିଜେ

ନିଜକୁ ବିନା କାରଣରେ ଧ୍ୱଂସ କରିବାକୁ ବସିଛୁ । ମୁଁ ଜାଣେ, ତୁ ଯାହା କରିଛୁ ଅବଶ୍ୟ ପ୍ରଶଂସନୀୟ । କିନ୍ତୁ ବର୍ତ୍ତମାନ ତାହା ଶେଷ ହୋଇ ଯାଇଛି । ତୁ ତୋର କର୍ତ୍ତବ୍ୟ କରି ସାରିଛୁ । ତାଠାରୁ ବି ଅଧିକ । ମାତ୍ର ଏବେ ବି ସେଇ କଥା କରିବା ଜଘନ୍ୟ ଅପରାଧ । ମାଆ, ଆମ ନିଜ ପ୍ରତି ମଧ୍ୟ ଆମର କର୍ତ୍ତବ୍ୟ ଅଛି । ତୁ ତ ଆମ କଥା ଆଦୌ ଭାବୁ ନାହୁଁ ।” କଥାଗୁଡ଼ିକରେ ହରିଭୂଡ଼ ଭଳି ଆଘାତ କରି, ସେ ପୁଣି କହି ଚାଲିଲେ, “ତୁ ନିଶ୍ଚୟ ପିଯେରଙ୍କୁ ଫ୍ରାଙ୍କଫର୍ଟ୍‌ର ଚିକିତ୍ସାଳୟକୁ ପଠାଇ ଦେବୁ । ଏହି ଘରଟା ବି ଛାଡ଼ି ଦେ । ଏଠାରେ ଦୁଃଖ ଛଡ଼ା ଆଉ କିଛି ନାହିଁ । ଆମ ପାଖକୁ ଚାଲିଆ ! ଯଦି କାହାର ସେବା କରିବାକୁ ତୋର ଏତେ ଆଗ୍ରହ, ତୋ ମାଆ ଅଛି । ତା ପାଖରେ କେହି ନାହାନ୍ତି । ତୁ ତାକୁ ସାହାଯ୍ୟ କଲେ ସେ ତ ଖୁସି ହେବ ।”

ଘର୍ଘ ନୀରବତା । ପାଖ କୋଠରୀରୁ ପିଯେରର ଗୀତ ଶୁଣା ଯାଉଥିଲା । ଠିକ୍ ଗୀତ ନୁହେଁ, ବରଂ ଗୋଟାଏ କ୍ଷୀଣ ଓ ଦ୍ରୁତ ଆବୃତ୍ତି । ଶ୍ରୀଯୁକ୍ତ ଦାରବେଦାତ ତାଙ୍କ ଝିଅ ଆଡ଼କୁ ଆଖି ଟେକି ଅନାଇଲେ ।

“ତାହାହେଲେ—‘ନା’ ?”

“ପିଯେର ମୋ ପାଖରେ ରହିବେ,” ସେ ଶାନ୍ତ କଣ୍ଠରେ କହିଲା । “ତାଙ୍କ ସହିତ ମୁଁ ବେଶ୍ ଭଲ ଅଛି ।”

“ଜନ ସାର୍ ଏମିତି ପଶୁଙ୍କ ଭଲ କଟାଇ ?”

ଇଭ୍‌ର ଓଠରେ ସ୍ମିତ ହାସ୍ୟ ଖେଳିଗଲା । ସେ ତା ବାପାଙ୍କ ଉପରେ ଗୋଟାଏ ଅଦ୍ଭୁତ, ବିଦ୍ରୁପାତ୍ମକ ଓ ପ୍ରାୟ ସ୍ଫୂର୍ତ୍ତ ଦୃଷ୍ଟି ନିକ୍ଷେପ କଲା । କଥାଟା ସତ । ଶ୍ରୀଯୁକ୍ତ ଦାରବେଦାତ୍ ରାଗରେ

ଭାବିବାକୁ ଲାଗିଲେ, ସେମାନେ ତ ଖାଲି ସେତିକି କରନ୍ତି ନାହିଁ; ଏକା ସାଙ୍ଗରେ ବି ଶୁଅନ୍ତି ।

"ତୁ ବି ପୂରା ପାଗଳୀ ହୋଇ ଗଲୁଣି", କହି, ସେ ଉଠି ପଡ଼ିଲେ ।

ଇଭ୍ ଖିଣ୍ଡେ ମନରେ ଟିକିଏ ହସିଲା ଏବଂ, ଯେମିତି ନିଜକୁ, ଗୁଣୁଗୁଣୁ ହୋଇ କହିଲା, "କେବଳ କହିବା ବି ଯଥେଷ୍ଟ ନୁହେଁ ।"

"ଯଥେଷ୍ଟ ନୁହେଁ ? ମୁଁ ତୋତେ ଖାଲି ଗୋଟାଏ କଥା କହି ଯାଉଛି, ମାଆ ! ତୋତେ ଦେଖି ମୋର ଭୟ ହେଉଛି ।"

ଚଞ୍ଚଳ ତାକୁ ଚୁମ୍ବନ କରି, ସେ ବାହାରି ଗଲେ । ସିଡ଼ିରେ ଓହ୍ଲାଇଲା ବେଳେ ସେ ଭାବୁଥିଲେ : ଦୁଇଟା ବଳିଷ୍ଠ ଲୋକ ପଠାଇ ଦେଲେ ସବୁ ଠିକ୍ ହୋଇଯିବ । ସେମାନେ ଏହି ହତଭାଗୀ ନଙ୍ଗୁଳୀଟାକୁ ଏଠାରୁ କାଢ଼ି ନେଇଯିବେ ଏବଂ ତାକୁ ନ ଜଣାଇ ଗୋଟାଏ ଜଳ-ଧାରା ତଳେ ମାଡ଼ି ବସିବେ ।

ଶାରଦୀୟ ଦିବସ—ରମଣୀୟ, ପ୍ରଶାନ୍ତ ଓ ରହସ୍ୟହୀନ । ବାଟରେ ଯାଉଁ ଯାଉଁ ସେ ନିଜେ ନିଜକୁ କହୁଥିଲେ ଇଭ୍‌ର ମାନବିକ ପ୍ରକୃତି ବାହାରେ ବାସ କରିବାଟାକୁ ମୁଁ ବିରୋଧ କରୁଛି । ପିଏର ତ ଆଉ ମଣିଷ ନୁହେଁ । ସେ ତାକୁ ଯେଉଁ ସେବା ଓ ପ୍ରେମ ଅର୍ପଣ କରୁଛି, ତଦ୍ଦ୍ୱାରା ସେ ମଣିଷକୁ ସେଥିରୁ ବଞ୍ଚିତ କରୁଛି । ଦୁନିଆକୁ ପ୍ରତ୍ୟାଖ୍ୟାନ କରିବାର ଅଧିକାର ଆମର ନାହିଁ ; ଯାହା ହେଉ ପଛକେ, ଆମେ ତ ଏଇ ସମାଜରେ ବାସ କରୁଛୁ ।

ଜଣେ ସ୍ତ୍ରୀ ଲୋକ ଗୋଟିଏ ଛୋଟ ପିଲାର ହାତ ଧରି, ଗୋଟାଏ ଖେଳନା ଦୋକାନ ଆଗରେ ଠିଆ ହୋଇଗଲା ।

"ସେଟା କଣ ?" ପିଲାଟି ପଚାରିଲା ।

ତା ମାଆ କହିଲା, "ସେଥିରେ ହାତ ଦେ ନା । ସେଟା ଗୋଟାଏ ରେଡ଼ିଓ । ସେ ଗୀତ ଗାଏ ।"

ହର୍ଷୋତ୍‌ଫୁଲ୍ଲ ହୋଇ, ପାଟି ଚୁପ୍ କରି ସେମାନେ ସେଠାରେ ଦଣ୍ଡେ ଠିଆ ହେଲେ । ଏଥିରେ ପ୍ରୀତଭୂତ ହୋଇ, ଶ୍ରୀଯୁକ୍ତ ହାରବେହାତ ଝିଟ୍‌ ପିଲାଟି ଉଦ୍ଦେଶ୍ୟରେ ମଥା ନୁଆଁଇ ହସିଲେ ।

## — ଦୁଇ —

"ସେ ଚାଲି ଗଲେଣି" । ଗୋଟାଏ ମୃଦୁ ଢଙ୍ଗରେ ଦୁଆରଟା ବନ୍ଦ ହୋଇଗଲା । ଘରେ ଇଭ୍ ଏକା ରହିଲା । ସେ ଭାବିଲା, ତାଙ୍କର ମରଣ ହେଉ ।

ଆରାମ ଚୌକିର ପଛ ପଟେ ତା'ର ହାତ ଶ୍ଳଥ ହୋଇଗଲା : ତା ବାପାଙ୍କର ଦୃଷ୍ଟି ତା'ର ଠିକ୍ ମନେ ଅଛି । ସେ ଅନାଇ ରହିଥିଲେ ଏବଂ ତାଙ୍କର ତୀକ୍ଷ୍ଣ ଓ ବିଶାଳ ଚକ୍ଷୁର ଗଭୀରତାରେ ପିଏରର ମୁଖଟି ପ୍ରତିଫଳିତ ହୋଇଥିଲା । ସେତେବେଳେ ସେ ପିଏରର ଆଡ଼କୁ ଅନାନ୍ତି ଇଭ୍‌ର ତାଙ୍କ ପ୍ରତି ଘୃଣା ଜାତ ହୁଏ, କାରଣ ତାର ଧାରଣା, ସେ ପିଏରକୁ ଦୃଷ୍ଟି କରନ୍ତି ।

ଇଭ୍‌ର ହାତ ଆରାମ ଚୌକି ଉପରୁ ଖସିଗଲା ଏବଂ ସେ ଝରକା ଆଡ଼କୁ ବୁଲି ପଡ଼ିଲା । ତାର ଆଖି ଝଲସି ଗଲା । ସୂର୍ଯ୍ୟାଲୋକରେ କକ୍ଷଟି ପରିପୂର୍ଣ୍ଣ ହୋଇ ଯାଇଥିଲା । ଗୃହର ଆସ୍ତେ ବିଛୁଡ଼ି ପଡ଼ିଥିଲା । କମ୍ବଳ ଉପରେ ପଡ଼ି, ପବନରେ ଧୂଳି ପରି ଉଡ଼ୁଥିଲା । ଇଭ୍ ଏଥିରେ ଅଭ୍ୟସ୍ତ ନ ଥିଲା । ଯାହା ହେଉ, ସେ ଝରକା ପାଖକୁ ଯାଇ କାଚ ଉପରେ ଝୁଲୁଥିବା ମସଲିନ ପରଦାଟା ଟେକି ଦେଲା । ଠିକ୍ ସେତିକି ବେଳେ ଶ୍ରୀଯୁକ୍ତ ହାରବେହାତ ସେଠୁ

କୋଟା ଖୁଲେ । ଇଭ୍ ସହସା ତାଙ୍କର ପ୍ରଶସ୍ତ କାନ୍ଧ ଦେଖି ପାରିଲା । ସେ ଆକାଶ ଉପରକୁ ଅନାଇଲେ, ଏବଂ ତା'ପରେ ଯୁବକ ପରି ଲମ୍ବ ପାହୁଣ୍ଡ ପକାଇ ଚାଲିଗଲେ । ସେ ପିୟେରେ ବିଷୟରେ ଭାବୁଥିଲେ । ସେମାନଙ୍କ ଜୀବନର କେତୁ ଅଂଶ ସେହି ଛୁଦ୍ର କକ୍ଷରୁ ମୁକ୍ତି ଚଲା ଏବଂ ରାସ୍ତାରେ, ଖରାରେ, ଲୋକଙ୍କ ଗହଳିରେ ଛାଣି ହୋଇ ମିଶାକ୍ ଲଗିଲା । ସେମାନେ କ'ଣ ଆମ ବିଷୟ ଭୁଲି ଯାଇ ପାରିବେ ନାହିଁ ?

'ରୁ ଦ୍ୟ ବାକ୍' ପ୍ରାୟ ଜନହୀନ ହୋଇ ଯାଇଥିଲା । ଜଣେ ବୁଢ଼ା ମହିଳା ଠିକ ଠିକ ପାହୁଣ୍ଡରେ ରାସ୍ତା ଟପି ଚାଲିଗଲା । ହସି ହସି ତିନୋଟି ବାଳିକା ଚାଲିଗଲେ । ତାପରେ କେତେ ଜଣ ବଳିଷ୍ଠ ଓ ଗମ୍ଭୀର ଲୋକ ବ୍ରିଫ୍ କେସ୍ ହାତରେ ଧରି, ଆପଣା ଆପଣା ଭିତରେ କଥାବାର୍ତ୍ତା ହୋଇ ଯାଉଥିଲେ । ଇଭ୍ ଭାବିଲା, ସେମାନେ ସୁସ୍ଥ ଲୋକ । ତେଣୁ ସେମାନଙ୍କ ଉପରେ ତାର ତୀବ୍ର ଘୃଣା ଜାତ ହେଲା । ଜଣେ ସ୍ଥୂଳକାୟା ସୁନ୍ଦରୀ ରମଣୀ ଜଣେ ସୁଦର୍ଶନ ବ୍ୟକ୍ତିଙ୍କ ପାଖକୁ ଦୌଡ଼ିଗଲା । ସେ ତାକୁ କୁଣ୍ଢାଇ ପକାଇ, ତା ମୁହଁ ଉପରେ ଗୋଟାଏ ଚୁମ୍ବନ ଦେଲେ । ଇଭ୍‌ର କଠିନ ହସ ସାଙ୍ଗରେ, ପରଦାଟା ପଡ଼ିଗଲା ।

ପିୟେରର ଆଜି ଶୀତ ବୋଲି ନ ଥିଲା, କିନ୍ତୁ ଘରର ତାଳରେ ରହୁଥିବା ମହିଳାଟି ପିଆନୋ ବଜାଉଥିଲା । ଇଭ୍ ଟିକିଏ ଶାନ୍ତି ବୋଧ କଲା । ପିୟେରର କକ୍ଷ ଆଡ଼କୁ ସେ ଏକ ପାହୁଣ୍ଡ ପକାଇଲା, ମାତ୍ର ପ୍ରାୟ ତତ୍‌କ୍ଷଣାତ୍ ଅଟକିଗଲା ଏବଂ ଯନ୍ତ୍ରଣାରେ କାନ୍ଥରେ ଆଉଜି ପଡ଼ିଲା । ସେହି କକ୍ଷ ଛାଡ଼ି ଥରେ ଚାଲିଗଲେ, ଫେରିବା କଥା ତାର ମନେ ପଡ଼ିବା କ୍ଷଣି ସେ ପ୍ରତି ଥର ଭୟଭୀତ ହୋଇ ଯାଉଥିଲା । ତଥାପି ସେ ଜାଣିଥିଲା, ସେ ଆଉ କେଉଁଠି

ରହି ପାରିବ ନାହିଁ । ସେ ସେହି କକ୍ଷଟିକୁ ଭଲ ପାଉଥିଲା ।
ଠିକଏ ବେଳ ଗଡ଼ାଇ ଦେବା ପାଇଁ ସେ ଶୀତଳ କୌତୁହଳରେ
ତା ଦୃଷ୍ଟିକୁ ଆଣିଲା । ଏହି ଶୁଷ୍ମାହୀନ ଓ ଗନ୍ଧହୀନ କକ୍ଷଟିରେ
ତାର ସାହସ ଫେରି ପାଇବାକୁ ସେ ଅପେକ୍ଷା କରି ବସିଛି ।
ଇନ୍ ଭାବିଲା, ସାଧାରଣ ଲୋକଙ୍କ ପାଇଁ ତାହା ଏକ ଜୀବନ୍ତ କକ୍ଷ ।
ସେହି ଛିଦ୍ର ଦ୍ୱାର ଉପରେ ତାର ଦୃଷ୍ଟି ପଡ଼ିବା ମାତ୍ରେ, ଭୟ ତାର
ଗଳା ଚିପି ଧରିଲା : ମୁଁ ନିଶ୍ଚୟ ଫେରିଯିବି । ଏତେ ବେଳ ଯାଏ ମୁଁ
ତ ତାଙ୍କୁ କେବେ ଛାଡ଼ି ରହି ନାହିଁ । ତାକୁ ଦୁଆର ପିଟାଇବାକୁ
ହେବ, ତାପରେ ମୁହଁ ଓ ବକ୍ଷ ଉପରେ ଠିଆ ହେବାକୁ ପଡ଼ିବ
ଏବଂ ଶୁଷ୍ମା ସହିତ ତାର ଆଖିକୁ ଅଭ୍ୟସ୍ତ ହେବା ପାଇଁ ଚେଷ୍ଟା
କରିବାକୁ ପଡ଼ିବ । ତାର ସମସ୍ତ ଶକ୍ତି ପ୍ରୟୋଗ କରି କକ୍ଷଟି ତାକୁ
ପଛକୁ ଠେଲି ଧରିବ । କକ୍ଷର ଭିତର ଯାଏ ସମଗ୍ର ରାସ୍ତାଟା ଯାକ
ଇନ୍‌କୁ ଏହି ପ୍ରତିରୋଧ ଜୟ କରି କରି ଅଗ୍ରସର ହେବାକୁ ପଡ଼ିବ ।
ହଠାତ୍ ପିତୃପୁରୁଷଙ୍କୁ ଦେଖିବା ପାଇଁ ତାର ତୀବ୍ର ଇଚ୍ଛା ହେଲା କିନ୍ତୁ
ପିତୃପୁରୁଷ ତାକୁ ଲୋଡ଼ୁ ନ ଥିଲେ । ସହସା ଠିକଏ ଗର୍ବ ହେଲୁ
ତାର ଧାରଣା ହେଲା ଯେ ତାର କେଉଁଠି ସ୍ଥାନ ନାହିଁ । ସାଧାରଣ
ଲୋକେ ଭାବନ୍ତି, ମୁଁ ସେମାନଙ୍କ ଦଳଭୁକ୍ତ । କିନ୍ତୁ ମୁଁ ତ ସେମାନଙ୍କ
ସାଙ୍ଗରେ ଘଣ୍ଟାଏ ବି ରହି ପାରିବ ନାହିଁ । ବାହାରେ, ବାହାର
ଆର ପଟରେ ମୋତେ ବଞ୍ଚି ରହିବାକୁ ହେବ । କିନ୍ତୁ ସେମାନେ
ବି ମୋତେ ସେଠାରେ ଗ୍ରହଣ କରିବେ ନାହିଁ ।

ତାର ଚତୁର୍ଦ୍ଦିଗରେ ଗୋଟାଏ ଗଭୀର ପରିବର୍ତ୍ତନ
ହେଉଥିଲା । ଆଲୋକ ଆହୁରି ପୁରାତନ ଓ ଧୂସର ହୋଇ
ଯାଇଛି । ଫୁଲଦାନରେ ଗତ ଦିନର ବଦଳା-ନ-ଥିବା ପାଣି
ପରି, ତାହା ଭାସୁ ଥିଲା । ଏହି ପୁରାତନ ଆଲୋକରେ ଏକ ବିସ୍ମୃତ

ବିଷଣ୍ଣତା ବିଷୟ ଇଭ୍‌ର ମନେ ପଡ଼ିଲା  ଶରତ୍ କାଳର ଏକ ଅନୁପମ ଅପରାହ୍ଣର ବିଷଣ୍ଣତା । ବିଧାଜନକ ଓ ଖିନ୍ନ ନୟନରେ ସେ ଚିତ୍ରଆଡ଼କୁ ଅନାଇଲା  ସେସବୁ କେତେ ଦୂରକୁ ଚାଲି ଗଲାଣି । ଦିନ, କି ରାତି, କି ଋତୁ, କି ବିଷଣ୍ଣତା କିଛି ହେଲେ ସେଠି କକ୍ଷଟିରେ ନ ଥିଲା । ସୁଦୀର୍ଘ ଅତୀତରେ ସେହି ଶରତ୍ କାଳଗୁଡ଼ିକର କଥା ଅସ୍ପଷ୍ଟ ଭାବରେ ସେ ସ୍ମରଣ କଲା । ତାର ଶୈଶବର ଶରତ୍ କାଳ । ତାପରେ ସେ ସହସା କଠିନ ହୋଇଗଲା  ସ୍ମୃତିକୁ ସେ ଓଗରିଲା ।

ପିଏରର କଣ୍ଠ ଶୁଣାଗଲା । "ଆଗାଥା ! ତୁମେ କୁଆଡ଼େ ଗଲ ?"

"ଯାଉଛି !" ସେ ପାଟି କରି କହିଲା ।

ସେ ଦୁଆର ଖୋଲି କକ୍ଷ ଭିତରେ ପ୍ରବେଶ କଲା ।

× × × ×

ଭିତରେ ପାଦ ଦେଲା କ୍ଷଣି ଧୂପର ବହଳ ଗନ୍ଧ ତା ମୁହଁ ଓ ନାକରେ ପଶିଗଲା । ସେ ଧୀରେ ଧୀରେ ଆଖି ଖୋଲିଲା ଏବଂ ହାତ ବଢ଼ାଇ ଦେଲା—

କିଛି କ୍ଷଣ ଯାଏ ସେହି ସୁଗନ୍ଧ ଓ ଅନ୍ଧକାର ଗୋଟିଏ ବିସ୍ୱାଦ ଓ ଭୀତି ଜନକ ବୋଲି ତାର ମନେ ହେଲା । ପାଣି,ପବନ ଓ ନିଆଁ ପରି ସରଳ ଓ ପରିଚିତ—କୁହୁଡ଼ିରେ ଭାସୁଥିବା ଗୋଟାଏ ବିବର୍ଣ୍ଣ ଚିହ୍ନ ଆଡ଼କୁ ସେ ଉଦ୍‌ବିଗ୍ନ ବଦନରେ ଗୃହାଁ ଅଗ୍ରସର ହେଲା । ସେଇଟା ପିଏରର ମୁଖ  ପିଏରର ପୋଷାକପତ୍ର (ଅସୁସ୍ଥ ହେବା ଦିନରୁ ସେ କଳା ପୋଷାକ ପରିଧାନ କରୁଛି) ଅନ୍ଧକାରରେ ମିଳାଇ ଯାଇଥାଏ । ପିଏରର ମୁଣ୍ଡ ପଛକୁ ଢଳିଛି ଏବଂ ଆଖି ମୁଦ୍ରିତ । ସେ ସୁଦର୍ଶନ । ଇଭ୍ ତାର ଲମ୍ବା ବଙ୍କା ଆଖିପତା ଆଡ଼କୁ

ଅନାଇଲା, ଏବଂ ତାପରେ ଯାଇ ମାଗ୍ଗୁ ଚୌକିଟିରେ ତାଙ୍କୁ ଲାଗିକରି ବସିଲା । ସେ ଭାବିଲା, ପିପ୍ପେର ବଡ଼ କଷ୍ଟ ପାଉଥିବ । ଆସ୍ତେ ଆସ୍ତେ ତାର ଦୃଷ୍ଟି ଅନ୍ଧକାରରେ ଅଭ୍ୟସ୍ତ ହୋଇଗଲା । ପ୍ରଥମେ ଡ୍ରେସ୍କଟା ଭାସି ଉଠିଲା, ତାପରେ ଶଯ୍ୟା, ତାପରେ ପିପ୍ପେରର ବ୍ୟକ୍ତିଗତ ଜିନିଷପତ୍ର, କଲମ, ଅଠା ଶିଶି, ବହିପତ୍ର, ଆରାମଚୌକି ପାଖରେ କମ୍ବଳ ଉପରେ ପଡ଼ି ଯାଇଥିବା ଲଣ୍ଠନଟା ।

"ଆନାଥା ?"

ପିପ୍ପେର ତା ଆଖି ଖୋଲିଲା । ସେ ସହାସ୍ୟ ବଦନରେ ତାଙ୍କୁ ଲକ୍ଷ୍ୟ କରୁଥିଲା । ସେ କହିଲା, "ତୁମେ ତ ଜାଣ, ସେଇଟି କଣ୍ଟାଟ । ସେଥିରେ କିଛି ନ ଥିଲା । ଖାଲି ତାଙ୍କୁ ଉରାଇବା ପାଇଁ ମୁଁ ସେୟା କଲି ।"

ତରଳ ହସର ରେଖା ଖେଳାଇ ଇଭ୍ କହିଲା, "ତୁମେ ତ ଜିତିଲ ।"

ପିପ୍ପେର ହସିଲା । "ତୁମେ ଦେଖିଛ ? ସେ ଡେର୍ ବେଳ ଯାଏ ସେଇଟାକୁ ହାତରେ ଧରିଥିଲେ । କଥାଟା ହେଉଛି କଣ କି, ସେମାନେ ଅସଲ ଜିନିଷଟା ଠଉରେଇ ଜାଣନ୍ତି ନାହିଁ ।"

ଇଭ୍ ଜବାବ ଦେଲା ନାହିଁ ।

"ସେ କଣ ଗୃହାନ୍ତ ?" ପିପ୍ପେର ପଚାରିଲା—"ସେ ତ ନିଶ୍ଚୟ ତୁମକୁ କହିଥିବେ ।"

କ୍ଷଣେ ଇତସ୍ତତ ହୋଇ, ସେ ନିଷ୍ଠୁର କଣ୍ଠରେ କହିଲା, "ସେ ତୁମକୁ ଗାରଦରେ ପୁରାଇବାକୁ ବସିଛନ୍ତି ।"

ସହଜ ଭାବରେ ସତ କଥାଟା ପ୍ରକାଶ କଲେ, ପିପ୍ପେର ଅବିଶ୍ୱାସ କରେ । ତେଣୁ ତା ସହିତ ନିଷ୍ଠୁର ବ୍ୟବହାର କରି ତା'ର ସନ୍ଦେହକୁ ଆଚ୍ଛନ୍ନ ଓ ପଙ୍ଗୁ କରି ଦେବାକୁ ହେବ । ମିଛ

କହିବା ଅପେକ୍ଷା ତା ପ୍ରତି ପାଶବିକ ନିଷ୍ଠୁର ଆଚରଣ କରିବାକୁ ଇଭ୍ ପସନ୍ଦ କରେ ।

"ମୋତେ ଗାରଦରେ ପୂରାଇ ଦେବ !" ପିଟମ୍ଭର ବିଦ୍ରୂପାତ୍ମକ ଭଙ୍ଗୀରେ ପୁନଃପୁନଃ ଉଚ୍ଚାରଣ କରିବାକୁ ଲାଗିଲ । "ସେମାନେ ପାଗଳ । କାନ୍ଥଗୁଡ଼ାକ ମୋର କଣ କରି ପାରିବେ ? ସେମାନଙ୍କର ହୁଏ ତ ଧାରଣା, ଗାରଦ ମୋତେ ଥଣ୍ଡା କରିଦେବ । ବେଳେ ବେଳେ ମୁଁ ବି ବିସ୍ମିତ ହୁଏଁ । ଦୁଇଟା ଦଳ ଅଛନ୍ତି । ପ୍ରକୃତ ଦଳଟା ହେଉଛି ନିଗ୍ରୋ— ଆଉ ଅନ୍ୟ ଦଳରେ ଗୁଡ଼ାଏ ବୋକା ଲୋକ ଭୁଲ ପରେ ଭୁଲ କରି ଯାଉଛନ୍ତି ।"

ଚୌକିର ହାତରୁ ନିଜ ହାତଟି ଉଠାଇ ନେଇ ସେ ଆନନ୍ଦରେ ତାକୁ ଦେଖିବାକୁ ଲାଗିଲା ।

"ମୁଁ କାନ୍ଥ ଭିତର ଦେଇ ଯାଇପାରେଁ । ତୁମେ ତାଙ୍କୁ କଣ କହିଲ ?" କୌତୁହଳରେ ଇଭ୍ ଆଡ଼କୁ ବୁଲିପଡ଼ି, ସେ ପଚାରିଲା ।

"ତୁମକୁ ଗାରଦରେ ନ ପୂରାଇବାକୁ ।"

ସେ କାନ୍ଧ ହଲାଇଲା —"ତୁମର ତାହା କରିବା ଉଚିତ ନୁହେ । ତୁମେ ବି ଗୋଟାଏ ଭୁଲ୍ କଲ ।"

ଇଭ୍ ଦୁଃଖରେ ମଥା ନୁଆଁଇ ଦେଲା । ସହସା ସେ ଅନୁଭବ କଲା, ତାକୁ ଚଉଦ ବର୍ଷ ବେଳେ ସେ ଯେମିତି ଅଭାଗୀ ଥିଲା ଆଜି ବି ସେମିତି ଅଛି । ଠିକ୍ ଏ ଦୃଷ୍ଟି ପିତାକୁ ତାର ହେମନ୍ତ ହେଲା ନାହିଁ ଏବଂ ଠିକ୍ ସେହିକ ବେଳେ ତାର ସ୍ଥାନ ପରିବର୍ତ୍ତନ କରିବା ପାଇଁ ତା ମନ ଭିତରେ ଏକ ଅଦମ୍ୟ ଇଚ୍ଛା ଜାତ ହେଲା । କାର୍ପେଟରେ ନ ଛୁଆଁଇ, ସେ ତା ପାଦକୁ ନେଇ ଧୀରେ ଚୌକି ତଳେ ରଖିଲା । ଟେବୁଲ ଉପରେ ଥିବା ଲ୍ୟାମ୍ପଟା ଓ ଶତରଞ୍ଜି

ଖେଳ ଆଡ଼କୁ ସେ ଟିକିଏ ଚାହିଁଲା । ସମସ୍ତ ସମୟରେ ସେ ଉଠି ପଡ଼ି, ଟେବୁଲ ପାଖକୁ ଯାଏ ଏବଂ ଗୋଟାଏ ଗୋଟାଏ ଗୁଟି ହାତରେ ଧରି ସେମାନଙ୍କ ସମ୍ବନ୍ଧ କଥା ହୁଏ । ପିସ୍ନେର୍ ଖେଳ ସରି ଗଲା ଆସିଲେ, ଇଭ୍ ଯାଇ ସେଗୁଡ଼ାକ୍ ଟିକିଏ ଛୁଇଁ ଦିଏ ।

ଇଭ୍ ତା ଆଣ୍ଠୁ ଟିକିଏ ହଲାଇଲା ; ତାର ମନେ ହେଲା ତାର ଗୋଡ଼ ଦୁଇଟି ଯେମିତି ପିମ୍ପୁଡ଼ିଙ୍କ ସାଙ୍ଗରେ ଆଗକୁ ଆଗକୁ ବଢ଼ୁଛି । ତାର ଶରୀର ଶକ୍ତ, ସମର୍ଥ ଓ ପୀଡ଼ାଦାୟକ ହୋଇଗଲା । ସେ ନିଜକୁ ଅତିଶୟ ଜୀବନ୍ତ ଓ ଦାବୀପ୍ରବଣ ବୋଧ କଲା । 'ମୁଁ ଏଠାରେ ଅଶରୀରୀ ହୋଇ ରହିବାକୁ ଚାହେଁ, ଯେମିତି ମୁଁ ତାଙ୍କୁ ଦେଖି ପାରିବି, କିନ୍ତୁ ସେ ମୋତେ ଦେଖି ପାରିବେ ନାହିଁ । ସେ ତ ମୋତେ ଲୋଡ଼ନ୍ତୁ ନାହିଁ; ଏହି କଷ୍ଟରେ ମୁଁ ଅଦରକାରୀ ।' ଟିକିଏ ମୁଣ୍ଡ ବୁଲାଇ, ସେ ପିସ୍ନେରର ମଥା ଉପରେ କାନ୍ଥକୁ ଅନାଇଲା । କାନ୍ଥରେ ଲିଖିତ ହୋଇଥିଲା—ଭୟ । ଇଭ ତାହା ଜାଣେ, କିନ୍ତୁ ପଢ଼ି ପାରୁ ନ ଥିଲା । ତା ଆଖି ଆଗରେ ନୃତ୍ୟ ନ କରିବା ଯାଏ, ସେ କାନ୍ଥରେ କାଗଜର ବଡ଼ ବଡ଼ ଗୋଲାପ ଫୁଲଗୁଡ଼ାକ ଆଡ଼କୁ ଅଧିକାଂଶ ସମୟରେ ଚାହିଁ ରହୁଥିଲା । ଗୋଲାପଗୁଡ଼ିକ ଗୁମ୍ଫାରେ ଦାଉ ଦାଉ ହୋଇ ଜଳୁଥିଲା । ଅଧିକାଂଶ ସମୟରେ ଶଯ୍ୟାର ଟିକିଏ ବାମ ଦିଗକୁ, ଗ୍ରୁଡ ପାଖରେ 'ଭୟ' ବୋଲି ଲେଖା ହୋଇଥାଏ, କିନ୍ତୁ ସମସ୍ତ ସମୟରେ ସେଠା ଦିଶୁଥାଏ । 'ମୋତେ ଉଠି ପଡ଼ିବାକୁ ହେବ । ମୁଁ ପାରୁ ନାହିଁ···ମୁଁ ଆଉ ବସି ରହି ପାରୁ ନାହିଁ ।' କାନ୍ଥରେ ଧଳା ବୁଦ୍‌ବୁଦ୍‌ଗୁଡ଼ାକ ପିଆଜର ଚେକା ଭଳି ଦିଶୁଥାଏ । ବୁତ୍ତଗୁଡ଼ିକ ଘୂରିଲେ, ଇଭର ହାତ ଥରିବାକୁ ଲାଗେ : ସମସ୍ତ ସମୟରେ ତାର ମନେ ହୁଏ ସେ ପାଗଳ ହୋଇ ଯାଉଛି । କିନ୍ତୁ ନା, ସେ ଭାବେ, 'ମୁଁ ପାଗଳ

ହୋଇ ଯାଇ ପାରିବ ନାହିଁ । ମୁଁ ବିନା ହତଚ୍ଛାଡ଼ା ହୋଇଯାଏଁ ।
ତା ଛଡ଼ା ଆଜି ତ କିଛି ନୁହେଁ ।'

ହଠାତ୍ ସେ ତା ହାତ ଉପରେ ପିୟେରର ହାତର ସ୍ପର୍ଶ ଅନୁଭବ କଲା ।

"ଆଗାଥ:", ପିୟେର ନରମ ଗଳାରେ ଡାକିଲା ।

ହେ ଇଭ୍ ଆଡ଼କୁ ଚାହିଁ ହସିଲା । କିନ୍ତୁ ଏକ ପ୍ରକାର ବିତୃଷ୍ଣାରେ ସେ ତାର ହାତ ପିଠିଟା ନିଜର ଆଙ୍ଗୁଳି ଅଗରେ ଧରି ପକାଇଲା, ଯେମିତି କି ସେ ଗୋଟାଏ କଙ୍କଡ଼ାକୁ ତା ପିଠିରୁ ଧରିଛି ।

ସେ କହିଲା, "ଆଗାଥା, ତୁମ ଉପରେ ମୁଁ ଆସ୍ଥା ରଖିବାକୁ ଚାହେଁ ।"

ଇଭ୍ ଆଖି ବୁଜି ଦେଲା ଏବଂ ତା ବକ୍ଷଟା କମ୍ପି ଉଠିଲା ।
'ମୋର ଆଦୌ ଉତ୍ତର ଦେବା ଉଚିତ ନୁହେଁ । ମୁଁ ଉତ୍ତର ଦେଲେ ସେ ରାଗିଯିବେ ଏବଂ ଆଜି କିଛି କହିବେ ନାହିଁ ।'

ପିୟେର ତା ହାତ ଛାଡ଼ି ଦେଇଥିଲା । ସେ କହିଲା, "ଆଗାଥା: ମୁଁ ତୁମକୁ ଭଲପାଏଁ, କିନ୍ତୁ ମୁଁ ତୁମକୁ ବୁଝି ପାରେ ନାହିଁ । ତୁମେ କାହିଁକି ସବୁ ବେଳେ ଏହି କକ୍ଷରେ ରହିଥାଅ କହିଲ ?"

ଇଭ୍ ଜବାବ ଦେଲା ନାହିଁ ।

"କୁହ କାହିଁକି ।"

"ତୁମେ ତ ଜାଣ, ମୁଁ ତୁମକୁ ଭଲପାଏଁ," ସେ କ୍ଷୀଣପ୍ରାଣ ଗଳାରେ କହିଲା ।

"ମୋର ତୁମକୁ ବିଶ୍ୱାସ ନାହିଁ," ପିୟେର୍ କହିଲା । "ତୁମେ ବା ମୋତେ କାହିଁକି ଭଲ ପାଇବ ? ମୁଁ ବରଂ ତୁମକୁ ଡରାଇବ : ମୁଁ ଭୂତଗ୍ରସ୍ତ ।" ସେ ହସି ପକାଇଲା, ମାତ୍ର ହଠାତ୍ ଗମ୍ଭୀର

ହୋଇଗଲା । "ତୁମ ଓ ମୋ ମଝିରେ ଅଛୁ ଗୋଟାଏ କାନ୍ଥ । ମୁଁ ତୁମକୁ ଦେଖୁଛି, ତୁମ ସାଙ୍ଗରେ କଥା ହେଉଛି, କିନ୍ତୁ ତୁମେ କାନ୍ଥର ଅପର ପାଖରେ ରହିଛ । ପ୍ରେମ ଠାରୁ ଆମକୁ କେଉଁ କଥା ଦୂରେଇ ରଖୁଛି ? ମୁଁ ଭାବୁଛି, ଆଗେ ତ ଏ ବାଧା ନ ଥିଲା । ଧାମବର୍ଗରେ ।"

"ହଁ," ଇଭ୍ ବିଷଣ୍ଣ ବଦନରେ କହିଲା । ସବୁବେଳେ ସେହି ଧାମବର୍ଗ । ସେମାନଙ୍କ ବାସ୍ତବ ଅତୀତର କଥା ସେ କେବେ କହେ ନାହିଁ । ସେ କି ଇଭ କେହି କେବେ ଧାମବର୍ଗକୁ ଯାଇ ନାହାନ୍ତି ।

"ଆମେ କେନାଲ କୂଳରେ ବୁଲୁଥିଲେ । ସେଠାରେ ଗୋଟାଏ ଜାହାଜ ରହିଥିଲା । ତୁମର ମନେ ଅଛି କି ? କଳା ଜାହାଜର ଡେକ୍‌ରେ ଗୋଟାଏ କୁକୁର ବୁଲୁଥାଏ··· ।"

ସେ ବନାଇ କହୁଥିଲା । ତାହା ମିଛ ବୋଲି ଜଣା ଯାଉଥିଲା ।

"ମୁଁ ତୁମ ହାତ ଧରିଥାଏଁ । ତୁମର ଅନ୍ୟ ରକମ ଚେହେରା ଥିଲା । ତୁମେ ଯାହା କହୁଥାଅ ମୁଁ ବିଶ୍ୱାସ କରୁଥାଏଁ । ଚୁପ୍ ରୁହ !" ସେ ପାଟି କଲା ।

ସେ ମୁହୂର୍ତ୍ତେ କାନ ଡେରି, ବିଷଣ୍ଣ ସ୍ୱରରେ କହିଲା, "ସେମାନେ ଆସୁଛନ୍ତି ।"

ଇଭ କ୍ରୁଦ୍ଧ ପଡ଼ିଲା । "ଏଁ, ସେମାନେ ଆସୁଛନ୍ତି ? ମୁଁ ତ ଭାବିଥିଲି, ସେମାନେ ଆଉ ଆଦୌ ଆସିବେ ନାହିଁ ।"

ଗତ ତିନି ଦିନ ହେଲା ପିଟ୍ରେର୍ ଟିକିଏ ଶାନ୍ତ ଥିଲା । ମୂର୍ତ୍ତିମାନେ ଆସି ନ ଥିଲେ । ନ ମାନିଲେ କଣ ହେବ, ପିଟ୍ରେର ମୂର୍ତ୍ତିମାନଙ୍କୁ ଭୀଷଣ ଭୟ କରୁଥିଲା । ଇଭ ଭୟ କରୁ ନ ଥିଲା :

କିନ୍ତୁ ସେମାନେ ଯେତେବେଳେ କକ୍ଷ ଭିତରେ ଭଁ ଭଁ ଶବ୍ଦ କରି ଉଡ଼ନ୍ତି, ତାର ପିଅେରଙ୍କୁ ଦେଖି ଭୟ ଲାଗେ ।

ଇଭର ପିଅେରର ଉପରେ ରାଗ ହେଲା । ପ୍ରତି ଥର ସେମାନେ ଆସିଲେ ସେ ସତର୍କ ହୋଇ ଯାଆନ୍ତି : କିପରି ସେ ଏହା କରନ୍ତି ? ତାଙ୍କର ତ କେବେ ଭୁଲ୍ ହୁଏ ନାହିଁ ।

ପିଅେର ଉଠି ପଡ଼ିଲାଣି ! ଇଭ ମନେ ମନେ କହିଲା : ମୁଁ ତୁମ ପରି ଭାବିବାକୁ ଚାହେଁ । ଗୋଟିଏ ଉପରେ ଭରା ଦେଇ, ପିଅେର ଗୋଡ଼ ଟିପିଟିପି ଚାଲିଲା । ନ୍ୟୂନତମ ସ୍ଥାନ ନେବା ପାଇଁ ସେ କମରରେ କହୁଣୀ ଦୁଇଟା ଚାପି ଧରିଥିଲା । ସେ ଫେରିଯାଇ ବସି ପଡ଼ିଲା ଏବଂ ଇଭ୍ ଆଡ଼କୁ ରୁକ୍ଷ ଦୃଷ୍ଟିରେ ଚାହିଁଲା ।

ସେ କହିଲା, "କାନ୍ଥରେ କଳା କାଗଜ ଲଗାଇବାକୁ ହେବ । ଏହି କୋଠରୀଟା ଯଥେଷ୍ଟ କଳା ନୁହେଁ ।"

ସେ ଆରାମ ଚୌକିରେ ଜାକିଜୁକି ହୋଇ ବସିଥିଲା । ଇଭ ବିଷଣ୍ଣ ବଦନରେ ତାର ଛୋଟ ଶରୀରଟି ଲକ୍ଷ୍ୟ କଲା : ତାର ହାତ, ଗୋଡ଼ ଓ ମୁଣ୍ଡ ସଙ୍କୁଚିତ ଅଙ୍ଗ ଭଳି ଦିଶୁଥିଲା ।

ଘଡ଼ିରେ ଛଅଟା ବାଜିଲା । ଉଲେ ପିଆନୋ ବାଜୁ ନ ଥିଲା । ଇଭ ଦୀର୍ଘଶ୍ୱାସ ଛାଡ଼ିଲା : ମୂର୍ତ୍ତିମାନେ ସିଧା ଚାଲି ଆସିବେ ନାହିଁ ; ସେମାନଙ୍କ ଆସିବାକୁ ଚାହିଁ ରହିବାକୁ ହେବ ।

"ଆଲୁଅ ଜାଳିବି ?"

ସେ ବରଂ ଅନ୍ଧାରରେ ଅପେକ୍ଷା କରିବ ନାହିଁ ।

"ତୁମ ଇଚ୍ଛା," ପିଅେର କହିଲା ।

ଡେସ୍କ ଉପରେ ଗୋଟିଏ ଲ୍ୟାମ୍ପଟିଏ ଥୁଆ ହୋଇଥିଲା । ଇଭ୍ ଜଳାଇ ଦେଲା । ଲାଲ କୁହୁଡ଼ିରେ କକ୍ଷଟି ପୂର୍ଣ୍ଣ ହୋଇଗଲା । ପିଅେର ବି ଚାହିଁ ରହିଥିଲା ।

ସେ କଥା କହିଲା ନାହିଁ । କିନ୍ତୁ ତାର ଓଠ ହଲଚଲ ହେଉଥିଲା—ଲାଲ୍ କୁହୁଡ଼ିରେ ଦୁଇଟି କଳା ଦାଗ । ଇଭ ପିଏରର ଓଠକୁ ପସନ୍ଦ କରେ । ଆଗରୁ, ସେ ଦୁଇଟି ବେଶ୍ ଜୀବନ୍ତ ଓ କାମୁକ ଥିଲେ । କିନ୍ତୁ ଏବେ କାମୁକତା ମରି ଗଲାଣି । ବର୍ତ୍ତମାନ ସେମାନେ ବିଚ୍ଛିନ୍ନ । ଏହି ଫାଙ୍କା ମୁଖଟିରେ ସେଇ ଦୁଇଟି ହିଁ ଥିଲେ ଜୀବନ୍ତ । ମାତ୍ର ଏକ୍ଷଣି ସେମାନେ ଦୁଇଟି ଉତ୍ପାତି ପ୍ରାଣୀ ପରି ଦିଶୁଛନ୍ତି । ପାଟିରେ ଶବ୍ଦ ନ କରି ଏହିପରି ଭାବରେ ଘଣ୍ଟା ଘଣ୍ଟା ଧରି ପିଏର ବଡ଼ର୍ ବଡ଼ର୍ କରିପାରେ ଏବଂ ଇଭ ବି ବେଳେ ବେଳେ ଏହି କ୍ଷୁଦ୍ର ଅବାଧ ଗତିବିଧିରେ ପ୍ରଲୋଭିତ ହୋଇଯାଏ—'ତାଙ୍କ ମୁଖଟି ମୁଁ ପସନ୍ଦ କରେ' । ପିଏର ଆଉ ତାକୁ ଚୁମ୍ବନ କରୁ ନାହିଁ । କେବେ ଯାଇ ସେ ତାର ହସ ଶୁଣିଥିଲା । ଫୁଲିଲା ଓଠ ଦୁଇଟା ତା ମୁହଁ ଉପରେ ରହିଥାଏ ସେତେବେଳେ ।

ସେହି ଘଟଣାଠୁ ସେ ଆଉ ଇଭ୍‌କୁ ଚୁମ୍ବନ କରି ନାହିଁ ।

"ଆଗାଥା, ମୋ ମୁହଁ ଆଡ଼କୁ ଅନାଅ ତ", ପିଏର କହିଲା ।

ଇଭ୍ ଆଖି ନୁଆଁଇଲା ।

ସେ ରୂଢ଼ ଭାବରେ କହିଲା, "ମୋତେ ଜଣା, ଲୋକେ ଓଠର ଭାଷା ବି ପଢ଼ି ପାରନ୍ତି ।"

ଚୌକିର ହାତ ଉପରେ ତା ହାତଟି ଥରିଲା । ତାର ତର୍ଜନୀ ଆଙ୍ଗୁଳିଟି ବାହାରି ଆସି ବୁଢ଼ା ଆଙ୍ଗୁଳିକୁ ତିନି ଥର ଆଘାତ କଲା ଏବଂ ଅନ୍ୟ ଆଙ୍ଗୁଳିଗୁଡିକ ବାଙ୍କି ଗଲା । ଆକ୍ରମଣ ଆରମ୍ଭ ହେବାକୁ ଯାଉଛି । ପିଏରକୁ କୁଣ୍ଢାଇ ପକାଇବାକୁ ତାର ଇଚ୍ଛା ହେଲା ।

ଅତି ବିକୃତ କଣ୍ଠରେ ଚଡ଼ା ଗଳାରେ ପିଏର କହିବାକୁ ଲାଗିଲା ।

"ସାଓ ପାଉଲୋକୁ ତୁମର ମନେ ପଡ଼ୁଛି ?"

ନିରୁତ୍ତର । ବୋଧହୁଏ ଏହା ଗୋଟାଏ ଫନ୍ଦ ।

ସନ୍ତୁଷ୍ଟ ଚିତ୍ତରେ ସେ କହିଲା, "ସେଠାରେ ମୁଁ ତୁମକୁ ଦେଖିଥିଲି ! ଜଣେ ଓଲନ୍ଦାଜ ନାବିକ ପାଖରୁ ମୁଁ ତୁମକୁ ନେଇ ଆସିଥିଲି । ଆମ ଭିତରେ ପ୍ରାୟ ହାତାହାତି ହୋଇଗଲା, କିନ୍ତୁ ମୁଁ ତାର ମଦ ଖର୍ଚ୍ଚଟା ଦେଇ ଦେବାରୁ ସେ ତୁମକୁ ମୋ ସାଙ୍ଗରେ ଛାଡ଼ି ଦେଲା । ଏ ସବୁ ଖାଲି ଅଛିଣ୍ଡିଆ କଥା ।"

ସେ ମିଛ କହୁଛି । ନିଜେ ଯାହା କହେ ସେ ତାହା ବିନ୍ଦୁ ବିସର୍ଗ ବି ବିଶ୍ୱାସ କରେ ନାହିଁ । 'ସେ ଜାଣନ୍ତି, ମୋ ନାମ ଅଗାଥା ନୁହେଁ । ସେ ମିଛ କହିଲା ବେଳେ ମୁଁ ତାଙ୍କୁ ଘୃଣା କରେଁ ।' କିନ୍ତୁ ଇଭ୍ ଦେଖିଲି, ପିଏରର ଦୃଷ୍ଟି ସ୍ଥିର ଓ ତାର କ୍ରୋଧ ମିଳାଇ-ଗଲା । ସେ ଭାବିଲା : 'ସେ ମିଛ କହୁ ନାହାନ୍ତି ।' ତଥାପି ସେ ଆଉ ଏହା ସହି ପାରିବ ନାହିଁ । ସେ ସେମାନଙ୍କ ଆଗମନର ଲକ୍ଷଣ ଅନୁଭବ କରୁଛି । ସେ ସେମାନଙ୍କ ସହିତ କଥା ହେଉଛି । ପିଏର ତା ହାତ ଦୁଇଟି ଚୌକିର ହାତ ଉପରେ ଥୋଇଲା । ମୁହଁଟା ମଳିନ ପଡ଼ିଗଲା । ଓଠରେ ଟିକିଏ ହସର ରେଖା ଲାଗି ରହିଥିଲା ।

ସେ କହିଲା, "ଏହି ସାକ୍ଷାତ ସବୁ ପ୍ରାୟ ଅଦ୍ଭୁତ, କିନ୍ତୁ ମୋର ମନେ ହୁଏ ଆକସ୍ମିକ ନୁହେଁ । କିଏ ତୁମକୁ ମୋ ପାଖକୁ ପଠାଇଲା, ମୁଁ ପଚାରୁନାହିଁ । ମୁଁ ଜାଣେ ତୁମେ ଜବାବ ଦେବ ନାହିଁ । ଯାହା ହେଉ, ମୋତେ ଭୁଲାଇ ରଖିବା ପାଇଁ ତୁମର ବୁଦ୍ଧିକୁ ଧନ୍ୟ ।"

ସେ ଅତି କଷ୍ଟରେ, କ୍ଷୀଣ ଓ ଦ୍ରୁତ କଣ୍ଠରେ, କହିଗଲା । କେତେ ଶବ୍ଦ ବି ତା ତୁଣ୍ଡରେ ପଶି ଟିକିଲି ନାହିଁ । ତଥାପି ସେ ଏଣୁ

ତେଣୁ ବକ ଯିବାକୁ ଲାଗିଲା । ଶେଷକୁ "ଟ୍ରାଲାଲା" ବୋଲି ଚିତ୍କାର କରି, ସେ ମୁହଁରେ ହାତ ଦେଲା । "ଟ୍ରାଲାଲାଲା, ଟ୍ରାଲାଲାଲାଲା !"

ସେ ନୀରବ ହୋଇଗଲା । ଇଭ ଜାଣିଲା, ମୂର୍ତ୍ତିମାନେ କକ୍ଷ ଭିତରେ ପ୍ରବେଶ କଲେଣି । ସେ ଶକ୍ତ, ବିବର୍ଣ୍ଣ ଓ ସଂଶୟାକୁଳ ଦିଶିଲା । ଇଭ ବି ଶକ୍ତ ହୋଇଗଲା ଏବଂ ଦୁହେଁ ନୀରବରେ ଅପେକ୍ଷା କରି ରହିଲେ । କେହି ଜଣେ ବାରଣ୍ଡାରେ ଠିଆହୋଇ ଥିଲା : ଗୃହକର୍ତ୍ତ୍ରୀ ମେଘ ନିଶ୍ଚୟ ଏକ୍ଷଣି ପହଞ୍ଚିଗଲା । ଇଭର ମନେ ପଡ଼ିଲା ଟଙ୍କା ପାଇଁ ତାଙ୍କୁ ଠଙ୍କା ଦେବାକୁ ହେବ । ତା'ପରେ ମୂର୍ତ୍ତିମାନେ ଉଡ଼ିବାକୁ ଲାଗିଲେ । ଇଭ ଓ ପିଯ୍ରେଙ୍କର ମଝିରେ ସେମାନେ ଗୃହିଗଲେ ।

"ଆଃ !" କହି ପିଯ୍ରେର ଗୋଡ଼ ଚଟିକୁ ନେଇଯାଇ, ଆରାମ ଚୌକିଟିର ଆଉଜି ପଡ଼ିଲା । ସେ ମୁହଁ ବୁଲାଇ ନେଲା, ଟିକିଏ ହସିବାକୁ ଚେଷ୍ଟା କଲା, କିନ୍ତୁ ଝାଳ ବିନ୍ଦୁ ସବୁ ତା କପାଳରେ ମୁକ୍ତା ଭଳି ଦିଶିଲା । ଏହି ପାଣ୍ଡୁର ଗଣ୍ଠି ଓ ଅସହନୀୟ କମ୍ପନରେ ବିକୃତ ତାର ମୁଖଟି ଦେଖି, ଇଭ୍ ଆଉ ସହି ପାରିଲା ନାହିଁ । ତାର ଆଖି ବୁଜିଗଲା । ଆଖିପତାର ରକ୍ତିମ ପୃଷ୍ଠଭୂମି ଉପରେ ସୁନାର ସୂତା ନାଚିବାକୁ ଲାଗିଲା । ସେ ନିଜକୁ ବୃଦ୍ଧ ଓ ଗୁରୁ ବୋଧ କଲା । ତା'ର ଅଦୂରରେ ପିଯ୍ରେର ସଘନ ଶ୍ୱାସ ଭିତରେ ଧଇଁସଇଁ ହେଉଥିଲା । ସେମାନେ ଉଡ଼ୁଛନ୍ତି, ସେମାନେ ଭଁ ଭଁ ଆବାଜ କରୁଛନ୍ତି, ସେମାନେ ପିଯ୍ରେର ଉପରେ ନଇଁ ପଡ଼ୁଛନ୍ତି । ଇଭ୍‌ର ଡାହାଣ କାନ୍ଧରେ ଟିକିଏ ଯନ୍ତ୍ରଣା ବୋଧ ହେଲା । ଆପେ ଆପେ ତାର ଶରୀର ବାମ ପଟକୁ ଢଳି ପଡ଼ିଲା, ଯେମିତି ସେ କୌଣସି ଅନିଚ୍ଛୁକ ସ୍ପର୍ଶରୁ ନିଜକୁ ବଞ୍ଚାଇବାକୁ ଚାହେଁ, ଏବଂ ଯେମିତି ସେ ଗୋଟାଏ କଦର୍ଯ୍ୟ ଗୁରୁ ପଦାର୍ଥକୁ ଏଡ଼ାଇବାକୁ

ଗୃହେ । ହଠାତ ଚଟାଣରେ ଶବ୍ଦ ହେଲା ଏବଂ ଆଖି ଖୋଲି ଦେବାକୁ ଇଭର ଭୀଷଣ ଇଚ୍ଛା ହେଲା । ଡାହାଣ ଆଡ଼କୁ ଅନାଇ ତା'ର ଡାହାଣ ହାତରେ ସେ ପବନଟା ଟିକିଏ ଆଡ଼େଇ ଦେବ ବୋଲି ଭାବିଲା ।

ସେ କିଛି କଲା ନାହିଁ । ଆଖି ମୁଦି ସେ ବସି ରହିଲା ଏବଂ ଗୋଟାଏ ତିକ୍ତ ଆନନ୍ଦରେ ଥରିବାକୁ ଲାଗିଲା । ସେ ଭାବିଲା, 'ମୋତେ ବି ଡର ମାଡ଼ୁଛି ।' ତାର ସମଗ୍ର ଜୀବନଟା ତାର ଡାହାଣ ପାର୍ଶ୍ୱରେ ଆଶ୍ରୟ ନେଇଥିଲା । ମୁଦ୍ରିତ ନୟନରେ ସେ ପିଣ୍ଡୁର ଆଡ଼କୁ ନଇଁ ପଡ଼ିଲା । ସାମାନ୍ୟ ପ୍ରୟାସରେ ସେ ପ୍ରଥମ ଥର ପାଇଁ ଏହି ବିନ୍ୟାଗ ବଧିର ଜଗତରେ ପ୍ରବେଶ କରିବ । ତାର ମନେ ହେଲା, ମୂର୍ତ୍ତିମାନଙ୍କୁ ତାର ଭୟ ହେଉଛି । ଏହା ଗୋଟାଏ ଭୟାବହ ଅନ୍ଧ ସ୍ୱୀକାରୋକ୍ତି, ଗୋଟାଏ କୁହୁକ । ତାର ସମସ୍ତ ବଳ ପ୍ରୟୋଗ କରି ସେ ସେମାନଙ୍କ ଅସ୍ତିତ୍ୱ ସ୍ୱୀକାର କରିବାକୁ ଚାହିଲା । ଯେଉଁ ଯନ୍ତ୍ରଣା ତା'ର ଡାହାଣ ଅଙ୍ଗଟାକୁ ପଙ୍ଗୁ କରି ଦେଇଥିଲା, ତାର ସ୍ପର୍ଶର ଅନୁଭୂତି ଭିତରୁ ସେ ଏକ ନୂତନ ଭାବ ଗ୍ରହଣ କରିବାକୁ ଚେଷ୍ଟା କଲା । ସେ ଅନୁଭବ କଲା, ସେମାନେ ତା ହାତ ଭିତରେ, କଡ଼ରେ ଓ କାନ୍ଧ ଉପରେ ଗମନାଗମନ କରୁଛନ୍ତି ।

ମୂର୍ତ୍ତିମାନେ ମନ୍ଥର ଗତିରେ ଚଳେ ଉଡ଼ୁଥିଲେ ଏବଂ ଶବ୍ଦ କରୁଥିଲେ । ଇଭ୍‌କୁ ଜଣାଥିଲା ଯେ ସେମାନଙ୍କର ଦୃଷ୍ଟି ଅଶୁଭ ଏବଂ ଆଖି ଫେଡ଼ାଲାର ଘୁର ପଟରୁ ସେମାନଙ୍କ ଆଖି ପତା ପଦାକୁ ବାହାରି ଆସିଥାଏ । ସେ ସେମାନଙ୍କ ଅଦ୍ଭୁତ କଦର୍ଯ୍ୟ ଚିହ୍ନଣ କଲା । ସେ ବି ଜାଣିଥିଲା ଯେ ସେମାନେ ଠିକ୍ ଜୀବନ୍ତ ନୁହନ୍ତି, ମାତ୍ର ସେମାନଙ୍କର ବିଶାଳ ଶରୀର ଉପରେ ମୁଣ୍ଡା ମୁଣ୍ଡା ମାଂସ ଓ

ଗରମ ଗରମ କାନ୍ଥ ଥାଏ ସେମାନଙ୍କର ପାପୁଲି କ୍ଷୟପ୍ରାପ୍ତ ଏବଂ ଆଙ୍ଗୁଳି-ଅଗରୁ ପଥର ଖସି ପଡ଼ିଥାଏ । ଇଭ ସେସବୁ କିଛି ଦେଖି ପାରିଲା ନାହିଁ । ସେ ଖାଲି ଭାବୁଥିଲା, ମାନବଙ୍କ ଦୃଷ୍ଟି ଓ ବୁଦ୍ଧିର ମସ୍ତକ ବିଶିଷ୍ଟ କେତେଗୁଡ଼ିଏ ଗମ୍ଭୀର ଓ କମ୍ପିତ କମାକାର ବିଶାଳକାୟା ନାରୀ ତାକୁ ଲାଗି ଆସୁଛନ୍ତି । ସେମାନେ ପିୟେରର ଉପରେ ନଇଁ ପଡ଼ୁଛନ୍ତି— ଇଭ ଏମିତି ଭୟଙ୍କର ଚେଷ୍ଟା କଲା ଯେ ତାର ହାତ ଥରିବାକୁ ଲାଗିଲା— "ସେମାନେ ମୋ ଉପରେ ନଇଁ ପଡ଼ୁଛନ୍ତି ।" ଗୋଟାଏ ଭୟାର୍ତ୍ତ ଚିତ୍କାର ହଠାତ୍ ତାକୁ ହତାଶ କରିଦେଲା । 'ସେମାନେ ତାଙ୍କୁ ଛୁଇଁ ଦେଲେଣି ।' ସେ ଆଖି ମେଲିଲା : ପିୟେରର ମଥା ନିଜ ହାତ ଭିତରେ ରହିଛି ଏବଂ ସେ ଧଇଁସଇଁ ହେଉଛି । ଇଭ୍ କ୍ଳାନ୍ତ ବୋଧ କଲା : ଗୋଟାଏ ଖେଳ । ସେ ଅନୁତପ୍ତ ହୋଇ ଭାବିଲା—'ଏଟା ଖାଲି ଗୋଟାଏ ଖେଳ । କ୍ଷଣକ ପାଇଁ ବି ମୁଁ ଏସବୁ ଆନ୍ତରିକ ଭାବରେ ବିଶ୍ୱାସ କରି ନାହିଁ । ଅଥଚ ସେ ସଦା ସର୍ବଦା ଭୋଗିବାରେ ଲାଗିଛନ୍ତି, ହେଁତ ଯେମିତି କି ଏ ସବୁ ବାସ୍ତବ ।'

ପିୟେର ହାତ ଗୋଡ଼ ଲମ୍ବାଇ ସହଜ ଭାବରେ ନିଶ୍ୱାସ ନେଲା । କିନ୍ତୁ ତାର ପ୍ରୁଅଷ୍ଠୋଲା ଦୁଇଟି ଅଦ୍ଭୁତ ଭାବରେ ପ୍ରସାରିତ ହୋଇ ଯାଇଥିଲା ଏବଂ ତା ଦେହରୁ ଝାଳ ବହୁଥିଲା ।

ପିୟେର ପଚାରିଲା, "ତୁମେ ସେମାନଙ୍କୁ ଦେଖିଲ ?"

"ମୁଁ ସେମାନଙ୍କୁ ଦେଖି ପାରିଲି ନାହିଁ ।"

"ତୁମ ପକ୍ଷରେ ତାହାହେଲେ ମଙ୍ଗଳ । ସେମାନେ ତୁମକୁ ଡରାଇଥାନ୍ତେ । ମୋର ହେଲେ ଅଭ୍ୟାସ ହୋଇ ଗଲାଣି ।"

ସେତେବେଳେ ଇଭର ହାତ ଥରୁଥିଲା ଏବଂ ତା ମଥାକୁ ରକ୍ତ ଚଢ଼ି ଯାଇଥିଲା । ପିୟେର ତା ପକେଟରୁ ଖଣ୍ଡିଏ ସିଗାରେଟ କାଢ଼ି, ମୁହଁ ପାଖକୁ ନେଲା । କିନ୍ତୁ ଲଗାଇଲା ନାହିଁ ।

ସେ କହିଲା, "ସେମାନଙ୍କୁ ଦେଖିଲେ କେତେ, ନ ଦେଖିଲେ କେତେ ! କିନ୍ତୁ ମୁଁ ଗୃହିଣୀ ନା, ସେମାନେ ମୋତେ ଛୁଅନ୍ତୁ । ମୋତେ ଡର ଲାଗୁଛି, ସେଥିରେ ମୋ ଶରୀରରେ କାଳେ ଚିହ୍ନ ରହିଯିବ ।"

ମୁହୂର୍ତ୍ତେ ଚିନ୍ତା କରି, ସେ ତା'ପରେ ପଚାରିଲା, "ତୁମେ କିଛି ଶୁଣିଲ ?"

ଇଭ୍ କହିଲା, 'ହଁ, ଗୋଟିଏ ଉଡ଼ାଜାହାଜର ଶବ୍ଦ ପରି ଶୁଭିଲା ।" (ଗତ ରବିବାର ଦିନ ପିୟେର ତାକୁ ଏହା କହିଥିଲା ।)

ପିୟେର ଅନୁକମ୍ପା ସହକାରେ ହସି କହିଲା, "ତୁମର ଅତିରଞ୍ଜନ ।" କିନ୍ତୁ ସେତେବେଳେ ତା ମୁହଁ ବିବର୍ଣ୍ଣ ଦିଶୁଥିଲା । ସେ ଇଭର ହାତ ଉପରେ ଆଖି ପକାଇଲା । "ତୁମ ହାତ ତ କମ୍ପୁଛି । ତାହାହେଲେ ତୁମର ଗୋଟାଏ ବେଶ୍ ଧାରଣା ହୋଇ ଯାଇଛି । କିନ୍ତୁ ଘାବରା ହେବାର କିଛି ନାହିଁ । ପୁଣି ଯାଇ କାଲି । ତା ଆଗରୁ ସେମାନେ ଆଉ ଫେରୁ ନାହାନ୍ତି ।" ଇଭ ତୁଣ୍ଡ ଫିଟାଇ ପାରିଲା ନାହିଁ । ତା ଦାନ୍ତ ଠକ୍ ଠକ୍ ବାଜୁଥିଲା ଏବଂ ତାର ଡର ହେଉଥିଲା କାଳେ ପିୟେର ଏହା ଦେଖି ନେବ । ପିୟେର ଡେରି ହେଲା ଯାଏ ତାକୁ ଲକ୍ଷ୍ୟ କଲା ।

"କି ଅନୁପମ ସୁନ୍ଦର ତୁମେ," ତା ମୁଣ୍ଡ ହଲାଇ, ସେ କହିଲା "ଏଟା ଭାରି କଠିନ, ଭାରି ଖରାପ ।"

ସେ ଶୀଘ୍ର ତା ହାତ କାଢ଼ି ଆଣି, ଇଭର କାନଟା ଆଉଁସି କହିଲା, "କେଡ଼େ ସୁନ୍ଦରୀ ସମ୍ଭ୍ରାନ୍ତ ରମଣୀ ! ତୁମରି ହେତୁ ମୋର ଟିକିଏ ଗୋଳମାଳ ହୋଇ ଯାଉଛି । ତୁମେ ଅନୁପମ ସୁନ୍ଦରୀ : ସେଇଟା ମୋତେ ଟାଣି ଧରୁଛି । ଯଦି ଚରିତ୍ରବୋଧ ପ୍ରଶ୍ନ ଉଠି ନ ଥାଆନ୍ତା·· ।"

ସେ ଅଟକିଗଲା ଏବଂ ଚମକି ପଡ଼ି ଇଭ୍ ଆଡ଼କୁ ଅନାଇଲା ।

"ସେ କଥା ନୁହେଁ ···ଏଇଟା ଆସିଲା···ଏଇଟା ଆସିଲା," ଅନର୍ଥକ ସ୍ୱରରେ ହସି, ସେ କହିଗଲା । "ମୋ ଜିଭ ଅଗରେ ଆଜି ଗୋଟାଏ କଥା ଥିଲା ···କିନ୍ତୁ ଏଇଟା ···ତା ବଦଳରେ ଆସିଗଲା । ମୁଁ ତୁମକୁ କଣ କହୁଥିଲି ଭୁଲି ଯାଉଛି ।"

ସେ ମୁହୂର୍ତ୍ତେ ଚିନ୍ତା କଲା, ଏବଂ ତା'ପରେ ମଥା ହଲାଇଲା ।

"ଆସ, ମୋତେ ନିଦ ମାଡ଼ୁଛି," ସେ କହିଲା । ପିଲାଳିଆ ସ୍ୱରରେ ସେ ପୁଣି କହିଲା, "ତୁମେ ଜାଣ, ଅଗାଥା, ମୁଁ ବାଳିଆ ହୋଇ ପଡ଼ୁଛି । ମୁଁ ଆଉ ସେ ସବୁ କଥା ମନେ ପକାଇ ପାରୁ ନାହିଁ ।"

ସିଗାରେଟ୍‌ଟା ଫିଙ୍ଗିଦେଇ ସେ କମ୍ବଳ ଉପରେ ଜହ୍ନର ଦୃଷ୍ଟି ପକାଇଲା । ଇଭ ତା ମୁଣ୍ଡ ତଳେ ଗୋଟାଏ ତକିଆ ଦେଇଦେଲା ।

"ଆସ ନା, ତୁମେ ବି ଶୋଇ ପଡ଼ିବ," ସେ ଇଭକୁ କହିଲା "ସେମାନେ ଆଜି ଆସିବେ ନାହିଁ ।"

···ଚର୍ବିତଚର୍ବଣ·········

ପିଅେର ସୁଷୁପ୍ତ । ତା ଅଧର କୋଣରେ ନର୍ଭସ୍‌ର ଦରହାସ । ମଥାଟି ଗୋଟିଏ ପାଖକୁ ଢଳି ପଡ଼ିଥିଲା : ଦେଖିଲେ ମନେ ହୁଏ ସେ ଯେମିତି ତା କାନ୍ଧରେ ନିଜ ଗାଲ ଛୁଇଁବାକୁ ବସିଥିଲା । ଇଭକୁ ନିଦ ମାଡୁ ନ ଥିଲା । ସେ ଚିନ୍ତାରେ ଭାରାକ୍ରାନ୍ତ ହୋଇ ଯାଇଥିଲା । ଚର୍ବିତ-ଚର୍ବଣ ! ହଠାତ୍ ପିଅେର ବୋକା ଭଳି ଦିଶିଲା ଏବଂ ତାର ଲମ୍ବ ଧଳା ମୁହଁରୁ କଥାଟା ଖସିଗଲା । ପିଅେର ଅବାକ୍ ହୋଇ ତା ଆଗକୁ ଚାହିଁ ରହିଥିଲା ଯେମିତି ସେ କଥାଟାକୁ ଛାଡ଼ିପାରୁଛି ଅଥଚ ଧ ପାରୁନ

ନାହିଁ । ତା'ର କଅଁଳ ପାଟି ମେଲା ହୋଇଥିଲା ଯେମିତି କଣ ଗୋଟାଏ ତା ଭିତରେ ଭାଙ୍ଗି ଯାଇଛି । ତା ପାଟି ଟଣା ମାରିଗଲା । ଏହି ପ୍ରଥମ ଥର ତାର ଏମିତି ହେଲା : ପିଏର ନିଜେ ବି ଏହା ଲକ୍ଷ୍ୟ କଲା । ସେ କହିଲା, ସବୁ କଥା ସେ ଆଉ ମନେ ପକାଇ ପାରୁ ନାହିଁ । ପିଏର ଗୋଟାଏ କାମନା କାତର କ୍ଷୁଦ୍ର ଅସ୍ପଷ୍ଟ ଶବ୍ଦ କଲା, ଆଉ ତା ହାତ ଅଲକ୍ଷ୍ୟରେ ହଲିଗଲା । ଇଭ କଠିନ ଦୃଷ୍ଟିରେ ତାକୁ ଚାହିଁ ରହିଲା : 'କପର ତାଙ୍କ ନାଦ ଭାଙ୍ଗିଛି' ଇଭ୍ ଦାନ୍ତ ଚିପିଲା । ପିଏର ପୁଣି ଶୋଇ ପଡ଼ିବା ମାତ୍ରେ ସେ ତାହା ଭାବିବାକୁ ଲାଗିଲା । ତାର ଭୟ ହେଲା, ହୁଏତ ପିଏରର ଉନ୍ମାଦ ନୟନରେ ଏଣୁ ତେଣୁ ବକବକ ଉଠି ପଡିବ । ଇଭ୍ ଭାବିଲା, 'ମୁଁ ବୋକା' କାରଣ ଫ୍ରାଙ୍କହ୍ ପ୍ରକାଶ କରିଥିଲେ ଯେ ବର୍ଷକ ଆଗରୁ ଏହି ଉପସର୍ଗ ଦେଖାଯିବ ନାହିଁ ।' କିନ୍ତୁ ତାର ଭୟ ଦୂର ହେଲା ନାହିଁ । ଗୋଟାଏ ବର୍ଷ, ଗୋଟାଏ ଶୀତ, ଗୋଟାଏ ବସନ୍ତ, ଗୋଟାଏ ଗ୍ରୀଷ୍ମ, ଆଉ ଗୋଟିଏ ଶରତର ପ୍ରାରମ୍ଭ । ଦିନେ ତାର ଅଙ୍ଗ ପ୍ରତ୍ୟଙ୍ଗ ବିକୃତ ହୋଇଯିବ, ତାର ଦାନ୍ତପାଟି ଝୁଲା ହୋଇଯିବ, ଆଉ ସେ ତାର ଲୋତକାର୍ଦ୍ର ନୟନ ଦରମେଲା କରି ଚାହିଁବ । ପିଏରର ହାତ ଉପରେ ନଇଁ ପଡି ଇଭ ସେଥିରେ ତା ଓଠ ଲଗାଇ ଦେଲା 'ତା ଆଗରୁ ମୁଁ ତୁମକୁ ଖୁନ କରି ଦେଇଥିବି '

— ଜାଁ ପଲ୍ ସାର୍ତ୍ର

# କାମନା

ପ୍ରେୟୋପ୍ରାର୍ଥୀମାନଙ୍କୁ ଶରାଘାତରେ ବଧ କରି କୌଶଳୀ ଇଉଲିସିସ୍ ଇଥାକାରେ ନିଜର ପ୍ରାସାଦରେ ଶାନ୍ତିମୟ ଦିନଗୁଡ଼ିକ ଯାପନ କରିବାକୁ ଲାଗିଲେ । ସେ ଅଜସ୍ର ଜ୍ଞାନ ସଞ୍ଚୟ କରିଥିଲେ । ତାଙ୍କର ଅନ୍ତର ନାନା ସ୍ମୃତିରେ ପରିପୂର୍ଣ୍ଣ ଥିଲା । ନିତି ସନ୍ଧ୍ୟା ବେଳେ ସେ ସ୍ତ୍ରୀ ପେନିଲୋପି ଓ ପୁତ୍ର ଟେଲିମେକାସର ମଝିରେ ବସି ସେମାନଙ୍କ ନିକଟରେ ନିଜର ଭ୍ରମଣ କାହାଣୀ ବର୍ଣ୍ଣନା କରୁଥିଲେ । କାହାଣୀ-ଗୁଡ଼ିକ ଶେଷ ହୋଇଗଲେ ପୁଣି ସେଗୁଡ଼ିକ ସେ କହିବାକୁ ଆରମ୍ଭ କରୁଥିଲେ ।

ତାଙ୍କର ଅସୀମ ସାହସିକ କାର୍ଯ୍ୟଗୁଡ଼ିକ ଭିତରେ ସେ ଯେଉଁଟା ପ୍ରାୟ ବରାବର କହୁଥିଲେ, ସେଟା ହେଉଛି ଫିନସିୟାନ-ମାନଙ୍କର ରାଜା ଅଲସିନୋୟାସ୍‌ଙ୍କ କନ୍ୟା ନସିକେୟା ସହିତ ତାଙ୍କର ସାକ୍ଷାତର ବିବରଣୀ ।

ସେ କହୁଥିଲେ—"ତାଙ୍କୁ ଦେଖିଲା ମାତ୍ରେ ସେ ଯେ କେତେ ସୁନ୍ଦରୀ, ସୁଶୀଳା ଓ ଦୟାମୟୀ ବୋଲି ମୋତେ ଜଣା ଗଲେ, ମୁଁ ତାହା କଦାପି ଭୁଲି ପାରିବ ନାହିଁ । ମୋର ଭଙ୍ଗା ଡଙ୍ଗା ଲାଗି

ଖଣ୍ଡିଏ କାଠ ଧରି ମୁଁ ତିନି ଦିନ ତିନି ରାତି ବିଶାଳ ସମୁଦ୍ରରେ ଭାସୁଥିଲି । ଅବଶେଷରେ ଗୋଟାଏ ଢେଉ ମୋତେ ନଦୀର ମୁହାଣ ଭିତରକୁ ଠେଲି ନେଇଗଲା । ମୁଁ କୂଳରେ ଲାଗିଲି । ପାଖରେ ଗୋଟିଏ ଗ୍ରୀଷ୍ମ ବଣ ଥିଲା । ବିବସନ ଥିଲି ବୋଲି କେତେଗୁଡ଼ିଏ ପତ୍ର ସଂଗ୍ରହ କରି ସେଗୁଡ଼ିକରେ ମୋର ଦେହ ଆଚ୍ଛାଦନ କଲି । ତା ପରେ ଶୋଇ ପଡ଼ିଲି । ହଠାତ୍ ପାଣି ଢାଳିବାର ଶବ୍ଦରେ ମୋର ନିଦ ଭାଙ୍ଗିଗଲା । ତା'ପରେ ଆନନ୍ଦ ହେଲ ଶୁଣିଲି । ଆଖି ଖୋଲିଲା କ୍ଷଣି ମୁଁ କେତେଗୁଡ଼ିଏ ତରୁଣୀଙ୍କୁ ଦେଖି ପାରିଲି । ସେମାନେ କୂଳରେ ଫେଣ୍ଡ୍ ଖେଳୁଥିଲେ । ସେତେବେଳେ ଫେଣ୍ଡ୍‌ଟି ଯାଇ ନଦୀର ଖର ସ୍ରୋତରେ ପଡ଼ିଥିଲା । ଖଣ୍ଡିଏ ପତ୍ର ଥିବା ଡାଳରେ ସଯତ୍ନରେ ମୋର ନଗ୍ନତା ଢାଙ୍କି ମୁଁ ଉଠି ଠିଆ ହୋଇଗଲି । ଯେଉଁ ଝିଅଟି ସବୁଠାରୁ ବେଶୀ ସୁନ୍ଦରୀ ଥିଲା, ମୁଁ ତାହାର ଆଡ଼କୁ ଆଗେଇ ଗଲି...... ।"

ପେନେଲୋପୀ ବାଧା ଦେଇ କହିଲେ—"ତୁମେ ତ ଏହି ଘଟଣାଟି ଆଗରୁ କହିଛ ।"

ଇଉଲିସିସ୍ ଜବାବ ଦେଲେ—"ସମ୍ଭବ ।"

ଟେଲିମେକାସ୍ କହିଲା—"ସେଥିରେ କି ଯାଏ ଆସେ ?"

ଇଉଲିସିସ୍ ପୁଣି କହିବାକୁ ଲାଗିଲେ—"ଏକ୍ଷଣି ବି ମୁଁ ତାଙ୍କୁ ମନଶ୍ଚକ୍ଷୁରେ ଦେଖୁଛି—ସେ ଘୋଡ଼ାଗାଡ଼ିରେ ବୁଲୁଛନ୍ତି, କେତେଗୁଡ଼ିଏ ଘୋଡ଼ାଙ୍କୁ ହାଙ୍କି ହାଙ୍କି । ସେମାନଙ୍କ ବେକରେ ଘଣ୍ଟି ବନ୍ଧା ଯାଇଛି । ଗାଡ଼ିଟି ଧଳା କନା ଓ ରଙ୍ଗୀନ ପଶମ ପୋଷାକରେ ଭରପୂର ହୋଇ ଯାଇଛି । ସେଗୁଡ଼ିକୁ ସେ ଓ ତାଙ୍କର ସହଚରୀବୃନ୍ଦ ଟିକିଏ ଆଗରୁ ନଦୀରେ କାଚୁଥିଲେ । ସେ ଗାଡ଼ି ଉପରେ ସାମନା ଆଡ଼କୁ ଟିକିଏ ଡେରି ଠିଆ ହୋଇଥାନ୍ତି, ଲଗାମଗୁଡ଼ା [illegible] ହାତରେ

ଟାଣି ଧରିଥାନ୍ତି; ଆଉ ସଞ୍ଜ ଆ ପବନ ପିଠାରେ ବନ୍ଧା ହୋଇଥିବା ତାଙ୍କର ସୁନେଲି କେଶଗୁଚ୍ଛକୁ ମସ୍ତକର ଗୁରି ପଟେ ଉଡ଼ାଇ ଦକାଉଥାଏ ଏବଂ ନମନୀୟ ପତ୍ରଚ୍ଛଦକୁ ତାଙ୍କର ସୁଠାମ ଦେହ ଲତା ସହିତ ଗୁପି ଧରିଥାଏ ।"

ନେଡେଲେମେକାସ୍ ପଗ୍ଋରିଲ—"ତା' ପରେ ?"

ଇଉଲସିସ୍ କହିଚାଲିଲେ—"ସେ ଥିଲେ ସୁଶିକ୍ଷିତା ଆମେ ସନ୍ଧ୍ୟା ସମୟରେ ପହଞ୍ଚିଲେ ତାଙ୍କ ସହିତ ଜଣେ ପୁରୁଷକୁ ଦେଖି କେହି ଯେମିତି ତାଙ୍କ ସମ୍ବନ୍ଧରେ କୌଣସି କୁ ମନ୍ତବ୍ୟ ବ୍ୟକ୍ତ କରି ନ ପାରେ, ସେଥିପାଇଁ ସେ ମୋତେ ତାଙ୍କ ପାଖରୁ ଗୁଲି ଯିବାକୁ ଅନୁରୋଧ କଲେ; କିନ୍ତୁ ମୋତେ ଉପଯୁକ୍ତ ଭାବରେ ଆଲସିନୋସ୍ଙ୍କ ପ୍ରାସାଦରେ ଅଭ୍ୟର୍ଥନା କରାଗଲା, ମୁଁ ସେଥିରୁ ସ୍ପଷ୍ଟ ଭାବରେ ବୁଝି ପାରିଲି ଯେ ତାଙ୍କର ଉଦାରଚେତା ପିତାମାତାଙ୍କ ନିକଟରେ ମୋର ବୃତ୍ତାନ୍ତଟି ସେ ନିଶ୍ଚୟ ବର୍ଣ୍ଣନା କରିଛନ୍ତି । ମୋର ଆସିବା ସମୟଟି ଗ୍ଭଡ଼ି ଦେଲେ ଅନ୍ୟ ବେଳେ ମୁଁ ତାଙ୍କୁ ଆଉ ଦେଖିବାକୁ ପାଇ ନାହିଁ ।

"ସେ ମୋତେ କହିଲେ ହେ ଅତିଥି, ଆପଣ ସ୍ୱଦେଶକୁ ଫେରିଗଲେ ଯେମିତି ମୋତେ ପାସୋରି ନ ଦିଅନ୍ତି, ସେଥିପାଇଁ ମୁଁ ଆପଣଙ୍କୁ ଅଭିବାଦନ ଜଣାଉଛି । ମୋ ନିକଟରେ ଆପଣ ଅବଶ ନିଜର ଜୀବନ ପାଇଁ ଋଣୀ ।

"ମୁଁ ତାଙ୍କୁ ଜବାବ ଦେଲି—ମହାମନା ଆଲସିନୋସ୍ଙ୍କ ନନ୍ଦିନୀ ନସିକେୟା, ଯଦି ପୃଥିବୀ-ପତିଙ୍କର ଇଚ୍ଛା ହୁଏ ଯେ ମୁଁ ପ୍ରତ୍ୟାବର୍ତ୍ତନ କ୍ଷଣଟିର ଆନନ୍ଦ ଉପଭୋଗ କରେ ଏବଂ ମୋର ଗୃହରେ ପୁନଃ ପ୍ରବେଶ କରେ, ତାହାହେଲେ ସେଠି ଦେବୀଙ୍କ ଭିତରେ ରହି ମଧ୍ୟ ମୁଁ ଦେବୀଙ୍କ ନିକଟରେ ପ୍ରାର୍ଥନା କଲା ଭଳି

ନିତ୍ୟ ଆପଣଙ୍କର ପ୍ରାର୍ଥନା କରିବି । କାରଣ ଆପଣ ମୋର ଜୀବନ ରକ୍ଷା କରିଛନ୍ତି । ତାଙ୍କ ଠାରୁ ଅଧିକ ସୁନ୍ଦରୀ ବା ଗୁଣବତୀ ଯୁବତୀ ମୁଁ ଆଉ କେଉଁଠି ଦେଖି ନାହିଁ । ମୋର ପର୍ଯ୍ୟଟନର ଦିନ ଶେଷ ହୋଇ ଯାଉଛି ବୋଲି ମୁଁ ଖୁବ୍ ନିଶ୍ଚିତ ଯେ ଆଉ କେବେ ହେଲେ ତାଙ୍କୁ ଦେଖି ପାରିବି ନାହିଁ ।"

ଟେଲିମେକାସ୍ ପଚାରିଲା—"ଆପଣ କ'ଣ ମନେ କରନ୍ତି, ଯୁଦ୍ଧ ଭିତରେ ତାହାର ବିବାହ ହୋଇ ଯାଇଥିବ ?"

"ସେତେବେଳେ ତାଙ୍କର ବୟସ ଥିଲା ମାତ୍ର ପନ୍ଦର ବର୍ଷ । ସେ ତ କାହା ନିକଟରେ ବାଗ୍‌ଦତ୍ତା ହୋଇ ନ ଥିଲେ ।"

"ଆପଣ କ'ଣ ତାଙ୍କୁ କହିଥିଲେ ଯେ ଆପଣଙ୍କର ଗୋଟିଏ ପୁଅ ଅଛି ?"

"ହଁ । ତାଙ୍କୁ ପୁଣି ଥରେ ଦେଖିବା ପାଇଁ ମୋର ଅନ୍ତର ବେଦନାରେ କ୍ଷୟ ହୋଇ ଯାଉଛି ।"

"ତାଙ୍କ ଆଗରେ କ'ଣ ମୋର ପ୍ରଶଂସା କରିଥିଲେ ?"

"କରିଥିଲି, ଯଦିଓ ମୁଁ ସେତେବେଳେ ତୋତେ ଖୁବ୍ କମ୍ ଜାଣିଥିଲି । ଯେତେବେଳେ ମୁଁ ଇଥାକା ଛାଡ଼ିଲି, ସେତେବେଳେ ତୁ ତୋର ମାଆର କୋଳରେ ଶିଶୁଟିଏ ହୋଇଥିଲୁ ।"

× × × ×

ଇତ୍ୟବସରରେ ରାଣୀ ପେନିଲୋପୀ ପୁତ୍ରର ବିବାହ ଉଦ୍ଦେଶ୍ୟରେ ଦେଶର ସବୁ ଠାରୁ ବେଶୀ ସୁନ୍ଦରୀ କନ୍ୟାମାନଙ୍କୁ ଖୋଜି ଖୋଜି କରି ଟେଲିମେକସ୍‌କୁ ଦେଖାଇବାକୁ ଲାଗିଲେ । ସେ ଡୁଲିଚିଅମ୍‌ର ରାଜକୁମାରୀଙ୍କୁ, ସ୍ୟାମସର ରାଜକନ୍ୟାଙ୍କୁ, ଜାସିନ୍ଥୋସ୍ ରାଜାର ନନ୍ଦିନୀଙ୍କୁ ତାଙ୍କୁ ଦେଖାଇଲେ ।

ପ୍ରତି ଥର ଟେଲିମେକାସ୍ କହିବାକୁ ଲଗିଲା—"ମୁଁ ତାକୁ ଗ୍ରହେ ନା । ମୁଁ ଆଉ ଜଣକୁ ଜାଣେ ଯେ ତା ଠାରୁ ଆହୁରି ଭଲ ଓ ସୁନ୍ଦରୀ ।"

"ସେ କିଏ ?"

"ନସିକେୟା, ଫିନସିୟାନଙ୍କ ରାଜାର ଝିଅ ।"

"ତୁ ତ ତାକୁ ଦେଖି ନାହୁଁ । ତା ବିଷୟ କେମିତି କହି ପାରୁଛୁ ?"

ଟେଲିମେକାସ୍ ଜବାବ ଦେଲା—"ମୁଁ ତାକୁ ଦେଖିଛି ।"

ସତକୁ ସତ ଟେଲିମେକାସ୍ ଦିନେ ତାହାର ବାପାଙ୍କୁ କହିଲା :

"ବାପା, ମୋର ମନ ହେଉଛି, ମୁଁ ଖଣ୍ଡିଏ ଜାହାଜରେ ଚଢ଼ି ମାଝରେ ପଡ଼ିଥିବା ସାଗରର ବକ୍ଷ ଚିରି ଫିନସିୟାନ୍‌ମାନଙ୍କର ସେହି ଦ୍ୱୀପଟି ଆଡ଼କୁ ଭାସି ଯାଆନ୍ତି, ଏବଂ ସେଠାରେ ପହଞ୍ଚି ରାଜା ଆଲସିନୋୟସ୍‌ଙ୍କ ନିକଟରେ ତାଙ୍କର ସୁନ୍ଦରୀ କନ୍ୟା ନସିକେୟାର ପାଣି-ପ୍ରାର୍ଥନା କରନ୍ତି । ସେହି କୁମାରୀ, ଯାହାକୁ ମୁଁ କେବେ ଦେଖି ନାହିଁ, ତାହାରି ପାଇଁ ମୋର ଅନ୍ତର ପ୍ରେମରେ ଦଗ୍ଧ ହେଉଛି । ଯଦି ଆପଣ ମୋ ସଙ୍କଳ୍ପରେ ବାଧା ଦିଅନ୍ତି, ତାହାହେଲେ ମୁଁ ଜୀବନରେ କଦାପି ବିବାହ ନ କରି ଆପଣଙ୍କର ଏହି ପ୍ରାସାଦରେ ବାସ କରି କରି ବୁଢ଼ା ହୋଇଯିବି । ଆପଣ କୌଣସି ପୌତ୍ରର ମୁଖ ଦେଖି ପାରିବେ ନାହିଁ ।"

କୌଶଳୀ ଇଉଲିସିସ୍ ଉତ୍ତର ଦେଲେ,

"ଏଥିରେ କୌଣସି ସନ୍ଦେହ ନାହିଁ ଯେ, କୌଣସି ଦେବତା ନିଶ୍ଚୟ ତୋ ମନ ଭିତରେ ଏହି ବାସନା ଜଗାଇଛନ୍ତି । ଯେଉଁ ଦିନ ମୁଁ ତୋ ନିକଟରେ ସେହି ରାଜକୁମାରୀଟିର କଥା କହିଥିଲି,

ମୁଁ ଦେଖି ପାରୁଛି, ସେହି ଦିନ ଠାରୁ ତୋର କୌଣସି ଉପାଦେୟ ଖାଦ୍ୟରେ ରୁଚି ନାହିଁ ଏବଂ ଆଖିର କୋଣରେ କଳା ଦାଗ ପଡ଼ିଗଲାଣି । ଯାହାକୁ ତୁ କେବେ ଦେଖି ନାହୁଁ ଏବଂ ଯାହାକୁ ନ ପାଇଲେ ତୁ ଜୀବନ ଧାରଣ କରି ପାରିବୁ ନାହିଁ, ତାଙ୍କୁ ଖୋଜିବା ପାଇଁ ଖଣ୍ଡିଏ ଦ୍ରୁତଗାମୀ ଜାହାଜରେ ଊଣେଇଶ ଜଣ ନାବିକଙ୍କୁ ଧରି ବାହାରି ପଡ଼ ; କିନ୍ତୁ ତୋତେ ବାଟରେ ନାନା ପ୍ରକାର ବିପଦ ବିଷୟରେ ସତର୍କ କରି ଦେଉଛି । ଯଦି ପବନର ଅତ୍ୟଧିକ ବେଗ ହେତୁ ଦୈବାତ୍ ପଲିଫେମାସର ଦ୍ୱୀପରେ ଯାଇ ଲାଗୁ, ତାହାହେଲେ ସାବଧାନ, କଦାପି ତା ପାଖକୁ ଯିବୁ ନାହିଁ । ଅଥବା ଯଦି ଝଡ଼ରେ ତୋତେ ନେଇ ବାଲୁ ତଟରେ ଫିଙ୍ଗିଦିଏ, ତାହାହେଲେ କୌଣସି ମତେ ଲୁଚି ରହିବୁ, ଏବଂ ତୋର ଜାହାଜ ଖଣ୍ଡିକ ସମୁଦ୍ରରେ ଭାସିବାର ଉପଯୋଗୀ ହେଲା ମାତ୍ରେ ପଳାଇଯିବୁ; କିନ୍ତୁ ସାଇକ୍ଲୋପସ୍‌କୁ ଦେଖିବାକୁ ଚେଷ୍ଟା କରିବୁ ନାହିଁ । ମୁଁ ମୋର ଭ୍ରମଣ କାଳରେ ତାହାର ଆଖି ଉପାଡ଼ି ଦେଇଥିଲି । ସେ ଅନ୍ଧ ହେଲେ ସୁଦ୍ଧା ଏବେ ବି ସେମିତି ଦୁର୍ଦ୍ଧର୍ଷ ଅଛି । ଲିଟସୁଆମାନଙ୍କ ଦେଶ ଠାରୁ ଦୂରରେ ରହିବୁ । ଯଦି କେବେ ସେମାନଙ୍କ ଦେଶରେ ପହଞ୍ଚି ଯାଉ, ତାହାହେଲେ ସେମାନେ ଯେଉଁ ଫୁଲଟି ତୋତେ ଦେବେ ତାହା କଦାପି ଖାଇବୁ ନାହିଁ । କାରଣ ସେହି ଫୁଲଟି ଲୋକଙ୍କୁ ସବୁ କିଛି ଭୁଲାଇ ଦେବ । ଏଇୟା ଦ୍ୱୀପଟି ମଧ୍ୟ ଭଲ ନୁହେଁ । ସେଇଟା ହେଉଛି ସୁକେଶୀ ସାରସର ରାଜ୍ୟ । ସେ ଯାଦୁଦଣ୍ଡ ଛୁଆଁଇ ମଣିଷଙ୍କୁ ଘୁଷୁରି କରି ରଖିଦିଏ । ଯଦି କେବେ ଦୁର୍ଭାଗ୍ୟ ବଶତଃ ତୋର ତା ସହିତ ସାକ୍ଷାତ ହୁଏ, ତାହାହେଲେ ଏହି ଗଛଟି ସାଙ୍ଗରେ ଧରିଥା । ଏହାର ଚେର କଳା, ଫୁଲ ଦୁଧ ପରି ଧଳା । ଦେବତାମାନେ ଏହି ଗଛଟିକୁ ମୋଲି ବୋଲି କହନ୍ତି ।

ମାତାଶ୍ରୀ ମୋତେ ଏହା ଦେଇଥିଲେ । ଏହାର ସାହାଯ୍ୟରେ ତୁ ସେହି ଲକ୍ଷ୍ୟଭେଦ ଉଦ୍ଧାରଣୀଟିକୁ ପ୍ରସ୍ତୁତ ସଫଳ କରିଦେଇ ପାରିବୁ ।"

ସାଇରେନମାନଙ୍କର, ସାଟିଗୋଡ଼ସ୍ନମାନଙ୍କର ଓ ସୂର୍ଯ୍ୟର ଦ୍ୱୀପରେ ଯେଉଁ ବିପଦ ଘଟିପାରେ, ଇଉଲିସିସ୍ ସେ ବିଷୟରେ ବି ତାଙ୍କୁ ସତର୍କ କରିଦେଲେ । ସେ ଉପସଂହାରରେ କହିଲେ, —"ବାବା, ମୋ କଥାଗୁଡ଼ାକ ଠିକଏ ମନେ ରଖିଥିବୁ । କାରଣ ମୁଁ ଚାହେଁ ନା ଯେ, ମୁଁ ଯେଉଁସବୁ ସାଂଘାତିକ କାମ କରିଥିଲି ତୁ ପୁଣି ସେଗୁଡ଼ାକ କରିବୁ ।"

ଟେଲିମେକାସ୍ ପ୍ରତିଶ୍ରୁତି ଦେଲା—"ମନେ ରଖିବି, ବାପା । ଆପଣଙ୍କର ସବୁ ଉପଦେଶ ମନେ ରଖିବି । ପ୍ରତ୍ୟେକ ବାଧା, ଏପରିକି ପ୍ରତ୍ୟେକ ଆନନ୍ଦ ବି ଯଦି ଜ୍ଞାନୀ ଆଲସିନୋୟସଙ୍କ ଦ୍ୱୀପକୁ ଯିବା ବାଟରେ ବିଳମ୍ବ ଘଟାଏ, ତାହାହେଲେ ତାହା ହେବ ମୋର ଶତ୍ରୁ ।"

× × × ×

ସତର ସତ ତରୁଣ ଟେଲିମେକାସ୍ ଦିନେ ଯାତ୍ରା ଆରମ୍ଭ କଲା । ତାହାର ଅନ୍ତର ନସିକେୟା ପ୍ରତି ଅନୁରାଗରେ ପରିପୂର୍ଣ୍ଣ ହୋଇଥିଲା ।

ଦିନେ ପ୍ରଚଣ୍ଡ ଝଡ଼ ତାକୁ ବିପଥରେ ନେଇ ପକାଇଦେଲା । ପଲିଫେମାସ୍‌ର ଦ୍ୱୀପ ଅତିକ୍ରମ କରିବା ସମୟରେ ତାହାର ପିତା ଅଜ୍ଞାତରେ ଯେଉଁ ଦୈତ୍ୟଟିକୁ ଜବ୍ଦ କରିଥିଲେ, ତାକୁ ଦେଖିବା ଲାଗି ତାହାର ମନରେ କୌତୂହଳ ଜାତ ହେଲା ।

ସେ ମନେ ମନେ କହିଲା—"ବିପଦଟା ଗୁରୁତର ନୁହେଁ । ରଣ ଦୈତ୍ୟଟା ବର୍ତ୍ତମାନ ଅନ୍ଧ ।"

ଉପସାଗରଟିର ଶେଷ ଭାଗରେ ଜହାଜଟି ନଙ୍ଗର କରି ସେ ଏକ କୂଳରେ ଓହ୍ଲାଇଲା । ଇତସ୍ତତଃ ତରୁ-କୁଞ୍ଜ ଓ ମେଷପାଳ-ସିଞ୍ଚିତ ଉର୍ବର ଓ ତରଙ୍ଗାୟିତ ତଟଭୂମି ଉପରେ ତାକୁ ପରିଷ୍କାର ଦେଖାଯିବାକୁ ଲାଗିଲା, ଚକ୍ରବାଳ ରେଖାରେ ଶୈଳ ଶ୍ରେଣୀର ନିମ୍ନ ଭାଗର ପଛ ଆଡ଼ ଉଠିଲା ଗୋଟାଏ ପ୍ରକାଣ୍ଡ ମୁଣ୍ଡ, ତା'ପରେ ସମୁଦ୍ର ପର୍ଯ୍ୟନ୍ତ ପ୍ରସାରିତ ମାଂସଳ ଶୈଳ ଭଳି ସ୍କନ୍ଧ ଦେଶ, ଏବଂ ତା'ପରେ ଗିରି ସଙ୍କଟ ପରି ବନାଚ୍ଛନ୍ନ ବକ୍ଷ ସ୍ଥଳ ।

ମୁଣ୍ଡ,ଟିକ ଭିତରେ ଗୋଟିଏ ସୁବିଶାଳ ବାହୁ ଆସି ଟେଲି-ମେକାସ୍‌କୁ ଗୃହି ଧରିଲା । ସେ ଦେଖି ପାରିଲା, ତା ଉପରେ ଝୁଙ୍କି ପଡ଼ି ତାଲ ପରି ଗୋଟାଏ ପ୍ରକାଣ୍ଡ ଆଖି ତାକୁ ଲକ୍ଷ୍ୟ କରୁଛି ।

ଟେଲିମେକାସ୍ ପଚାରିଲା—"ତାହାହେଲେ ତୁମେ ଅନ୍ଧ ନୁହଁ ?"

ପଲିଫେମାସ୍ ଉତ୍ତର ଦେଲା—"ମୋର ବାପା ନେପଚ୍ୟୁନ୍ ମୋତେ ଆରୋଗ୍ୟ କରିଛନ୍ତି । ତୁମ ଜାତିର ଜଣେ ଶ୍ରେଷ୍ଠ ମଣିଷଟାଏ ମୋତେ ଦିନର ଆଲୁଅରୁ ବଞ୍ଚିତ କରିଥିଲା । ସେଥିପାଇଁ ମୁଁ ତୋତେ ଖାଇବି ।"

ଟେଲିମେକାସ୍ କହିଲା—"ତୁମେ ଭୁଲ୍ କରିବ । ଯଦି ତୁମେ ମୋତେ ବଞ୍ଚି ରହିବାକୁ ଦିଅ, ତାହାହେଲେ ମୁଁ ତୁମକୁ ଅନେକ ସୁନ୍ଦର ଗଳ୍ପ କହି ଆମୋଦ ଦେବି ।"

ପଲିଫେମାସ୍ କହିଲା—"ହେଉ, ମୁଁ ଶୁଣିବି ।"

ଟେଲିମେକାସ୍ ଟ୍ରୋଜାନ ଯୁଦ୍ଧର ଗଳ୍ପ କହିବାକୁ ଆରମ୍ଭ କଲା । ରାତି ହୋଇ ଯିବାରୁ ଦୈତ୍ୟ କହିଲା—"ଏକ୍ଷଣି ଶୋଇବାର ସମୟ; କିନ୍ତୁ ଆଜି ଆଉ ତୋତେ ଖାଇବି ନାହିଁ । କାରଣ ମୁଁ ଗଳ୍ପର ଶେଷଟା ଶୁଣିବାକୁ ଚାହେଁ ।"

ନଭ ସଞ୍ଜ ବେଳେ ଦୈତ୍ୟଟି ସେହି କଥା କହେ । ଏହିପରି ଭାବରେ ତିନୋଟି ବର୍ଷ ଗଡ଼ିଗଲା ।

ପ୍ରଥମ ବର୍ଷ ଟେଲିମେକାସ୍ କହିଲା, ଟ୍ରାଇପୁରର ରାଜଧାନୀ ଅବରୋଧର କାହାଣୀ । ଦ୍ୱିତୀୟ ବର୍ଷ କହିଲା, ଆଗାମାମନେ ଓ ମେନେଲେସ୍ଙ୍କର ପ୍ରତ୍ୟାବର୍ତ୍ତନ । ତୃତୀୟ ବର୍ଷ କହିଲା, ଇଉଲିସିସ୍ ର ପ୍ରତ୍ୟାବର୍ତ୍ତନ, ତାଙ୍କର ଅସୀମ ସାହସିକ କାର୍ଯ୍ୟ-କଳାପ ଓ ତାଙ୍କର ବସ୍ତୁ ସକର ଚତୁରତାର କାହାଣୀ ।

ପଲିଫେମାସ୍ କହିଲା—"ତୁମେ ଖୁବ୍ ସାହସୀ । ଯେଉଁ କ୍ଷୁଦ୍ର ମଣିଷଟା ମୋତେ ଏମିତି ଖିଷଣ ଭାବରେ ଆହତ କରିଥିଲା, ମୋର ସାମନାରେ ତାହାର ପ୍ରଶଂସା କରୁଛ ।"

ଟେଲିମେକାସ୍ ଦୃଢ଼ ସ୍ୱରରେ କହିଲା—"କିନ୍ତୁ ସେହି ମଣିଷଟିର ବୁଦ୍ଧିର କଥା ମୁଁ ତୁମ ଆଗରେ ଯେତେ ପ୍ରକାଶ କରିବି, ତାହା ଦ୍ୱାରା ପରାଜିତ ହେବାର ଲଜ୍ଜା ତୁମର ସେତେ କମିଯିବ ।"

ଦୈତ୍ୟ ତାକୁ ପ୍ରଶଂସାସୂଚକ ବାଣୀ ଶୁଣାଇଲା—"ଯୁକ୍ତି ସଙ୍ଗତ କଥା କହୁଛ । ମୁଁ ତୋତେ କ୍ଷମା କଲି । ଯଦି କୌଣସି ଦେବତା ମୋର ଦୃଷ୍ଟି ଶକ୍ତି ଫେରାଇ ନ ଦେଇ ଥାଆନ୍ତା, ତାହା-ହେଲେ ମୁଁ ତୁମ ସାଙ୍ଗରେ ଅନ୍ୟ ରକମ ବ୍ୟବହାର କରିଥାଆନ୍ତି; କିନ୍ତୁ ଅତୀତର ଦୁଃଖ-କଷ୍ଟ ଆଜି ସ୍ୱପ୍ନ ହୋଇ ଯାଇଛି ।"

× × × ×

ତୃତୀୟ ବର୍ଷର ଶେଷ ଭାଗରେ ଟେଲିମେକାସ୍ ବୃଥା ନିଜର ସ୍ମୃତି-ଭଣ୍ଡାର ଅନ୍ୱେଷଣ କରିବାକୁ ଲାଗିଲା । ଦୈତ୍ୟଟିକୁ କହିବା ଭଳି ଆଉ କିଛି କାହାଣୀ ସେ ଖୋଜି ପାଇଲା ନାହିଁ । ତେଣୁ ସେ ଏକା କାହାଣୀ ପୁଣି କହିବାକୁ ଆରମ୍ଭ କଲା । ପଲିଫେମାସ୍ ମଧ୍ୟ

ସେଥିରେ ପ୍ରବଳ ଜଣ ଆନନ୍ଦ ଉପଭୋଗ କରିବାକୁ ଲାଗିଲା ।
ଏହିପରି ଭାବରେ ଆଉ ତିନୋଟି ବର୍ଷ ଗଡ଼ିଗଲା ।

କିନ୍ତୁ ଟେଲିମେକାସ୍‌କୁ ବୋଧ ହେଲା ନାହିଁ ଯେ, ଇଲିସ୍‌ର ଅବରୋଧ ଓ ବୀରମାନଙ୍କର ପ୍ରତ୍ୟାବର୍ତ୍ତନର କାହାଣୀଟି ଦୃଷ୍ଟାପୁ ଥର କହିବା ଭଳି ସାହସ ତାହାର ଅଛି । ସେ ପଲିଫେମାସ୍ ନିକଟରେ ଏହା ସ୍ୱୀକାର କଲା ଏବଂ ତହିଁ ସଙ୍ଗେ ସଙ୍ଗେ କହିଲା —"ମୁଁ ବୃଦ୍ଧ, ତୁମେ ବରଂ ମୋତେ ଖାଇ ଦିଅ । ମରଣ ବେଳେ ମୋର କେବଳ ଗୋଟିଏ ବିଷୟରେ ଦୁଃଖ ରହିଯିବ— ତାହା ହେଉଛି ସୁନ୍ଦରୀ ନସିକେଆକୁ ମୁଁ ଏ ଯାଏ ଦେଖି ପାରିଲି ନାହିଁ ।"

ନିରବେରେ ସେ ନିଜର ପ୍ରେମ ଓ ବେଦନାର କଥା କହିଗଲା । ସେ ହଠାତ୍ ଦେଖି ପାରିଲା, ଦୈତ୍ୟର ଆଖିରେ ଲୁହ ଟିକେ ବଡ଼ ଲୋତକ ବିନ୍ଦୁ ଟିଏ ଟଳ ଟଳ ହେଉଛି । ଦୈତ୍ୟ ତା ଆଖିରୁ ଲୁହ ପୋଛି କହିଲା—"ଯାଅ । ତୁମେ ଯାହାକୁ ଭଲ ପାଅ ତାକୁ ସନ୍ଧାନ କର । ମୋତେ ଆଗରୁ ଏ କଥା କହିଲ ନାହିଁ କାହିଁକି ?"

ଟେଲିମେକାସ୍ ଭାବିଲା, ସତରେ ମୁଁ ଆଗରୁ ଏହି କଥାଟି ଆରମ୍ଭ କରିଥିଲେ ତ ଭଲ ହୋଇ ଥାଆନ୍ତା । ମୋର ଭୁଲ ହେଉଁ ଛଅଟି ବର୍ଷ ମୁଁ ଅଯଥା ହରାଇଲି । ଏହା ସତ ଯେ ଲଜ୍ଜା ମୋତେ ଏହି କଥାଟି ଆଗରୁ କହିବାରେ ବାଧା ଦେଇଥିଲା । ମୁଁ ମରିବାକୁ ଯାଉଛି, ଏହି ବିଶ୍ୱାସରେ ଆଜି କଥାଟି ପ୍ରକାଶ କଲି ।

ସେ ଖଣ୍ଡିଏ ନୌକା ତିଆରି କଲା । କାରଣ ଯେଉଁ ଜାହାଜଟି ସେ ଉପସାଗରରେ ରଖି ଆସିଥିଲା, ତାହା ବହୁ ଦିନରୁ

ଅଦୃଶ୍ୟ ହୋଇ ଗଲାଣି । ପୁଣି ସେ ଗଞ୍ଜାର ସମୁଦ୍ରପଥରେ ଯାତ୍ରା ଆରମ୍ଭ କଲା ।

ଆଜ ଗୋଟାଏ ଝଡ଼ ତାକୁ ନେଇ ସାରସୀର ଦ୍ୱୀପରେ ଫିଙ୍ଗି ଦେଲା । ସେ ଦେଖିଲା, ଗୋଟିଏ ବଗିଚାର ଅରଣ୍ୟର ଘନେନଣ ପଥରେ ଲତା ଓ ଫୁଲମାଳରେ ତିଆରି ଗୋଟିଏ ଦୋଳାରେ ବସି ଜଣେ ନାରୀ ଧୀରେ ଧୀରେ ଝୁଲୁଛି । ତାହାର ମସ୍ତକରେ ପଦ୍ମରାଗ ମଣି ଖଚିତ ମୁକୁଟ, ଭ୍ରୂ ଯୁଗଳ ଯୁକ୍ତ ଏବଂ ମୁଖ-ବିବର ଶତ ଠାରୁ ବି ଲାଲ । ତାହାର ସ୍ତନ ଓ ବାହୁ ଦୁଇଟି ଜାଫରାନ୍ ପରି ହଳଦିଆ । ତାହାର ସବୁଜ ରଙ୍ଗର ସ୍ୱଚ୍ଛ ପୋଷାକ ଉପରେ ମୂଲ୍ୟବାନ ପଥରର ଫୁଲ ପଡ଼ିଛି ଏବଂ ଜର୍ଦା ରଙ୍ଗର କେଶ ଗୁଚ୍ଛ ତାକୁ ଏକବାରେ ଢାଙ୍କି ପକାଇଛି । ସେ ତା ଭିତର ଦେଇ ମୃଦୁ ମୃଦୁ ହସୁଛି । ତାହାର କଟୀ ବନ୍ଧରେ ଭରା ଖୁସି ତାହାର ଯାଦୁ ଦଣ୍ଡ ଝୁଲୁଛି । ସାରସୀ ମୁଣ୍ଡ ଟେକି ଟେଲିମେକାସ୍ ଆଡ଼କୁ ଅନାଇଲା ।

ତରୁଣ ବୀର ନିଜର ପୋଷାକ ତଳେ ରଖିଥିବା ସେହି କଳା ଓ ଧଳା ମୋଳ ଫୁଲଟି ଖୋଜିବାକୁ ଲାଗିଲା—ଯାତ୍ରା ପୂର୍ବରୁ ତାହାର ପିତା ତାକୁ ଯେଉଁ ଫୁଲଟି ଦେଇଥିଲେ । ସେ ବୁଝି ପାରିଲା, ଫୁଲଟି ଆଜ ତା ପାଖରେ ନାହିଁ । ସେ ଭାବିଲା—"ମୋର ବର୍ତ୍ତମାନ ଶେଷ ଅବସ୍ଥା ଉପଗତ । ସେ ମୋତେ ତାହାର ଯାଦୁ ଦଣ୍ଡରେ ନିଶ୍ଚୟ ଛୁଇଁଦେବ, ଆଉ ମୁଁ ଶୂକର ହୋଇଯିବି ।"

କିନ୍ତୁ ସାରସୀ ତାକୁ କୋମଳ କଣ୍ଠରେ କହିଲା—"ହେ ତରୁଣ ବିଦେଶୀ, ମୋ ସାଙ୍ଗରେ ଚାଲ । ବିଶ୍ରାମ କରିବ ।"

ଟେଲିମେକାସ୍ ତାକୁ ଅନୁସରଣ କରିବାକୁ ଲାଗିଲା । ସେ ଦୁହେଁ ଅବିଲମ୍ବେ ସାରସୀର ପ୍ରାସାଦରେ ଯାଇ ପହଞ୍ଚିଲେ । ପ୍ରାସାଦଟି ତାହାର ପିତାଙ୍କର ପ୍ରାସାଦ ଠାରୁ ଶତ ଗୁଣ ସୁନ୍ଦର ।

ଯିବା ବେଳେ ବଣର ଗଭୀରତରରେ ଓ ଗିରିସଙ୍କଟରେ ଡାହାଣୀର ପଛେ ପଛେ ଶୂକର ଓ ନେକଡ଼ା ବାଘ ଦଳ ଦଳ ହୋଇ ଧାଇଁଥିଲେ । ଏକ ସମୟରେ ସେମାନେ ମଣିଷ ଥିଲେ । ଝଡ଼ରେ ଏହି ଦ୍ୱୀପରେ ଆସି ପଡ଼ିଥିଲେ । ସାରସୀ ତୀକ୍ଷ୍ଣ ଲୌହ ଦଣ୍ଡ ଦ୍ୱାରା ସେମାନଙ୍କୁ ନିଷ୍ଠୁର ଭାବରେ ବନ୍ଧ କରୁଥିଲେ ସୁଦ୍ଧା ସେମାନେ ତାହାର ନଗ୍ନ ପଦ ଯୁଗଳ ଲେହନ କରୁଥିଲେ ।

× × × ×

ତତୋଧିକ ବର୍ଷ ଟେଲିମେକସ୍‌କୁ ସେହି ଡାହାଣୀ ସହିତ ଶଯ୍ୟା ରଚନା କରିବାକୁ ପଡ଼ିଥିଲା । ତା ପରେ ଦିନେ ସେ ଲଜ୍ଜିତ ହେଲା । ସେ ଗଭୀର ଅବସାଦ ଅନୁଭବ କଲା ଏବଂ ଦେଖିଲା ଆଲସିନେୟାସ୍‌ଙ୍କ କନ୍ୟା—ସେହି ନମ୍ରିଳା ଓ ନୀଳ ନୟନା କୁମାରୀ ଯାହାକୁ ସେ କେବେ ହେଲେ ଦେଖି ନାହିଁ—ତାହା ପ୍ରତି ନିଜର ପ୍ରେମ ରୁଦ୍ଧ ହୋଇ ନାହିଁ; କିନ୍ତୁ ସେ ଭାବିଲା—"ଯଦି ମୁଁ ଚାଲି ଯିବାକୁ ଚାହେଁ, ତାହାହେଲେ ଡାହାଣୀଟା କ୍ରୁଦ୍ଧ ହେବ ଏବଂ ମୋତେ ପଶୁ କରି ଆଜୀବନ ରଖିଦେବ । ମୁଁ ନସିକେୟାକୁ ଆଉ ଦେଖି ପାରିବି ନାହିଁ ।"

ଏଣେ ସାରସୀ ମଧ୍ୟ ନିଜର ସଙ୍ଗୀକୁ ନେଇ ଅତିଶୟ କ୍ଳାନ୍ତ ହୋଇ ପଡ଼ିଥିଲା । କ୍ରମେ କ୍ରମେ ସେ ତାକୁ ଘୃଣା କରିବାକୁ ଲାଗିଲା, କାରଣ ସେ ତାକୁ ଭଲ ପାଉଥିଲା । ଦିନେ ରାତିରେ ସେ ନିଜର ନୀଳ କୋମଳ ଶଯ୍ୟାରୁ ଉଠିପଡ଼ି ହାତରେ ଦଣ୍ଡଟା ଧରି ବାହାରକୁ ଚାଲିଗଲା ଏବଂ ସେଥିରେ ଟେଲିମେକାସ୍‌ର ହୃତ୍‌ପିଣ୍ଡ ଉପରେ ଆଘାତ କଲା; କିନ୍ତୁ ଟେଲିମେକାସ୍‌ର ଦେହରେ କୌଣସି ପରିବର୍ତ୍ତନ ହେଲା ନାହିଁ । କାରଣ ସେତେବେଳେ ସେ ନିଜର ପ୍ରେମିକା

ନସିକେୟାର କଥା ଭାବୁଥିଲା ଏବଂ ତାହାର ହୃଦୟ ପ୍ରେମରେ ପରିପୂର୍ଣ୍ଣ ଥିଲା ।

ଡାହାଣୀଟା ତୀକ୍ଷ୍ଣ କଣ୍ଠରେ ଚିତ୍କାର କରିବାକୁ ଲାଗିଲା, "ଚାଲିଯାଅ ! ଚାଲିଯାଅ !"

× × × ×

ଟେଲିମେକାସ୍ ନିଜର ନୌକା ଖଣ୍ଡିକ ନେଇ ପୁଣି ସମୁଦ୍ର ପଥରେ ଯାତ୍ରା କଲା । ତୃତୀୟ ଥରର ଝଡ଼ ତାକୁ ନେଇ ଅଳସ-ମାନଙ୍କର ଦ୍ୱୀପରେ ପକାଇଦେଲା । ସେଠାର ଅଧିବାସୀମାନେ ମାର୍ଜିତ-ରୁଚି, ବୁଦ୍ଧିମାନ, ଧୀର ଓ ନମ୍ର । ସେମାନଙ୍କର ରାଜା ଟେଲିମେକାସ୍‌କୁ ଖାଇବା ପାଇଁ ଗୋଟିଏ ପଦ୍ମ ଫୁଲ ଦେଲେ ।

ସେହି ତରୁଣ ବୀର କହିଲା—"ମୁଁ ସେଟା ଖାଇବି ନାହିଁ । କାରଣ ସେଟା ହେଉଛି ବିସ୍ମୃତିର ଫୁଲ । ମାତ୍ର ମୁଁ ସବୁ ମନେ ରଖିବାକୁ ଇଚ୍ଛା କରେ ।"

ରାଜା ଉତ୍ତର ଦେଲେ—"ତଥାପି ବିସ୍ମୃତି ହେଉଛି ମହାକଲ୍ୟାଣକର । ଏହି ଫୁଲଟିକୁ ସାଧୁବାଦ ଦେଉଛୁ । ସେଟା ହିଁ ହେଉଛି ଆମ୍ଭମାନଙ୍କର ଏକମାତ୍ର ଖାଦ୍ୟ । ଆମ୍ଭେମାନେ ବେଦନା, ଦୁଃଖ, ବାସନା-କାମନା ଏବଂ ଯେଉଁସବୁ ବୃତ୍ତି ଅସୁଖୀ ମଣିଷକୁ ପୀଡ଼ା ଦିଏ ସେ ସବୁ କିଛି ଜାଣୁ ନାହିଁ ; କିନ୍ତୁ ଆମ୍ଭେମାନେ ଏହି ସ୍ୱର୍ଗୀୟ ଫୁଲଟି ଖାଇବା ପାଇଁ କାହାକୁ ଜୋର ଜବରଦସ୍ତି କରୁ ନାହିଁ ।"

ଟେଲିମେକାସ୍ ଯେତିକି ଖାଦ୍ୟ ପଦାର୍ଥ ତାହାର ଭଙ୍ଗା ଜାହାଜରୁ ବଞ୍ଚାଇ ପାରିଥିଲା ତାହା ଖାଇ କେତେ ସପ୍ତାହ କଟାଇଦେଲା । ତା ପରେ ଦ୍ୱୀପଟିରେ ଖାଦ୍ୟୋପଯୋଗୀ କୌଣସି

ଫଳ ବା ପଶୁ ନ ଥିବାରୁ ସେ ସମୁଦ୍ରର ଗେଣ୍ଡା ଶାମୁକା ଓ ମାଛ ଖାଇ ଯେତେ ଦୂର ପାରିଲା ଶରୀର ଧାରଣ କରିବାକୁ ଲାଗିଲା ।

ଦିନେ ସେ ଜଳସମାନଙ୍କର ରାଜାଙ୍କୁ ପଚାରିଲା—"ଏହା କ'ଣ ସତ ଯେ, ମଣିଷ ଯାହାକୁ ସବୁ ଠାରୁ ବେଶି କାମନା କରେ ବା ଯାହା ତାହାକୁ ସବୁ ଠାରୁ ବେଶୀ ପୀଡ଼ା ଦେଇଥାଏ, ପଦ୍ମ ଫୁଲଟି ତାହାର କଥା ବି ସେଥିରେ ଭୁଲାଇ ଦିଏ ?"

ରାଜା କହିଲେ—"ନିଃସନ୍ଦେହରେ ।"

ଟେଲିମେକାସ୍ କହିଲା—"ଫୁଲଟି ମୋତେ ନହିଁ...ସ୍ୱର କଥା କୌଣସି ମତେ ଭୁଲାଇ ଦେଇ ପାରିବ ନାହିଁ ।"

"ଖାଇ ଦେଖ ଥରେ ।"

"ଯଦି ବା ଖାଇ ଦେଖେଁ, ତାହାହେଲେ ତା'ର କାରଣ ଗୋଟାଏ କୁହୁକମାରର କୌଶଳ ଯାହା ସମ୍ପନ୍ନ କରି ପାରି ନାହିଁ, ଏଟା ବି ତାହା ପାରିବ ନାହିଁ, ଏ ବିଷୟରେ ମୁଁ ଅତି ମାତ୍ରାରେ ନିଶ୍ଚିତ ।"

ସେ ଫୁଲଟି ଖାଇଦେଲା ଏବଂ ଶୋଇ ପଡ଼ିଲା ।

ମୁଁ କହିବାକୁ ଚାହେଁ, ସେ ଶାନ୍ତ ପଦ୍ମ-ଭୋଜୀମାନଙ୍କ ପରି ଜୀବନ ଧାରଣ କରିବାକୁ ଲାଗିଲା—ଯେଉଁମାନଙ୍କ ନିକଟରେ ବର୍ତ୍ତମାନ ହିଁ ସବୁ, ଯେଉଁମାନେ ଆଉ କିଛି ଆଶା କରନ୍ତି ନାହିଁ । ସେ କେବଳ ହୃଦୟର ଗଭୀରତାରେ ଯେମିତି ଗୋଟାଏ ପୁରୁଣା କ୍ଷତର ସ୍ମୃତି ଅନୁଭବ କରିବାକୁ ଲାଗିଲା । ତେବେ ସେଟା କ'ଣ, ସେ କଥା ସେ ଠିକ୍ ଭାବରେ ଜାଣି ପାରିଲା ନାହିଁ । ଯେତେବେଳେ ତାହାର ନିଦ ଭାଙ୍ଗିଲା, ସେତେବେଳେ ସେ ଆଲସିନୋୟାସ୍‌ଙ୍କ ଝିଅର କଥା ପାସୋରି ନ ଥିଲା ; କିନ୍ତୁ ନିଜର ଅଲକ୍ଷ୍ୟରେ ଏହିପରି ଭାବରେ କୋଡ଼ିଏଟି ବର୍ଷ ଗଡ଼ିଗଲା । ବସନ୍ତର କୁସୁମଟିର

ମୋହନୀକୁ ପରାସ୍ତ କରିବାପାଇଁ ତାହାର ପ୍ରେମକୁ ଏହି ସମୟ୍ଟା ଲାଗିଥିଲା । ରାଜା ତାକୁ କହିଲେ—“ଏଟା ହିଁ ହେଉଛି ତୁମ ଜୀବନର ସବୁ ଠାରୁ ଭଲ ସମୟ ।”

କିନ୍ତୁ ଟେଲିମେକାସ୍ ତାହା ବିଶ୍ୱାସ କଲା ନାହିଁ । ସେ ସବିନୟରେ ତାହାର ଆଶ୍ରୟଦାତାଙ୍କ ଠାରୁ ବିଦାୟ ନେଲା ।

କେଉଁ କେଉଁ ସମୟରେ ପ୍ରୟୋଜନ ହେତୁ, କେଉଁ କେଉଁ ସମୟରେ ବା ନୂଆ ନୂଆ ସାମଗ୍ରୀ ଦେଖିବାର କୌତୂହଳରେ ସେ ସାଇରେନମାନଙ୍କର ଦ୍ୱୀପରେ ବା ସୂର୍ଯ୍ୟ ଦ୍ୱୀପରେ ବା ଲାସ୍ଟ୍ରି-ଗୋନୀମାନଙ୍କ ଦ୍ୱୀପରେ ଆହୁରି ଯେଉଁସବୁ ଦୁଃସାହସିକ କାମ କଲା, ସେ କଥା ଆମେ ମାନଙ୍କୁ କହିବି ନାହିଁ , ଆଉ ଏହିସବୁ ବିପଦରୁ ତାକୁ ଉଦ୍ଧାର କରିବାରେ ଏବଂ ସବୁ ସ୍ଥାନରୁ ତାକୁ ହଟାଇ ନେଇଯିବାରେ ତାହାର ପ୍ରେମ ଯେ କେତେ ଗଭୀର ଥିଲା, ତାହା ବର୍ଣ୍ଣ କହିବାକୁ ଭୁଲେ ନା ।

× × × ×

ଶେଷ ଝଡ଼ ତାକୁ ନେଇଗଲା ତାହାର ବାଞ୍ଛିତ ଦ୍ୱୀପ ଫିନସିଆନମାନଙ୍କ ଦେଶର ନଦୀର ମୁହାଣକୁ—ସେ ତଡ଼ାରେ ଉଠିଲା, ପାଖରେ ବଣ ଥିଲା । ସେ ବଣରୁ ପତ୍ର ସଂଗ୍ରହ କଲା, ଏବଂ ଉଲଗ୍ନ ଥିଲା ବୋଲି ସେଗୁଡ଼ିକରେ ସେ ନିଜର ଦେହ ଆବୃତ କଲା । ତା ପରେ ସେ ଶୋଇ ପଡ଼ିଲା ।

ହଠାତ୍ ପାଣିର ଛଳ ଛଳ ଶବ୍ଦରେ ତାହାର ନିଦ ଭାଙ୍ଗିଗଲା । ଟେଲିମେକାସ୍ ଆଖି ଖୋଲି ଅନାଇଲା । ସେ ଦେଖି ପାରିଲା, କଳା-ପୋଷାକ ଧାରିଣୀ ଜଣେ ବୃଦ୍ଧା ମହିଳାର ତତ୍ତ୍ୱା-ବଧାନରେ କେତେ ଜଣ ପରିଚାରିକା ଲୁଗା କାଚୁଛନ୍ତି ।

ସେ ଉଠି ଠିଆ ହେଲା ଏବଂ ଖଣ୍ଡିଏ ପତ୍ରପୂର୍ଣ୍ଣ ଡାଳ ଦ୍ୱାରା ସଯତ୍ନରେ ନିଜର ନଗ୍ନତା ଢାଙ୍କି ସ୍ତ୍ରୀ ଲୋକଟି ଆଡ଼କୁ ଅଗ୍ରସର ହେଲା । ସ୍ତ୍ରୀ ଲୋକଟିର ଦେହ ସ୍ଥୂଳ ଓ କଦର୍ଯ୍ୟ । ତାହାର ମୁଣ୍ଡରେ ଯେଉଁ ଆବରଣ ଥିଲା ତା ମଝିରୁ ପାଚିଲା କେଶ ବାହାରି ପଡୁଛି । ଏହା ସତ ଯେ ଏକ ସମୟରେ ସେ ସୁନ୍ଦରୀ ଥିଲା ; କିନ୍ତୁ ଏକ୍ଷଣି ଆଉ ନୁହେ । ଟେଲିମେକାସ୍ ତାହା ନିକଟକୁ ଯାଇ ଆଶ୍ରୟ ପ୍ରାର୍ଥନା କଲା । ସେ କରୁଣା ବିଗଳିତ ଚିତ୍ତରେ ତାକୁ ଆଶ୍ୱାସନା ଦେଲା ଏବଂ ପରିଚାରିକାମାନଙ୍କ ଦ୍ୱାରା ତାକୁ କେତେ ଖଣ୍ଡ ଲୁଗା ଆଣାଇଦେଲା ।

ତା'ପରେ ସେ କହିଲା—"ହେ ଅତିଥି, ବର୍ତ୍ତମାନ ଆପଣଙ୍କୁ ରାଜପ୍ରାସାଦକୁ ନେଇଯିବି ।"

ଟେଲିମେକାସ୍ ପଚାରିଲା—"ଆପଣ କ'ଣ ରାଣୀ ?"

"ହେ ବିଦେଶୀ, ଆପଣଙ୍କର ଅନୁମାନ ସତ୍ୟ ।"

ତତ୍‌କ୍ଷଣାତ୍ ଟେଲିମେକାସ୍ ମନେ ମନେ ଖୁସି ହୋଇ କହି ପକାଇଲା—"ସୁନ୍ଦରୀ ନସିକେୟାର ଜନମାନଙ୍କୁ ଦେବତାମାନେ ଦୀର୍ଘଜୀବୀ କରନ୍ତୁ ।"

ରାଣୀ ଉତ୍ତର ଦେଲେ—"ମୁଁ ତ ନସିକେୟା ! କିନ୍ତୁ ହେ ମାନମାୟ ବୃଦ୍ଧ, ଆପଣ କେଉଁଥି ପାଇଁ ଦୁଃଖ ଅନୁଭବ କରୁଛନ୍ତି ?"

× × × ×

ନିଜର ନୌକା ଖଣ୍ଡିକ ଶୀଘ୍ର ମରାମତି କରି ବୃଦ୍ଧ ଟେଲିମେକାସ୍ ସେଥିରେ ଚଢ଼ିଲା ଏବଂ ଆଉ ପରେ ପଛକୁ ଫେରି ନ ଚାହିଁ ଖୋଲା ସମୁଦ୍ରରେ ଯାଇ ପଡ଼ିଲା ।

— ଜାଁ ଇମାନୁୟେଲ ଚାର୍ଲ୍‌ସ ନଦ୍ୟେ

# ଯିଏ ଫେରି ଆସେ

ଅଗଷ୍ଟ, ୧୯୪୫ । ଫରାସୀ ଯୁଦ୍ଧବନ୍ଦୀମାନେ ଜର୍ମାନୀରୁ ଫେରୁଥାଆନ୍ତି । ରାତିର ନିସ୍ତବ୍ଧ ଗାଢ଼ ଅନ୍ଧକାର ଭେଦ କରି ସେହି ଗୋଟାଏ ଗତିରେ ବିଶେଷ ସାମରିକ ରେଳଗାଡ଼ିଟି ଧାଇଁଥାଏ । ତାରି ଗୋଟିଏ କୋଠରୀରେ ମୋର କାହାଣୀର ଆରମ୍ଭ । କାହାଣୀ କହିଲେ ଭୁଲ୍ ହେବ, ଘଟଣାଟିଏ ତାହା ବରଂ ।

ଗାଡ଼ି ସୀମାନ୍ତ ପାରି ହୋଇ ଆସିଲାଣି । ପାଞ୍ଚ ବର୍ଷ ପରେ ସୈନିକମାନେ ସ୍ୱଦେଶକୁ ଫେରି ଆସିଲେ । କ୍ଳାନ୍ତ ହେଲେ ସୁଦ୍ଧା ସେମାନେ ଉତ୍ଫୁଲ୍ଲ ଦିଶୁଥିଲେ ଘର-ସଂସାରର କେତେ କଥା ସେମାନଙ୍କର ମନେ ପଡ଼ୁଥାଏ । ସବୁ ଠାରୁ ସେମାନଙ୍କର ବେଶୀ ମନେ ପଡ଼ୁଥାଏ ଗୋଟିଏ ହସହସ ମୁଖ — କାହାର ପ୍ରିୟାର, କାହାର ବା ପ୍ରଣୟିନୀର । ଦୀର୍ଘ ପାଞ୍ଚ ବର୍ଷ — ଗୋଟାଏ ଦୁଇଟା ଦିନ ନୁହେଁ । ଏତେ ଦିନ ବା ତାହାର କପରି ବିତିଛି ? ଆଜି ବି କଣ ସେ ତାକୁ ସେମିତି ଭଲ ପାଇବ ? ପୁଣି କଣ ପୁରୁଣା ଦିନ ଭଳି ସଂସାରୀ ହୋଇ ଘର କରିବାକୁ ପଡ଼ିବ ? ଏହିପରି କେତେ

କଥା ତାହାର ମନ ଭିତରେ ବାରମ୍ବାର ଖେଳି ଯାଉଥାଏ । କେହି ବା ଖୁବ୍ ଆଶାନ୍ୱିତ—ହସି ହସି ଗଡ଼ି ଯାଉଛି । କାହାକୁ ବା କିଞ୍ଚିତ୍ ପରିମାଣରେ ଉଦ୍‌ବିଗ୍ନ ଦେଖା ଯାଉଛି ।

ରେଲଗାଡ଼ିର ଯେଉଁ କୋଠରୀ କଥା କହୁଥିଲି ତାର ଗୋଟାଏ କୋଣ ଆଡ଼କୁ ବସିଛି ରେନୋ ଲିମାଙ୍ଗ । ପେରିଗର୍ଡର ଛୋଟିଏ ଗ୍ରେଷ୍ଟ ସହରର ସୀମାଞ୍ଚଳରେ ତାହାର ଘର । ବେଶ୍ ଲମ୍ବା, କିଞ୍ଚିତ୍ ରୋଗଣା ଚେହେରା, ଅଥଚ ଆଖି ଦୁଇଟି ଅତ୍ୟନ୍ତ ଉଜ୍ଜ୍ୱଳ ଓ ମୁଖ ମଣ୍ଡଳଟି ମଧ୍ୟ ତତୋଧିକ ସତେଜ । ତା ପାଖରେ ବସିଥିବା ଲୋକଟି ସହିତ ସେ କଥା ବାର୍ତ୍ତା କରୁଥିଲା ।

"ସତ କହନା, ତୁମେ କଣ ବାହା ହୋଇଛ ?"

"କାହିଁକି ? ହଁ, ମୁଁ ବାହା ହୋଇଛି— ଯୁଦ୍ଧର ଦୁଇ ବର୍ଷ ଆଗରୁ ।"

ହସହସ ମୁଖରେ ଖଙ୍କାଯୁକ୍ତ ଲୋକଟି ପକେଟରୁ ବାହାର କଲା ଖଣ୍ଡିଏ ତେଲ-ଦାଗ-ଲାଗିଥିବା ଛୁଣ୍ଡା ମଇଳା ଫଟୋ ।

ସେ କହିଲା—"ଏହି ଦେଖ ମୋର ମାର୍ଥା ।"

"ବେଶ୍ ସୁନ୍ଦରୀ ତ । ଆଚ୍ଛା ଭାଇ, ଏହି ଯେ ତୁମେ ଫେରି ଯାଉଛ, ତୁମର ମନରେ କୌଣସି ଦୁର୍ଭାବନା ଜାତ ହେଉ ନାହିଁ ତ ?"

"ଦୁର୍ଭାବନା ! ବାହାରେ ! ଦୁର୍ଭାବନା କାହିଁକି ?"

"ଦୁର୍ଭାବନା—କାରଣ ଏମିତି ସୁନ୍ଦରୀ ନାରୀ; କାରଣ ଏତେ ଦିନ ହେଲା ସେ ଏକା ଥିଲା , କାରଣ ଆହୁରି କେତେ ଲୋକ ଅଛନ୍ତି ।"

"ନା ! ହସାଇଲ ଭାଇ ତୁମେ । ମୁଁ ଆଉ ମାର୍ଥା—ଆମ୍ଭ ମଝିରେ ପୁଣି ଅନ୍ୟ ଲୋକ ? ଅସମ୍ଭବ । ଦୁଇଟି ବର୍ଷ ଆମର କ

ସୁଖରେ ନ ବଞ୍ଚିଛୁ ! ତାପରେ ଯୁଦ୍ଧ ଲାଗିଗଲା ; ମୋତେ ବି ଚାଲି ଆସିବାକୁ ପଡ଼ିଲା । କିନ୍ତୁ ଏଣ୍ଟ ପାଞ୍ଚ ବର୍ଷ ଭିତରେ କେତେ ଚିଠି ସେ ନ ଲେଖିଛି ! ଯଦି ତାହା ଦେଖି ଥାଆନ୍ତ—।"

"ଓଃ ! ଚିଠି— ଚିଠିରୁ କିଛି ଜଣା ପଡ଼େ ନାହିଁ । ମୁଁ ଯେଉଁସବୁ ଚିଠି ପାଇଛି ତାହା ବି — । କିନ୍ତୁ ତଥାପି—।"

"କାହିଁକି ? ତୁମେ କଣ ତାକୁ ବିଶ୍ୱାସ କର ନାହିଁ ?"

"ହଁ, ନିଶ୍ଚୟ ବିଶ୍ୱାସ କରେ । ଅନ୍ତତଃ ଅନ୍ୟ କାହା ଠାରୁ ବି କମ ବିଶ୍ୱାସ କରେ ନାହିଁ । ଆଉ ବିବାହ ପରେ ଛଅ ବର୍ଷ କଟି ଯାଇଛି, କେବେ ହେଲେ ଏତିକି ଟିକିଏ ଅସନ୍ତୋଷ ନ ଥିଲା ।"

"ତେବେ ?"

"ତେବେ ମୋର କିନ୍ତୁ ନିଜ ଉପରେ ବିଶ୍ୱାସ ନାହିଁ । ନିଜର ସୌଭାଗ୍ୟକୁ ମୁଁ ବୋଧ ହୁଏ ସୌଭାଗ୍ୟ ବୋଲି ମନେ କରି ପାରୁ ନାହିଁ । ମୋର ଖାଲି ମନେ ହୁଏ, ଏତେ ସୁଖ ମୋ ଭଳି ଜଣେ ହତଭାଗାର କପାଳରେ ଟେକି ନ ପାରେ । ହେଲେନ ଭଳି ସୁନ୍ଦରୀ, ବୁଦ୍ଧିମତୀ, ଶିକ୍ଷିତା ନାରୀ— ମୁଁ ତାହାର ଯୋଗ୍ୟ ନୁହେଁ । ତେଣୁ ଭାବୁଛି— ଯୁଦ୍ଧର ଗଣ୍ଡଗୋଳରେ କେତେ ଲୋକ ଆସିଛନ୍ତି । ସେମାନଙ୍କ ଭିତରୁ ଅନେକ ହୁଏତ ମୋ ଠାରୁ କେତେ ଭଲ । ଗାଆଁର ସବୁ ଠାରୁ ଭଲ ଝିଅଟି କଣ ଏଯାଏ ସେମାନଙ୍କର ନଜରରେ ନ ପଡ଼ି ରହିଥିବ ?"

"ବେଶ୍ ତ । ତାହା ହୋଇଥିଲେ ସେଥିରେ କ୍ଷତି କଣ ? ଯଦି ସେ ତୁମକୁ ଭଲ ପାଏ—।"

"ନିଶ୍ଚୟ ସେ ମୋତେ ଭଲ ପାଏ । ଆଉ ଭଲ ପାଇବା କଥା କରୁଚ ? କିନ୍ତୁ ଥରେ ଭାବି ଦେଖ — ଗୋଟି ଗୋଟି କରି

ପାଞ୍ଚୋଟି ବର୍ଷ କଟିଗଲା । ସାରଡଲରେ ତାହାର ଆତ୍ମୀୟ ସ୍ୱଜନ କେହି ନାହାନ୍ତି । ସମ୍ପୂର୍ଣ୍ଣ ଏକା ତାକୁ ସେଠାରେ ରହିବାକୁ ହୋଇଛି । ଏପରି ଅବସ୍ଥାରେ—।"

"ନା ଭାଇ, ତୁମେ ଭୁଲ କରୁଛ । ମୁଁ ଜୋର ଦେଇ କହିପାରେଁ, ତୁମେ ଭୁଲ କରୁଛ । ଯଦି ଆଜି କିଛି ହୋଇଥାଏ, ସେଥିରେ ବା କି ଯାଏ ଆସେ ? ଏଇ ଧର, ଯଦି ମୋତେ କେହି କହନ୍ତି ଯେ ମାର୍ଥା —। ତତ୍‌କ୍ଷଣାତ୍ ମୁଁ ତାହାର ପାଟିରେ ହାତ ଦେଇଦେବି ଏବଂ କହିବି—ଦେଖ, ମାର୍ଥା ମୋର ସ୍ତ୍ରୀ । ଯୁଦ୍ଧ ସମୟରେ ସେ ବିଚାରୀ ଏକା ରହିଥିଲା । ଏବେଣି ଯୁଦ୍ଧ ଶାନ୍ତ ଫେରି ଆସିଛି । ଆମେ ବି ଫେରିଯିବା ଆମର ପୁରୁଣା ଜୀବନକୁ ।"

"ମୁଁ କିନ୍ତୁ ତାହା ପାରିବି ନାହିଁ । ଫେରିଯାଇ ଯଦି ଶୁଣେ ଯେ—।"

"କଣ କରିବ ତାହାହେଲେ ? ତାକୁ ଖୁନ୍ କରିବ ?"

"ନା । ଖୁନ୍ କାହିଁକି କରିବି ? ତାକୁ ପଦେ ହେଲେ ବି ଖରାପ କଥା କହିବି ନାହିଁ । ମୁଁ ଖାଲି ଦୂରକୁ ଚାଲିଯିବି । ମୋର ଟଙ୍କା-ପଇସା, ଜମି-ବାଡ଼ି, ଘର-ଦ୍ୱାର, ସବୁ ତାକୁ ଦେଇଦେବି । କିଛି ବ୍ୟବସାୟ ମୋତେ ଜଣା ଅଛି । ତାକୁ ସମ୍ବଳ କରି ଅନେକ ଦୂରକୁ କେଉଁଠାକୁ ଚାଲିଯିବି । ନାମଟା ବଦଳାଇ ଦେଲେ କେହି ମୋତେ ଆଉ ଖୋଜି ପାଇବେ ନାହିଁ । ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇ ଚାଲିଯିବି ।"

ରେଳଗାଡ଼ିରେ ଗୋଟାଏ ପ୍ରକାର ଗଭୀର କମ୍ପନରେ ସମସ୍ତଙ୍କ ଆଖିରେ ନିଦ ମାଡ଼ି ଆସିଲା । ବାହାରେ ନିର୍ଘୁମ ନିବିଡ଼ ରାତି । କୋଠରୀ ଭିତରେ ଖାଲି ଏକା ଚେଇଁ ରହିଲା ରେନୋ ।

× × × ×

ଏଣେ ସରକାରୀ ଦପ୍ତରରୁ ସେତେବେଳେ ସାଇଡ଼ଲର ମେୟରଙ୍କ ସମ୍ବାଦ ଦିଆ ହେଲା ଯେ, ରେନୋ ଲମାର୍ଶ ଅଗଷ୍ଟ ୨୦ ତାରିଖରେ ଆସି ପହଞ୍ଚିବ, ସେ ନିଜେ ବେନୋର ଘରକୁ ଗଲେ । ତାହାର ସ୍ତ୍ରୀ ସେତେବେଳେ ବଗିଚାରେ କାମ କରୁଥିଲା ।

ମେୟର ସେଠାରେ ପହଞ୍ଚି ତାକୁ କହିଲେ—"ଏକାନ୍ତ ସୁସମ୍ବାଦ, ମହାଶୟା । ଆପଣଙ୍କର ସ୍ୱାମୀ ୨୦ ତାରିଖରେ ଘରକୁ ଫେରି ଆସୁଛନ୍ତି । ମୁଁ ଅବଶ୍ୟ ଜାଣେ, କି ଅଭାବରେ ଆପଣଙ୍କୁ ଦିନ ବିତାଇବାକୁ ହେଉଛି । ଆମର ସମସ୍ତଙ୍କର ତ ସେହି ଏକ ଅବସ୍ଥା । ତଥାପି ଏମିତି ଗୋଟାଏ ଦିନରେ ଟିକିଏ କିଛି ବିଶେଷ ଆୟୋଜନ — ।"

"ହଁ, ନିଶ୍ଚୟ । ରେନୋ ଫେରି ଆସୁଛନ୍ତି । ଏମିତି ଦିନରେ — । ଆପଣ ୨୦ ତାରିଖ କହିଲେ ନା ? ଆଚ୍ଛା, କେତେ-ବେଳେ ଆସି ପହଞ୍ଚିବେ ସେ ଆପଣ କହି ପାରିବେ ?"

"ବୋଧହୁଏ ଦିପହରେ ।"

"ଧନ୍ୟବାଦ ! ଶତ ଧନ୍ୟବାଦ ! କିପରି ଭାବରେ ଯେ ଆପଣଙ୍କ କୃତଜ୍ଞତା ଜଣାଇବି !"

× × × ×

ଅଗଷ୍ଟ ୨୦ ତାରିଖ । ଭୋର ହେଉ ନ ହେଉଣୁ ହେଲେନ ଉଠି ପଡ଼ିଲା । ରାତିରେ ତା ଆଖିକୁ ନିଦ ଆସି ନ ଥିଲା । ଆଜି ରେନୋ ଫେରି ଆସିବେ । କାଲି ଦିନଟା କଟିଛି ଘରଦ୍ୱାର ପରିଷ୍କାର କରିବାରେ । ଚଟାଣଟା ଭଲ କରି ଧୋଇଛି, ଝରକାର ପର୍ଦାରେ ନୂଆ ଫିତା ଦେଇଛି, ଭୋଜନ-ଟେବୁଲଟାକୁ ଘଷି ମାଜି ଏକବାରେ ଝକ୍‌ଝକ୍ କରି ଦେଇଛି ଖଣ୍ଡିଏ ପିନ୍ଧିବା ଭଲ ଜାମା ଖୋଜିବାରେ ତାହାର କିଛି ସମୟ ଯାଇଛି । ତାଙ୍କ ଅବଶ୍ୟ ରେଶମ ପିନ୍ଧିବା

ଭଲ । କିନ୍ତୁ— । ରେନୋ ସବୁ ଠାରୁ ବେଶୀ ପସନ୍ଦ କରେ — ସେହି ନାଲି ଜଙ୍ଗଲୀ ଛିଟ ଜାମାଟି । ପୁରୁଣା ଜାମା । ତାକୁ ସେ ପିନ୍ଧି ଦେଖିଲା, କମରଟା ଖୁବ୍ ବେଶୀ ଢିଲା ହୋଇ ଯାଇଛି । ତାହାର ଦେହଟା ଶୁଖି ଯାଇଛି ନା, ସେଥିପାଇଁ । ଶେଷରେ ସେ ସ୍ଥିର କଲା ଯେ ତା ନିଜ ହାତରେ ତିଆରି କଲା ଜାମାଟି ପିନ୍ଧିବ । ଗୋଟାଏ ରଙ୍ଗୀନ କଲାର ଓ ରଙ୍ଗୀନ ବେଲଟ ହେଲେ ତାକୁ ବେଶ୍ ମାନିବ । ଜାମାର ପର୍ବ ଶେଷ କରି ତାକୁ ଯିବାକୁ ପଡ଼ିଲା ଭଣ୍ଡାରୀ ଦୋକାନକୁ ରେନୋ ଯେ କୁଞ୍ଚିତ କେଶ ଭଲ ପାଏ । ରାତିରେ ଗୋଟାଏ ଜାଲି ପିନ୍ଧି ପକାଇଲା, ଯଦ୍ଵାରା କେଶ ପୁଣି ଅଡୁଆ ହୋଇ ନ ଯାଏ ।

ଖାଦ୍ୟ ସାମଗ୍ରୀ ଗୁଡ଼ିକ ମଧ୍ୟ ରେନୋର ପସନ୍ଦ ଅନୁଯାୟୀ ହେବା ଦରକାର । ଅବଶ୍ୟ ଯୁଦ୍ଧ ଫଳରେ ବଜାରରେ ଅନେକ ଜିନିଷ ମିଳୁ ନାହିଁ । ଅଣ୍ଡା ଘରେ ଅଛି । ଘର-କୁକୁଡ଼ାର ଛଅଟା ଅଣ୍ଡାରେ ତିଆରି ଆମଲେଟ ଦେଖିଲେ ରେନୋ ତାକୁ ପ୍ରଶଂସାରେ ପୋତି ପକାଏ । ଆଳୁ ଓ ମାଂସ । କାଲିଠୁଁ ଗୋଟାଏ କୁକୁଡ଼ା ସନ୍ତୁଳା ହୋଇ ରଖା ଯାଇଛି । କିନ୍ତୁ ଚକୋଲେଟ ? ନା, ଚକୋଲେଟ ନ ହେଲେ ଚଳିବ ନାହିଁ । ରେନୋ ତ ତାକୁ ସବୁ ଠାରୁ ବେଶି ପସନ୍ଦ କରେ । ସେ ଦିନ ତାହାର ଜଣେ ବନ୍ଧୁ ସତରେ କହୁଥିଲା ଯେ ପାଖ ଗାଁର ଗୋଟିଏ ଦୋକାନରେ ଚକୋଲେଟ ଲୁଚେଇଚୋରେଇ ବିକା ହେଉଛି । ତାକୁ ସେଠାକୁ ଯିବାକୁ ହେବ । ଆଠଟାରେ ବାହାରିଲେ ନଅଟା ଭିତରେ ସେ ସାଇକେଲରେ ନିଶ୍ଚୟ ଫେରି ଆସି ପାରିବ । ଖାଲି ରୋଷେଇର ଯାହା କିଛି ବାକି ରହିବ । ବର୍ତ୍ତମାନ ଜିନିଷ ପତ୍ରସବୁ ସଜାସଜି କରି ରଖି ଦେଇ ଗଲେ ଫେରି ଆସି ତୁରନ୍ତ ରୋଷେଇଟା ସାରି ଦେବ ।

ଟେବୁଲଟା ସଜା ଯାଉ । ଧଳା ଓ ନାଲ ସୂତାରେ ଟେବୁଲ କନା ଉପରେ ଫୁଲ ପକା ହୋଇଛି— ସେହି ଯେଉଁ ଖଣ୍ଡିକ ବିବାହ ପରେ ପ୍ରଥମେ ସେମାନେ ବ୍ୟବହାର କରିଥିଲେ । ସେହି ଛବି ଅଙ୍କା ବାଇଗଣୀ ରଙ୍ଗର ପ୍ଲେଟଗୁଡ଼ାକ— ଯାହା ଦେଖିଲେ ରେନୋ ହସି ହସି ଗଡ଼ି ଯାଉଥିଲା । ଆଉ କଣ ଫୁଲ । ହଁ, ସେ ଫୁଲ ଖୁବ୍ ଭଲ ପାଏ, ଆଉ ଏମିତି ଭାବରେ ଫୁଲ ସଜାଇବା କଥାଟା ଆଉ କେହି ଜାଣନ୍ତି ନାହିଁ । ଫୁଲ ତୋଡ଼ାଟି ହେଲା ତିନି ରଙ୍ଗର — ଧଳା ଡେଇଜ୍, ନାଲ ପପି ଓ ସବୁଜ କର୍ଣ୍ଣଫ୍ଲାୱାର ।

ଏକ୍ଷଣି ବାହାରିବାକୁ ହେବ । ସାଇକେଲ୍ ଧରି ହେଲେନ ବାହାରୁ ଝରକା ବାଟେ ଥରେ ଘରଟି ଦେଖିନେଲା । ହଁ, ଠିକ୍ ହୋଇଛି । ଏତେ ଦିନ ପରେ ବିଚରା ରେନୋ ଘରକୁ ଫେରି ଆସୁଛି । ସେ ଆସି ଦେଖିବ, ସବୁ ଠିକ୍ ଆଗ ପରି ଅଛି । ଏତେ ଟିକିଏ ହେଲେ ବି ଏପଟ ସେପଟ ହୋଇ ନାହିଁ — ସବୁ କିଛି ହିଁ ତାହାର ମନ ମୁତାବକ ସଜା ହୋଇଛି । ଝରକା କଡ଼କୁ ଆସିବାରୁ ଘରର ଦର୍ପଣରେ ତାହାର ଛବି ଦେଖା ଗଲା । ସେ ଟିକିଏ ମୋଟା ହୋଇ ଯାଇଛି ଅବଶ୍ୟ । କିନ୍ତୁ ଏକ୍ଷଣି ବି ତାକୁ ସୁନ୍ଦରୀ ତରୁଣୀ ବୋଲି କୁହା ଯିବ କି ?

ଆଠଟା ବାଜିଲା । ଆଉ ଡେରି ନୁହେଁ । ଆନନ୍ଦ ମନରେ ଗୋଟାଏ ଗୀତ ଗାଇ ଗାଇ ହେଲେନ ସାଇକେଲକୁ ପାଖ ଗାଁର ରାସ୍ତାରେ ଛୁଟାଇ ଦେଲା ।

× × ×

ସାରଭିଲ ଗ୍ରେଟ ସହରଟିଏ । ତା'ର ଶେଷ ମୁଣ୍ଡରେ ଭ ଲମାଗାର ଘର । ତେଣୁ ସେ ବାଟେ ଲୋକମାନଙ୍କର ଯାତାୟାତ ପ୍ରାୟ

ନାହିଁ କହିଲେ ଚଳେ । ସେତେବେଳେ ସମସ୍ତ ବୋଧହୁଏ ସାଢେ ଆଠଟା ହେବ । ସେହି ପଡ଼ାର ଜଣେ ଲୋକ ଦେଖିଲା ଯେ ରେନୋ ଧୀରେ ଧୀରେ ନିଜର ଘର ଆଡ଼କୁ ଗୁଳୁଛି ।

ବଗିଚାରେ ପହଞ୍ଚିଲା ମାତ୍ରେ ରେନୋ ଅନୁଚ୍ଚ କଣ୍ଠରେ ଡାକିଲା—"ହେଲେନ ।" କେହି ଜବାବ ଦେଲେ ନାହିଁ । ଏଥର ସେ ଖୁବ୍ ବଡ଼ ପାଟିରେ ଡାକିଲା—"ହେଲେନ"— "ହେଲେନ" —"ହେଲେନ" !

କୌଣସି ଜବାବ ମିଳିଲା ନାହିଁ । ରେନୋର ମନରେ ଶଙ୍କା ଜାତ ହେଲା । ସେ ଆଉ ଟିକିଏ ଆଗେଇ ଗଲା । ସେଠାରୁ ଝରକା ବାଟେ ଘରର ଭିତରଟା ଦେଖାଯାଏ । ରେନୋ ଦେଖିଲା— ଭୋଜନ ଟେବୁଲ ସଜା ହୋଇଛି, ଦୁଇ ଜଣଙ୍କ ପାଇଁ । ତାହାର ମୁଣ୍ଡଟା ଯେମିତି ଘୂରାଇ ଦେଲା । ତୁରନ୍ତ କାନ୍ଧୁ ଧନୁ ପକାଇ ସେ ନିଜକୁ ସମ୍ଭାଳି ନେଲା । "ଓଃ ! ତାହାହେଲେ ସତରେ ସେ ସାଥୀ ଯୋଗାଡ଼ କରି ନେଲାଣି ।"

କିଛି କ୍ଷଣ ପରେ ହେଲେନ ଫେରି ଆସିଲା । ସେ ପଡ଼ାର ସେହି ଲୋକଟି ତାକୁ କହିଲା — "ଶୁଣୁଛ, ତୁମର ରେନୋକୁ ଦେଖିଲି ଖୁବ୍ ଜୋରରେ ଗୁଳୁଛି । କେତେ ଡାକିଲି, ସେ ଆଦୌ ଜବାବ ଦେଲା ନାହିଁ —ଦଉଡ଼ି ପଳାଇ ଗଲା ।"

ହେଲେନ କିଛି ବୁଝି ପାରିଲା ନାହିଁ । ସେ ଆବାକାବା ହୋଇ ପଚାରିଲା— "ଏଁ, ଦଉଡ଼ି ପଳାଇଗଲା ? କେଉଁ ଆଡ଼କୁ ଗଲା କହି ପାରିବ ?"

"ହେଇ ତ ସେହି ଆଡ଼େ— ଥିବସ୍ତାର୍ସ ଆଡ଼କୁ ହେବ ।"

ହେଲେନ ମେୟରଙ୍କ ଅଫିସ ଆଡ଼କୁ ଧାଇଁଗଲା । ତାଙ୍କୁ

କହିଲା—"ରେନୋର ମନ ଘର ଗୁଣ୍ଡୁଚିଆ । ସେ ଦେଖିଛି, ଦୁଇ ଜଣଙ୍କ ପାଇଁ ଭୋଜନ ଟେବୁଲ ସଜା ହୋଇଛି । ତତ୍‌କ୍ଷଣାତ୍ ତାହାର ମନରେ ସନ୍ଦେହ ଜାତ ହୋଇଛି । ସେ ତ ଜାଣେ ନା, ତାହାର ଲାଗି ଏ ଆୟୋଜନ । ବଡ଼ ଏକଜିଦିଆ ସେ । କଣ କରି ପକାଇବ ସେ କଏ ଜାଣେ । ଯେ କୌଣସି ମତେ ରେନୋକୁ ଖୋଜି ଫେରାଇ ଆଣିବାକୁ ହେବ ।" କିନ୍ତୁ ମେୟରଙ୍କୁ ତା ବିଷୟରେ କିଛି ଜଣା ନ ଥିଲା । ସେ ଥିଏଟରସବୁକୁ ଲୋକ ପଠାଇଲେ । ସେଠାରେ ବି ରେନୋର ଦେଖା ମିଳିଲା ନାହିଁ । ପୋଲିସକୁ ଖବର ଦିଆଗଲା । ସେମାନେ ବି ତାକୁ ଖୋଜି ପାଇଲେ ନାହିଁ ।

ସାରାଟା ରାତି ଉଜାଗରରେ ହେଲେନ ଏକା ବସି ରହିଲା ସେହି ସଜା ହୋଇଥିବା ଟେବୁଲ ପାଖରେ । ଭୋର ବେଳର ଫୁଲ ରାତିର ଗରମରେ ଶୁଖି ଝଡ଼ି ପଡ଼ିଲା ।

ତିନି ବର୍ଷ ଗଡ଼ି ଗଲାଣି । ତଥାପି ହେଲେନ ପ୍ରତୀକ୍ଷା କରୁଛି ଆଜି ଯାଏ, ଯଦି ସେ ଫେରି ଆସେ ।

—ଆଁନ୍ଦ୍ରେ ମରୁଆ

# ପଉଡ଼ି

ମୋର ଜଣେ ବନ୍ଧୁ କହୁଥିଲେ, ମଣିଷର ଭୁଲ ଭଟକା ଏତେ ଅମାପ ଯେ ମନେ ହୁଏ ମଣିଷ ସହିତ ମଣିଷର ବା ବସ୍ତୁ ସହିତ ମଣିଷର ସମ୍ପର୍କ ଭଳି ତାହା ବିରାଟ । ଠିକ୍ ଯେତେବେଳେ ସେହି ଭୁଲଟା କଟିଯାଏ ସେତେବେଳେ ଆମେ ସେହି ମଣିଷଟିକୁ ତାହାର ନିଜ ଭଳି, ଅର୍ଥାତ୍ ପ୍ରକୃତ ସ୍ୱରୂପରେ ଦେଖିବାକୁ ପାଉଁ, ଏବଂ ସେତେବେଳେ ଏକ ଅଦ୍ଭୁତ ଜଟିଳ ଅନୁଭୂତି ଆମ୍ଭ ହୁଏ । ତାର କିଛି ଅଂଶ ହେଲା ଶୂନ୍ୟରେ ମିଳାଇ ଯିବା ଭଳି ପ୍ରତି ଆକ୍ଷେପ ଓ ଅବଶିଷ୍ଟ ନିଜର ନୂତନ ପ୍ରକୃତ ରୂପ ଯୋଗୁଁ ବିସ୍ମୟ । କିନ୍ତୁ ପ୍ରକୃତିର ଏପରି ଏକ ବିରାଟ ଗତି ଅଛି ଯାହା କଦାପି ରୂପ ବଦଳାଏ ନାହିଁ, ଯାହା ଭୁଲ ବୁଝିବା କେବେ ସମ୍ଭବ ନୁହେଁ । ତାହା ହିଁ ହେଉଛି ଜନନୀର ବାତ୍ସଲ୍ୟ ପ୍ରେମ । ଯେମିତି ଉତ୍ତାପହୀନ ଆଲୋକର କଳ୍ପନା ଦୁଃସାଧ୍ୟ, ଠିକ୍ ସେମିତି ଏପରି କଳ୍ପନା ବି ପ୍ରାୟ ଅସମ୍ଭବ ଯେ ଜଣେ ଜନନୀର ଅନ୍ତରରେ ନିଜର ସନ୍ତାନ ପ୍ରତି ସ୍ନେହ ନାହିଁ । ଏହା କଣ ଖାଣ୍ଟି ସତ କଥା ନୁହେଁ କି, ଜଣେ ମାଆର ପ୍ରତ୍ୟେକ କାମ ଓ ତାହାର ପ୍ରତି କଥା କେବଳ ତାହାର ସନ୍ତାନକୁ କେନ୍ଦ୍ର କରି ଘୂରି ବୁଲେ ? ତଥାପି, ମୁଁ ତୁମକୁ ଗୋଟାଏ ଗପ ଶୁଣାଇବି,

ଯେଉଁଥିରୁ ତୁମେ ସ୍ପଷ୍ଟ ବୁଝି ପାରିବ ଏହି ସହଜ କଥାଟି କି ରହସ୍ୟ-ମୟ ଓ ଅଦ୍‌ଭୁତ ।

ତୁମେ ତ ଜାଣ, ଶିଳ୍ପୀ ହିସାବରେ ମୋର କର୍ତ୍ତବ୍ୟ ହେଉଛି ମୋ ଚିତ୍ର ପଟେ ମଣିଷଙ୍କ ମୁଖ ଓ ତାଙ୍କର ପ୍ରତି ମୁଖ–ଭଙ୍ଗୀ ଲକ୍ଷ୍ୟ କରିବା । ଏହି ଦର୍ଶକର ଭୂମିକାରେ ଯେ କି ଆନନ୍ଦ ଅଛି ତାହା ଶିଳ୍ପୀମାନେ ହିଁ ଏକମାତ୍ର ଜାଣନ୍ତି, ଏବଂ ଯୁଗ ଭିତରୁ ଜୀବନର ଅର୍ଥ ଓ ତାର ଉଲ୍ଲାସ ଖୋଜି ବାହାର କରିପାରନ୍ତି କେବଳ ଆମେ ଶିଳ୍ପୀମାନେ । ଅନ୍ୟ ଲୋକର ଦୃଷ୍ଟିରେ ତାହା ଏମିତି ଯଥାର୍ଥ ପ୍ରାଞ୍ଜଳ ଓ ଅର୍ଥମୟ ହୋଇ ଧରା ପଡ଼େନ ହିଁ । ଯାଉ, ଯେଉଁ ଗପଟା କହିବାକୁ ବସିଥିଲି, ତାହା କହେଁ ।

ସେତେବେଳେ ମୁଁ ସହର ଠାରୁ ଦୂରରେ ଯେଉଁ ଅଞ୍ଚଳରେ ଗୋଟାଏ ଘର ଭଡ଼ା ନେଇଥିଲି, ସେଠାରେ ପ୍ରଶସ୍ତ ଶୂନ୍ୟ ସ୍ଥାନରେ ଏଣୁତେଣୁ ବଡ଼ ଗଛ ସବୁ ଉଠି ଗୋଟାଏ ଘରକୁ ଆଉ ଗୋଟାଏ ପାଖ ଘର ଠାରୁ ବିଚ୍ଛିନ୍ନ କରି ରଖିଥିଲା । ସେଠାରେ ମୁଁ ଗୋଟିଏ ବାଳକକୁ ବିଶେଷ ଭାବରେ ଲକ୍ଷ୍ୟ କରୁଥିଲି, କାରଣ ତାହାର ଉଜ୍ଜ୍ୱଳ ଚପଳ ମୁଖ ମୋତେ ତା ପ୍ରତି ଆକୃଷ୍ଟ କରୁଥିଲା । ଅନ୍ୟ ସବୁ ମୁଖ ଠାରୁ ସେହି ମୁଖଟା ଥିଲା ସମ୍ପୂର୍ଣ୍ଣ ଅଲଗା ଓ ଭିନ୍ନ ଧରଣର । ସେ ଅନେକ ଥର ମୋ ଛବିର ମଡେଲ ଭାବରେ କାମ କରିଥିଲା, ତାକୁ ମୁଁ ବିଭିନ୍ନ ପୋଷାକରେ ସଜାଇଛି— କେତେବେଳେ ଜିପ୍‌ସୀମାନଙ୍କର ପୋଷାକ ପିନ୍ଧାଇଛି, କେତେବେଳେ ଦେବଦୂତର, କେତେବେଳେ ଅବା ପୌରାଣିକ କାହାଣୀର ସେହି କଉପିଡର ପୋଷାକ । ମୁଁ ତାକୁ ଆଙ୍କିଛି ବଂଶୀ ହାତରେ, କଣ୍ଠାର ମୁକୁଟ ମଥାରେ, କୃଶର କ୍ଷତ କଣ୍ଟା, ଓ ପ୍ରେମର ବର୍ତ୍ତିକା ଧାରଣ କରି । ଅବଶେଷରେ ସେ ମୋତେ ଏପରି ଭାବରେ ମୁଗ୍ଧ

କଲା ଯେ ମୁଁ ବାଧ ହୋଇ ତାହାର ଗରିବ ବାପ ମାଆଙ୍କ ପାଖରୁ ତାକୁ ନେଇ ଆସିଲି, ନିଜ ପାଖରେ ରଖି ମଣିଷ କରିବି ବୋଲି । ମୁଁ ତାହାର ବାପ ମାଆଙ୍କୁ ପ୍ରତିଶ୍ରୁତି ଦେଇଥିଲି, ମୁଁ ତାକୁ ଭଲ ପୋଷାକ ପିନ୍ଧିବାକୁ ଦେବି, ହାତ-ଖରଚ ଦେବି, ଏବଂ କୌଣସି ଅସମ୍ମାନଜନକ କାମ କରାଇବି ନାହିଁ, କେବଳ ମୋର ଜୋତାଗୁଡ଼ିକୁ ସଜାଡ଼ି ଧୋଇ ରଖିବା ବା ବେଳେ ବେଳେ ଏଣୁତେଣୁ କିଛି କାମ ଛଡ଼ା । ତାପରେ ସତକୁ ସତ, ସେ ମୋର ଜୀବନ ମଧୁର କରି ଦେଲା । ତାହାର ଉପସ୍ଥିତି ଏମିତି ମାୟାମୟ ଥିଲା ଯେ ତାକୁ ଦେଖିଲେ ସବୁ ବେଳେ ମନେ ହେଉଥିଲା, ମୋ ଘରେ ରହିଥିବାରୁ ସେ ଯେମିତି ସ୍ୱର୍ଗ ସୁଖ ଲାଭ କରୁଛି — ତା ନିଜର ସେଠି ଘୃଣ୍ୟ କଦର୍ଯ୍ୟ ଗର୍ତ୍ତ ଠାରୁ ଏଠି ଘରେ ଯଥେଷ୍ଟ ବେଶି ସୁଖ । ମଝିରେ ମଝିରେ, ସତ କହିବାକୁ ଗଲେ, ସେ ମୋତେ ବିସ୍ମିତ କରି ଦେଉଥିଲା । ସେତେବେଳେ ଏକ ରହସ୍ୟମୟ ବିଷାଦ ତାକୁ ବେଷ୍ଟନ କରି ରଖୁଥିଲା, ଏବଂ ମଧୁର ଖାଦ୍ୟ ସାମଗ୍ରୀ ପ୍ରତି ଗୋଟାଏ ଲୋଭ ତାକୁ ଗ୍ରାସ କରୁଥିଲା । ଦିନେ ସେ ଏମିତି ହେଲା ଯେ, ମୋ କଥାକୁ କାନ ନ ଦେଇ ସେ ପୁଣି ଚୋରି କରିବାରୁ, ବାଧ ହୋଇ ମୁଁ ତାକୁ ତାହାର ବାପ ମାଆଙ୍କ ପାଖରେ ଛାଡ଼ି ଦେଇ ଆସିବି ବୋଲି ଭୟ ଦେଖାଇଲି । ଏମିତି ଭୟ ତାକୁ ଆଗରୁ ଅନେକ ଥର ଦେଖାଇଛି । ଏହା ପରେ ମୋତେ କିଛି ଦିନ ସକାଳେ ନିଜର ବ୍ୟବସାୟ ସଂକ୍ରାନ୍ତରେ ସହରର ବାହାରକୁ ଯାଇଥିବାକୁ ପଡ଼ିଲା ।

କିନ୍ତୁ ଜଣ, ଫେରି ଆସି ଦାଣ୍ଡ ଦୁଆରଟା ଖୋଲି ଦେଲା ମାତ୍ରେ ଯେଉଁ ବିଭତ୍ସ ଦୃଶ୍ୟ ଆଗ ମୋ ଆଖିରେ ପଡ଼ିଲା ତାହା ହେଉଛି ମୋର ସେହି ବାଳକ ଓ ଜୀବନର ଖେଳ ସାଥୀ ମଣିଷଟି ବନ୍ଧ ଘରର ଛାତରେ ଝୁଲୁଛି । ତାହାର ପାଦ ଚଟାଣ

ଯାରୁ ଅଳ୍ପ ଟିକିଏ ଉପରେ ରହିଛି । ଗୋଟାଏ ଚୌକି ତଳାଣରେ ଓଲଟି ପଡ଼ିଛି, ବୋଧହୁଏ କାମ ସାରି ଦେଇ ସେ ଗୋଇଠା ମାରି ସେଟାକୁ ଢ଼କାଇ ଦେଇଥିଲା । ତାହାର ମଥାଟା ମୋଡ଼ି ହୋଇ ଗୋଟାଏ ପଟକୁ ତଳ ପଡ଼ିଛି, ମୁହଁଟା ଫୁଲି ଯାଇଛି, ଆଖି ପତା ମେଲା ହୋଇ ରହିଛି । ତାହାର ଭୟଙ୍କର ଦୃଷ୍ଟିରେ ଗୋଟାଏ ତୀବ୍ର ଏକାଗ୍ରତା ଯେମିତି ଜୀବନକୁ ଗୋଟାଏ ନୂତନ ମାୟାରେ ବାନ୍ଧିଛି । ତୁମେ ନିଶ୍ଚୟ ବୁଝି ପାରୁଥିବ ଯେ ତାକୁ ସେଠାରୁ ଖସାଇ ନେଇ ଆସିବା ଏତେ ସହଜ କାମ ନୁହେଁ । ଗୋଟିଏ ହାତରେ ମୁଁ ତାହାର ଝୁଲୁଥିବା ଶୀତଳ ଶରୀରଟା ଜାବୁଡ଼ି ଧରିଲି ଏବଂ ଆର ହାତରେ ଦଉଡ଼ିଟା କାଟିବାକୁ ଚେଷ୍ଟା କଲି । କିନ୍ତୁ ସେତିକରେ ସବୁ କଥା ଛିଡ଼ିଗଲା ନାହିଁ । କ୍ଷୁଦ୍ର ହତଭାଗାଟା ଏତେ ସରୁ ଦଉଡ଼ିରେ ନିଜର ବେକଟା ବାନ୍ଧି ଦେଇଥିଲା ଯେ ଦଉଡ଼ିଟା ତା ବେକର ନରମ ମାଂସ କାଟି ବସି ଯାଇଥିଲା । ତେଣୁ, ତା ବେକରୁ ଦଉଡ଼ିଟା କାଟି ବାହାର କରିବା ଲାଗି, ମୋତେ ଗୋଟାଏ ନୂଆ ବ୍ଲେଟ କଇଁଚି ବ୍ୟବହାର କରିବାକୁ ପଡ଼ିଥିଲା ।

ତୁମକୁ ଅବଶ୍ୟ ମୁଁ କହିବାକୁ ଭୁଲି ଯାଇଛି ଯେ ଇତି ମଧ୍ୟରେ ମୋତେ ଟିକିଏ ସାହାଯ୍ୟ କରିବା ଲାଗି ମୁଁ ମୋର ପ୍ରତି-ବେଶୀମାନଙ୍କୁ ଡାକିଥିଲି । କିନ୍ତୁ ସେମାନେ ସମସ୍ତେ ଏ ବିଷୟରେ ମୋତେ ସାହାଯ୍ୟ କରିବାକୁ ମନା କରିଦେଲେ । ସୁତରାଂ ମୋର ଧାରଣା ହେଲା ଯେ ସଭ୍ୟ ମଣିଷମାନଙ୍କର ବୋଧହୁଏ ଦଉଡ଼ି ଦେଇଥିବା ଲୋକମାନଙ୍କ ସମ୍ବନ୍ଧରେ କୌଣସି ଦାୟିତ୍ୱ ବୋଧ ନ ଥାଏ । ଯାହା, ଅବଶେଷରେ ଡାକ୍ତର ଆସିଲେ, ସେ ଜଣାଇଦେଲେ ଯେ ବାଳକଟି ମାତ୍ର କେତେ ଘଣ୍ଟା ଆଗରୁ ପ୍ରାଣ ହରାଇଛି । ପରେ, ତାକୁ କବର ଦେବା ଲାଗି ତାହାର ପୋଷାକ ଖୋଲିବା ସମୟରେ

ମୁଁ ଜାଣି ପାରିଥିଲି, ତାହାର ଶରୀର ଏତେ ଶକ୍ତ ହୋଇଯାଇଥିଲା ଯେ ଜାମାପଟା ଖୋଲିବା ମୋ ପକ୍ଷରେ ପ୍ରାୟ ଅସମ୍ଭବ ହୋଇ ଯାଇଥିଲା । ଅବଶେଷରେ ତାହାର ଦେହରୁ ପୋଷାକପତ୍ର ସବୁ କାଟି କରି କାଢ଼ିବାକୁ ହୋଇଥିଲା ।

ତୁମେ ତ ବୁଝି ପାରୁଥିବ, ମୋତେ ପୋଲିସ ଇନ୍ସପେକ୍ଟରଙ୍କୁ ଦୁର୍ଘଟଣାର ଖବରଟା ଦେବାକୁ ପଡ଼ିଥିଲା । ପୋଲିସ ଇନ୍ସପେକ୍ଟର ସରୁ ଆଖିରେ ମୋତେ ନିରେଖି କରି ଦେଖି କହିଲେ; "ଏଥିରେ ଯେମିତି ଅନ୍ୟ ରକମ କିଛିଥିଲା ଭଳି ମାଲୁମ ହେଉଛି !" —ପରେ ମୁଁ ଜାଣେ ଯେ ସେ ନିଜର ବ୍ୟକ୍ତିଗତ ଅଭିଜ୍ଞତା ଓ ପେଶାଦାରୀ ସ୍ୱଭାବରୁ ଦୋଷୀ ଓ ନିର୍ଦୋଷୀ ଦୁହିଁଙ୍କ ମନରେ ଭୟ ଜାତ କରାଇବା ଉଦ୍ଦେଶ୍ୟରେ ଏ କଥାଟି କହିଥିଲେ ।

ସେହି ଭଦ୍ରଙ୍କର କାମଟା ସେତେବେଳେ ବାକି ଥିଲା, ଏବଂ ସେହି ବିଷୟ ଚିନ୍ତା କଲା ମାତ୍ରେ ମୁଁ ପ୍ରଚଣ୍ଡ ଯନ୍ତ୍ରଣା ଅନୁଭବ କରିଥିଲି । କାମଟା ଥିଲା ତାହାର ବାପ-ମାଆଙ୍କୁ ଏହି ଖବରଟି ଦେବା । ଏହି କଥା ଭାବିଲା ମାତ୍ରେ ମୋର ସମସ୍ତ ଶରୀରଟା ଶୀତଳ ହୋଇ ଯାଉଥିଲା । ଅବଶେଷରେ ମୁଁ ଯଥେଷ୍ଟ ସାହସ ସଞ୍ଚୟ କଲି କିନ୍ତୁ, ଯା ଭିତରେ ଆଶ୍ଚର୍ଯ୍ୟ କଥାଟା କଣ ଜାଣ ? ଖବରଟା ଶୁଣି ସାରିଲା ପରେ ବି ତାହାର ମାଆ ଟିକେ ମାତ୍ର ବିଚଳିତ ହେଲା ନାହିଁ । ତାହାର ଆଖିରେ ଟୋପାଏ ହେଲେ ଲୁହ ମୁଁ ଦେଖିବାକୁ ପାଇଲି ନାହିଁ । ମୋତେ ବୋଧ ହେଲା, ତାହାର ଏହି ଅଦ୍ଭୁତ ଆଚରଣ ବୋଧହୁଏ ପ୍ରଚଣ୍ଡତମ ଶୋକର ଏକ ନିଦାରୁଣ ଅଭିବ୍ୟକ୍ତି, ଯେମିତି ସେହି ଯେଉଁ ପ୍ରଚଳିତ କଥାଟା ଅଛି "ତୀବ୍ରତମ ଦୁଃଖ ମଣିଷକୁ ମୂକ କରିଦିଏ ।" କିନ୍ତୁ ତାହାର ବାପ, ଦୀର୍ଘ ନିଶ୍ୱାସ ଛାଡ଼ି, କୌଣସି ପ୍ରକାରେ କହିଲା : "ଏହା ବରଂ ଭଲ ହୋଇଛି,

ନୋହିଲେ ଶେଷକୁ ବିଚରାଙ୍କୁ ଆହୁରି କେତେ ଦୁଃଖ ଯନ୍ତ୍ରଣା ଭୋଗିବାକୁ ପଡ଼ ଥାଆନ୍ତା ।"

ଇତି ମଧ୍ୟରେ ମୁଁ ବାଳକଟିକୁ ଶେଯରେ ଆଣି ଶୁଆଇ ଦେଇଥିଲି । ଜଣେ ଚାକରକୁ ସଙ୍ଗରେ ନେଇ, ମୁଁ ତାକୁ କବର ଦେବାର ବ୍ୟବସ୍ଥା କରୁଥିଲି, ଠିକ୍ ଏତିକି ବେଳେ ତାହାର ମାଆ ଆସି ମୋ ଘରେ ହାଜର ହୋଇଗଲା । ତା ପୁଅର ଶବ ଦେଖିବ ବୋଲି ସେ ମୋତେ କହିଲା । ମୁଁ ସେହି ମର୍ମନ୍ତୁଦ ଦୃଶ୍ୟଟି ଦେଖିବାରେ ତାକୁ ସତରେ ବାଧା ଦେଇ ପାରିଲି ନାହିଁ, କାରଣ ମୋର ମନେ ହୋଇଥିଲା ଯେ ସେହି ଦେଖାଟା ହିଁ ହୁଏତ ତାହାର ସବୁ ଠାରୁ ବଡ଼ ବିଷଣ୍ଣ ସାନ୍ତ୍ୱନା । ତାପରେ ହଠାତ୍ ତା ପୁଅର ମୃତ୍ୟୁର ଜାଗାଟା ଦେଖାଇଦେବା ପାଇଁ ସେ ମୋତେ କହିଲା ।

"ନା, ନା, ସେଟା ଭାରି ଭୟାନକ, ଆପଣ ଦେଖି ପାରିବେ ନାହିଁ । ଦେଖିଲେ ବିଚଳିତ ହୋଇଯିବେ," ମୁଁ ଜବାବ ଦେଲି ।

ମୁଁ ଚିତ୍କାର କରି ତାକୁ ବାଧା ଦେବାକୁ ଚେଷ୍ଟା କଲି, ଏବଂ ମୋ କଥା ସାରିଦେଇ ଚକିତରେ ସେହି ଅଭିଶପ୍ତ ନିଭୃତ-ପ୍ରକୋଷ୍ଠ ଆଡ଼କୁ ଟିକିଏ ଚାହିଁଦେଲି । ମୋର ନଜର ପଡ଼ିଲା କ୍ଷଣି, ମୁଁ ଆତଙ୍କିତ ହୋଇଗଲି । ବିରକ୍ତି ଓ କ୍ରୋଧରେ ଦେଖିଲି, ଛାତରେ ପିଟା ଯାଇଥିବା କଣ୍ଟାଟାରେ ତେବେ ସୁଦ୍ଧା ଦଉଡ଼ିଟା ଝୁଲୁଛି । ତତ୍କ୍ଷଣାତ୍ ମୁଁ ସେଠାକୁ ଧାଇଁଗଲି ଆତ୍ମହତ୍ୟାର ସେହି ମର୍ମାନ୍ତିକ ଘଟଣାର ଶେଷ ଚିହ୍ନ ସ୍ୱରୂପ ଦଉଡ଼ିଟାକୁ କାଟି ପକାଇବା ପାଇଁ, ସେଟା ଖୋଲି ଆଣି ଝରକା ବାଟେ ବାହାରକୁ ଫିଙ୍ଗି ଦେବାକୁ ବସିଛି ଠିକ୍ ସେତିକି ବେଳେ, ସେହି ଅଭାଗିନୀଟି ମୋର ହାତ ଚାପି ଧରିଲା, ଏବଂ ଏକ ଅସ୍ୱାଭାବିକ ସ୍ୱରରେ କହି ପକାଇଲା :

"ଓଃ ! ମହାଶୟ, ସେଇଟା ମୋତେ ଦିଅନ୍ତୁ ! ମୋ ପ୍ରତି ଟିକିଏ ସଦୟ ହୁଅନ୍ତୁ ! ଆପଣଙ୍କୁ ନିବେଦନ କରୁଛି !"

ତାହାର କଥା ମୋ କାନରେ ପଡ଼ିଲା କ୍ଷଣି ମୋତେ ଜଣା ଗଲା, ବୋଧହୁଏ ସେ ପାଗଳ ହୋଇ ଯାଇଛି ଏବଂ ତାହାର ଅପତ୍ୟ ସ୍ନେହ ଏକ୍ଷଣି ତା ପୁଅର ମୃତ୍ୟୁର ଅସ୍ତ୍ର ଉପରେ ପଡ଼ିଛି । ତାହା ନ ହେଲେ ସେହି ଦଉଡ଼ିଟାକୁ ଗୋଟାଏ ଭୟଙ୍କର ଅମୂଲ୍ୟ ସ୍ମୃତି ଚିହ୍ନ ହିସାବରେ ରଖିବାକୁ ବା ସେ କାହିଁକି ଚାହାନ୍ତା । ସେ ମୋ ହାତରୁ ଦଉଡ଼ି ଖଣ୍ଡିକ ଓ କଣ୍ଟାଟା ପ୍ରାୟ ଛଡ଼ାଇ ନେଇଗଲା ।

ତା ପରେ, ଅବଶେଷରେ, ସବୁ ଶେଷ ହୋଇଗଲା ! ମୋର ଆଉ କିଛି କରିବାକୁ ରହିଲା ନାହିଁ । ମୁଁ ମନ ପ୍ରାଣ ଦେଇ ପୂର୍ବାପେକ୍ଷା ଅଧିକ ଜୋରରେ ମୋ କାମ ଭିତରେ ବୁଡିଗଲି, ଏବଂ ପ୍ରାଣ ପଣେ ଚେଷ୍ଟା କରିବାକୁ ଲାଗିଲି ସେହି ସ୍ଥୂଳ ଶୀତଳ ଶରୀରଟିର ସ୍ମୃତି ମୋ ମନରୁ ପଶୋରି ଦେବା ପାଇଁ । ତାହାର ବିଶାଳ ଭୟଙ୍କର ଦୃଷ୍ଟିଟା ଯେପରିକି ମୋତେ ସଦା ସର୍ବଦା ପୋଡ଼ି ଜାଳି ଦେବାକୁ ଲାଗିଲା । ଏହି ଘଟଣାର କିଛି ଦିନ ପରେ, ମୁଁ ଗୋଟିଏ ଚିଠି ପାଇଲି । କେତେକ ସେହି କୋଠାର ଅନ୍ୟ ଭଡ଼ାଟିଆମାନଙ୍କ ଠାରୁ ଏବଂ ଆଉ କେତେକ ନିକଟବର୍ତ୍ତୀ ପ୍ରତିବେଶୀମାନଙ୍କ ଠାରୁ ଖଣ୍ଡିଏ ଏକ ତଲାରୁ, ଖଣ୍ଡିଏ ଦିତାଲାରୁ, ଖଣ୍ଡିଏ ତେତାଲାରୁ, ଏହିପରି ଭାବରେ ପ୍ରାୟ ପ୍ରତି ତାଲାରୁ ଚିଠି ଆସିଛି—କାହାର କାହାର ଲେଖାର ଭଙ୍ଗୀ ଟିକିଏ ବଙ୍କା, କେହି ବା ଶିକ୍ଷଣ ବିଦ୍ରୂପ କରିଛି, କାହାର ଚିଠି ଭୁଲ ବନାନରେ ପୂରିଛି; କିନ୍ତୁ ପ୍ରତି ଚିଠିରେ ସେମାନେ ଏକମାତ୍ର ଅନୁରୋଧ ଜଣାଇଛନ୍ତି । ପ୍ରତ୍ୟେକ ବ୍ୟକ୍ତି ମୋ ଠାରୁ ସେହି ଅଭିଶପ୍ତ ଦଉଡିଟା ମାଗି ପଠାଇଛନ୍ତି । ସବୁଠୁ ବଡ଼ ଆଶ୍ଚର୍ଯ୍ୟର କଥା କ'ଣ ଜାଣ ? ପତ୍ର-ଲେଖକମାନେ ସମସ୍ତେ

ପ୍ରାପ୍ତ ମହିଳା; କିନ୍ତୁ ସେମାନଙ୍କ ଭିତରୁ କେହି ହେଲେ, କୌଣସି ମତେ, ଅତି ନିମ୍ନ ଓ ସାଧାରଣ ଶ୍ରେଣୀର ନ ଥିଲେ । ମୁଁ ସେହି ଚିଠିସବୁ ରଖି ଦେଇଛି । ଦେଖିବାକୁ ଚାହିଁଲେ ମୁଁ ତୁମକୁ ତାହା ଦେଖାଇ ପାରେ ।

ସେହି ଚିଠିଗୁଡ଼ିକ ହସ୍ତଗତ ହେଲାରୁ, ମୋ ଉପରେ ସହସା ଆଲୋକ ପାତ ହେଲା, ଏବଂ ମୁଁ ବୁଝି ପାରିଲି, କାହିଁକି ସେହି ଦଉଡ଼ିଟା ମୋ ଠାରୁ ନେବା ଲାଗି ବାଳକଟିର ମାଆ ସେ ଦିନ ଏତେ ବ୍ୟସ୍ତ ହୋଇ ପଡ଼ିଥିଲା ଏବଂ କେଉଁ ଉପାୟରେ ସାନ୍ତ୍ୱନା ପାଇବା ପାଇଁ ସେ ଦରଣ୍ଡି ହେଉଥିଲା ।

— ଶାର୍ଲ ବୋଦ୍ୟଲୋର

# ବସୁଧା

— ୧ —

ଗୋଟିଏ ଛୋଟ କୁଡ଼ିଆ । ଜୀର୍ଣ୍ଣଶୀର୍ଣ୍ଣ ହେଲେ ସ୍ନିଗ୍ଧ ସୁଖଶାନ୍ତିରେ ପରିପୂର୍ଣ୍ଣ । ଗମ୍ଭୀର ରାତି । ଚୁଲିରେ କୋଇଲା ଜଳୁଛି । ଗ୍ଲାସର କଳା ବଉଗା ଦେହରେ ତାର ରଙ୍ଗୀନ ଆଭା ପଡ଼ୁଛି । ଘର ଭିତରେ ଆବଛା ଆଲୁଅରେ ଜିନିଷପତ୍ରସବୁ ଅସ୍ପଷ୍ଟ ଦେଖା ଯାଉଛି । କାନ୍ଥରେ ଜାଲଗୁଡ଼ିକ ଟଙ୍ଗା ହୋଇଛି । ଘରର ଏକ କୋଣରେ ଗୋଟିଏ ସେଲ୍‌ଫରେ ବାସନକୁସନସବୁ ରଖା ଯାଇଛି, ସେଥିରୁ ଟୁଂ ଟାଂ ଆବାଜ ଆସୁଛି । ଗୋଟିଏ ଖୁବ୍ ବଡ଼ ବିଛଣା ଉପରେ ମସିଆ ଟଣା ହୋଇଛି । ତା ପାଖରେ କେତୋଟି ପୁରୁଣା ବେଞ୍ଚ ଉପରେ ମସିଣା ପଡ଼ିଛି । ତାରି ଉପରେ ଆରାମରେ କୁଣ୍ଢାକୁଣ୍ଢି ହୋଇ ଶୋଇ ରହିଛନ୍ତି ତାଙ୍କୋଟି ପୁଅଝିଅ, ଠିକ୍ ମାଡ଼ରେ ପକ୍ଷୀ-ଶାବକ ପରି । ବଡ଼ ବିଛଣା କଡ଼ରେ ଝରକା ଆଡ଼କୁ ମଥା ରଖି ଆଣ୍ଠୁ ମାଡ଼ି ବସି ରହିଛି ଏମାନଙ୍କର ମାଆ । ଏକାକିନୀ ସେ । ବାହାରେ ନୀଳ ସାଗର କ୍ଷୁବ୍‌ଧ ଫେନିଳ ଗର୍ଜନରେ କୁଦି ପଡ଼ୁଛି, ଚିତ୍କାର କରୁଛି ଏବଂ ଅବିରାମ କ୍ରୁଦ୍ଧ ପ୍ରଳାପରେ ମେଦିନୀ ଫଟାଇ ଦେଉଛି । ଏହି ସାଗର ବକ୍ଷରେ ତାହାର ସ୍ୱାମୀ ରହିଛି ।

ଶୈଶବରୁ ସେ ଧୀବର । ତାହାର ଜୀବନକୁ ବିରାଟ ଜଳରାଶି ସହିତ ଦୈନନ୍ଦିନ ଯୁଦ୍ଧ କରିବାଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରତି ଦିନ ପେଟ ଗାଡ଼ି କରିବାକୁ ହେବ ଖାଦ୍ୟ, ଧରିବାକୁ ହେବ ମାଛ । ଶୀତ ଗ୍ରୀଷ୍ମ ଝଡ଼-ଝଞ୍ଜା ବଜ୍ରାଘାତରେ କେବେ ହେଲେ ତାହାର କମାଇ ନାହିଁ । ନୌକାରେ ଗୁଟିଏ ପାଲ ଟାଙ୍ଗି ଦେଇ ସାଗର ବକ୍ଷରେ ତାଙ୍କୁ ଏକାକୀ ଖଟିବାକୁ ପଡ଼େ, ଆଉ ଏଣେ ତାହାର ସ୍ତ୍ରୀ କୁଡ଼ିଆଟିରେ ରାତିରେ ଉଜାଗର ରହି ପୁରୁଣା ପାଲରେ ତାଳି ପକାଏ, ଜାଲ ରଫ କରେ, ବଣିଗୁଡ଼ାକ ଗୋଟାଇ ରଖେ ଏବଂ ତାହିଁ ସଙ୍ଗେ ସଙ୍ଗେ ରୋଷେଇ ଉପରେ ବି ନଜର ରଖେ । ପାଞ୍ଚୋଟି ଯାକ ପିଲା ଶୋଇ ପଡ଼ିଲେ ସେ ଆଣ୍ଠୁ ମାଡ଼ି ଭଗବାନଙ୍କୁ ପ୍ରାର୍ଥନା କରେ— ଝଡ଼ ବର୍ଷା ଓ ଅନ୍ଧାର ଭିତରେ ତାହାର ସ୍ୱାମୀ ଯେମିତି ବିଜୟୀ ହୋଇ ଫେରି ଆସୁ । ଅତ୍ୟନ୍ତ କଠିନ ଏହି ଧୀବର-ଜୀବନ !

ବହୁ ଦୂରରେ ଗୋଟିଏ ଶ୍ରେଷ୍ଠ ଜାଗାରେ ମାଛ ପଡ଼ିବାର କଥା — ଅତି ଶ୍ରେଷ୍ଠ ଜାଗାଟିଏ — ଏହି ଦିଗହଜା ବିପୁଳ ଜଳରାଶି ବକ୍ଷରେ ଗୋଟିଏ ଅସ୍ଥିର ଅସ୍ପଷ୍ଟ ବିନ୍ଦୁ ! ଅଥଚ ଶୀତର ଅନ୍ଧକାରରେ ଦୁର୍ଯୋଗ ରାତିରେ ଏହାକୁ ଖୋଜି ବାହାର କରିବାକୁ ପଡ଼ିବ, ଅବଶ୍ୟ ପାଲର ଜୋରରେ ଓ ଜଳର ମର୍ଜି ବୁଝିସୁଝି । ଗୁରିଆଡ଼େ ଗଡ଼ ଗଡ଼ ଧାଇଁ ଚାଲିଛି ଢେଉ ପରେ ଢେଉ, ହଲି ଦୋହଲି ଚାଲିଛି କମ୍ପମାନ ଅନ୍ଧକାରରେ—ଠିକ୍ ମରକତ-ମଣି-ଧାରୀ ବିରାଟ ସାପ ଭଳି ! ଟାଣି ହେଉଥିବା ପାଲ ଓ ଦଉଡ଼ି ବାରମ୍ବାର ଗଁ ଗଁ ଚିତ୍କାର କରୁଛନ୍ତି । ଏଠାରେ, ଏହି ଭୁବନ ଜଳରାଶି ବକ୍ଷରେ ବସି ସେ ଭାବୁଥାଏ ନିଜର ସ୍ତ୍ରୀ ଜେନିର କଥା । ଏଣେ କୁଡ଼ିଆଟିର ଝରକାରେ ଅଶ୍ରୁ-ସଜଳ-ନୟନରେ ଚାହିଁ ରହି ଜେନ ଭାବୁଥାଏ ନିଜ ସ୍ୱାମୀର କଥା !

ନାନା କଥା ଭାବି ଭାବି ଶେଷରେ ସେ ଭଗବାନଙ୍କ ନିକଟରେ ଆକୁଳ ପ୍ରାର୍ଥନା କରେ । ସମୁଦ୍ର-ଜଳର ଉଦ୍ରମାତ୍ମକ କର୍କଶ ଚିତ୍କାରରେ ସେ ବ୍ୟଥିତ ହୋଇଯାଏ, ଏବଂ ତୀର-ଶୈଳର ଅଙ୍ଗରେ ତରଙ୍ଗାଘାତର ଗର୍ଜନରେ ତାହାର ବକ୍ଷ କମ୍ପିତ ହୁଏ । ଠିକ୍ ସେତିକି ବେଳେ ତା ମନ ଭିତରେ କେତେ ରକମ ଚିନ୍ତା ଖେଳି ଯାଏ—ଦାରିଦ୍ର୍ୟର କ୍ଳାନ୍ତକଷ୍ଟ ଭାବନା । କି ଶୀତ କି ଖରାରେ, କେବେ ହେଲେ ତା ପୁଅଝିଅଙ୍କ ଗୋଡ଼କୁ ଜୋତା ଯାଏ ନାହିଁ, ଜୀବନରେ ସେମାନେ କେବେ ପାଉଁରୁଟି ଆଖିରେ ବି ଦେଖି ନାହାନ୍ତି—ଖାଲି ମଇଦା, ଆଉ ମଇଦା ! ହେ ଭଗବାନ ! ହେଇ ଯେ ପବନରେ ସାଁ ସାଁ ଶବ୍ଦ ଶୁଭୁଛି, ସମୁଦ୍ର ବି ହାତୁଡ଼ିର ହିଂସ୍ର ଆଘାତ ପରି ପ୍ରତିଧ୍ୱନି କରୁଛି ! ସେ ଥରିବାକୁ ଲାଗେ, ତାହାର ସର୍ବାଙ୍ଗ କମ୍ପୁଥାଏ । ହାୟରେ ହତଭାଗିନୀସବୁ, ସ୍ୱାମୀ ଯାହାଙ୍କର ଦୂର ସମୁଦ୍ରରେ ! "ଆମର ବାପ-ମା ଭାଇ-ଭଉଣୀ ସମସ୍ତେ ବହିଛନ୍ତି କ୍ଷୁବ୍ଧ ସାଗର ମୁଖରେ !" କଥାଟା ଶୁଣିଲେ ମାନେ ଅନ୍ତରରେ ତାହାର ଭୟ ଜାତ ହୁଏ । ଜେନ, ବିଚାରି ଜେନ ! ସ୍ୱାମୀ ତାହାର ଏକା, ଏହି ଦୁର୍ଯୋଗ ରାତିରେ କେହି ନାହିଁ ତା ପାଖରେ ! ପିଲା-ମାନେ ଏକ୍ଷଣି ଖୁବ୍ ସାନ ! ହାୟରେ ହତଭାଗିନୀ ମାଆ ! ସେ ମନେ ମନେ କହୁଛି—"ସେମାନେ ବଡ଼ ହୋଇଥିଲେ ଆଜି ମୋର ସ୍ୱାମୀକୁ ସାହାଯ୍ୟ କରିପାରି ଥାଆନ୍ତେ !" କି ଯେ ପାଗଳା କଥା ! ତା ପରେ ଦିନେ ଯେତେବେଳେ ସେହି ପୁଅମାନେ ଝଡ଼ର ସାଗର ଭିତରକୁ ତାଙ୍କ ବାପାଙ୍କ ସାଙ୍ଗରେ ଚାଲିଯିବେ, ସେତେବେଳେ ଏହି ମାଆଟି ପୁଣି ଛଳଛଳ ଆଖିରେ କହିବାକୁ ଲାଗିବ—"ଆଜି ଯଦି ସେମାନେ ସେହି ସାନ ସାନ ପିଲା ହୋଇ ରହି ଥାଆନ୍ତେ !"

—୨—

କେନ ଦେହରେ ଖଣ୍ଡିଏ ଜାମା ବେଢ଼ାଇ ବଉଟିଏ ଧରି ବାହାରିଲା । ଗଲାବେଳେ ସେ ନିଜର ମନେ ମନେ କହୁଥିଲା— "ଏକ୍ଷଣି ତ ତାହାର ଫେରି ଆସିବାର ବେଳ । ଯାଏଁ, ଥରେ ଦେଖେଁ, ସମୁଦ୍ର ଶାନ୍ତ ହୋଇଛି କି ନା, ମାସ୍ତୁଲର ଅଗରେ ଜଳନ୍ତା ଆଲୁଅର ଚିହ୍ନ ଦେଖା ଯାଉଛି କି ନା !" ସେ ପଦାକୁ ଚାଲି ଆସିଲା । ତାହାର ଦୃଷ୍ଟିରେ କିଛି ପଡ଼ିଲା ନାହିଁ, ଖାଲି ଦିଗନ୍ତରେ ଦେଖା ଯାଉଥିଲା ଗୋଟାଏ ଝଲମଲ ଆଲୁଅର ରେଖା । ବର୍ଷା ହେଉଥିଲା— ମେଘୁଆ ରାତିରେ ଅନ୍ଧକାରାଚ୍ଛନ୍ନ ତୁଷାରପାତ । କୌଣସି ଘରର ଝରକାରେ କାଣିଚାଏ ହେଲେ ଆଲୁଅ ଦିଶୁ ନ ଥିଲା ।

ଚାରିଆଡ଼େ ଖୋଜି ଖୋଜି ହଠାତ୍ ତାହାର ଆଖିରେ ପଡ଼ିଗଲା ଗୋଟାଏ ଭାଙ୍ଗି-ପଡ଼ିଥିବା କୁଡ଼ିଆ । ଆଲୁଅ ନାହିଁ, ନିଆଁର ଚିହ୍ନ ବର୍ତ୍ତି ନାହିଁ ! ପବନରେ ଦୁଆରର କବାଟ ଧଡ଼ଧଡ଼ ହେଉଛି, ଝାଞ୍ଜ-ଖିଆ ଚାଳ ପ୍ରାୟ ଭାଙ୍ଗି ପଡ଼ିବା ଉପରେ, ଠାଏ ଠାଏ ଚାଳ ନଡ଼ା ଖସିଯାଇ ପବନରେ ବାରମ୍ବାର ଉଡ଼ପଡ଼ ହେଉଛି ।

"ଏହି ଗରିବ ବିଧବାଟିର ଟିକିଏ ଖବର ବୁଝିବା ନିତାନ୍ତ ଦରକାର । ସେ ରୋଗରେ ପଡ଼ିଛି, ତାକୁ ସବୁ ଦିନ ମୋର ସ୍ୱାମୀ ଦେଖି ଆସିଛନ୍ତି । ଆଜି ସେ କେମିତି ଅଛି, ଟିକିଏ ବୁଝିଲେ ଭଲ ହୁଅନ୍ତା ।"

ଦୁଆରରେ ଧକ୍କା ଦେଇ ସେ କାନ ପାତି ଠିଆ ହେଲା ।

କୌଣସି ସୋର ଶବ୍ଦ ନାହିଁ । ସମୁଦ୍ରର ହେମାଳ ପବନରେ ଜେନର ଦେହ କମ୍ପୁଥିଲା ।

"ବଛଣାରେ ପଡ଼ିଛି ! ହାୟରେ ଅଭାଗିନୀ, ତାହାର ପିଲା-ମାନେ କଣ କରୁଥିବେ ! ଦୁଇଟି ପିଲା ! କେଡ଼େ ଗରିବ । ଘରେ ବି କୌଣସି ପୁରୁଷ ଲୋକ ନାହିଁ ।"

ସେ ପୁଣି ପାଟି କରି ଡାକିଲା — "ଶୁଭୁ ନାହିଁ କି, ଅପା ?"

ଗୃହଅଟେ ନିସ୍ତବ୍ଧ, ନୀରବ ।

"ହାୟରେ ଭଗବାନ ! କି ନିଦ ଯାଉଛି ! ତାକୁ ଉଠାଇବା ଯେ ଗୋଟାଏ ବଡ଼ ସମସ୍ୟା ।"

ଦୁଆରଟା ହଠାତ୍ ଆପେ ଆପେ ଖୋଲିଗଲା । ସେ ଭିତରକୁ ପଶିଗଲା । ଘରର ନିଃଶବ୍ଦ ଅନ୍ଧକାର ହାତର ଲଣ୍ଠନରେ ଆଲୋ-କିତ ହୋଇଗଲା । ଗୃହ୍ଣୀ ପରି ଛାତରୁ ଅବିରାମ ପାଣି ଗଳୁଥିଲା । ଘରର ଗୋଟାଏ କୋଣରେ, କଣ ଗୋଟାଏ ପଡ଼ିଥିଲା । ହଁ, ଜଣେ ସ୍ତ୍ରୀ ଲୋକ ମୋଡ଼ି ମାଡ଼ି ହୋଇ ଶୋଇ ରହିଥିଲା । ଖାଲି ପାଦ, ଆଖି ଦୃଷ୍ଟିହୀନ ! ଦୁଇଟି ରକ୍ତହୀନ ଶୀତଳ ହାତ ବଛଣା ଉପରେ ନିର୍ଜୀବ ଭାବରେ ପଡ଼ି ରହିଥିଲା । ଏଁ, ସେ ମରି ଯାଇଛି ! ଦିନେ ତ ସେ ଥିଲା ସୁଖୀ ମାଆ, ତାହାର ଶରୀରରେ ଥିଲା ଅତୁଳନୀୟ ରୂପ । ଆଜି ଜୀବନ-ଯୁଦ୍ଧର ଅବସାନ ପରେ ଖାଲି ପଡ଼ି ରହିଛି ତାହାର କରୁଣ କଙ୍କାଳଟା !

ବଛଣା ପାଖରେ ଦୁଇଟି ଶିଶୁ—ଗୋଟିଏ ପୁଅ, ଆଉ ଆରଟି ଝିଅ । ଝୁଲଣାରେ ଶୋଇଛନ୍ତି ସେମାନେ, ସ୍ୱପ୍ନରେ ହସୁଛନ୍ତି ଏବଂ ଖେଳୁଛନ୍ତି । ଆଉ ସମସ୍ତ ନାହିଁ ଜାଣି ପାରି ସେମାନଙ୍କର ମାଆ ନିଜ ଦେହରୁ ଜାମାଟା କାଢ଼ି ସେମାନଙ୍କ ଗୋଡ଼ ଉପରେ ଢ଼ାଙ୍କି

ଦେଇଛି । ସେମାନେ ଟିକିଏ ଚରମ ପାଆନ୍ତୁ, ନିଜେ ନ ତାହାଙ୍କ ଦେହ ହେମାଳ ହୋଇ ଯାଇଛି , ମରଣ ଆଡ଼କୁ ସେ ଆଗେଇ ଯାଉଛି ।

ଜୀର୍ଣ୍ଣ ପୁରୁଣା ଝଲଣାରେ ସେମାନେ ଶୋଇ ପଡ଼ିଛନ୍ତି । କି ଗଭୀର ନିଦ୍ରା ! ଏକା ସାଙ୍ଗରେ ଦୁହେଁ କି ସୁନ୍ଦର ନିଶ୍ୱାସ ନେଉ-ଛନ୍ତି ! କି ଶାନ୍ତ ସ୍ନେହ ସ୍ନେହ ମୁଖ ଦୁଇଟି ! ପିତାମାତାଙ୍କର ଏହି ଶିଶୁ ଦୁଇଟିର ନିଦ ଯେମିତି କୌଣସି ମତେ ଆଉ ଭାଙ୍ଗିବ ନାହିଁ । ବାହାରେ ପ୍ରଚଣ୍ଡ ବର୍ଷା ହେଉଛି, ସମୁଦ୍ରରୁ ସର୍ବନାଶୀ ଇଙ୍ଗିତ ପରି ଆବାଜ ଆସୁଛି । ଭଙ୍ଗା ଛାତ ବାଟେ ଝରଝର ହୋଇ ପାଣି ଗଳୁଛି । ସେହି କଣା ବାଟେ ଟୋପାଏ ପାଣି ଆସି ମଲ୍ଲ ମାଆର ଆଖି ଉପରେ ପଡ଼ିଲା, ଯେମିତି ଟୋପାଏ ଲୁହ ପରି ଗଡ଼ି ଯିବାକୁ ଲାଗିଲା ।

— ୩ —

ସେହି ଘର ଭିତରେ କଣ କରୁଛି କେନା ? କି ଧନ ସେ ଲୁଚାଇ ନେଉଛି ତା' ଜାମା ଭିତରେ ! ଏମିତି ଭାବରେ କମ୍ପୁଛି କାହିଁକି ତାହାର ଛାତି ? ଏମିତି ଅସ୍ଥିର ପଦରେ ସେ କାହିଁକି ଧାଇଁ ଯାଉଛି ନିଜର ଘରୁ ଆଡ଼କୁ, ପଛକୁ ଟିକିଏ ଫେରି ଚାହିଁବାକୁ କି ତାହାର ସାହସ ନାହିଁ ? ମଶାଣି ଆଡ଼ୁଆଳରେ ନିଜର ଚଦରଣା ଭିତରେ ସେ କଣ ଲୁଚାଇ ରଖିଲା ? କଣ ସେ ଚୋରି କରିଛି ?

ସେ ଘରକୁ ଫେରି ଆସିଲେ । ପାହାଡ଼ର ଚୂଡ଼ାରେ ଆଲୁଅ ଦିଶିଲା । ଘରକୁ ପଶି ଆସି ସେ ବିଛଣା କଡ଼ରେ ମୋଡ଼ାଟି ଉପରେ ବସି ପଡ଼ିଲା । ତାହାର ମୁଖଟି ବିବର୍ଣ୍ଣ, ଯେମିତି ସେ ଅନୁଶୋଚନାରେ ପ୍ରପୀଡ଼ିତ । ତକିଆ ଉପରେ ତାହାର ମଥାଟି

ଙ୍କୁଳ ପଡ଼ିଛି । ମଝିରେ ମଝିରେ ସେ ନିଜ ମନେ ମନେ ଭଙ୍ଗା ଭଙ୍ଗା ସ୍ୱରରେ କଣ କହି ଯାଉଛି । ଆଉ ତେଣେ ବାହାରେ ଧ୍ୱଂସ, ସମୁଦ୍ର ଭୟଙ୍କର ଚିତ୍କାର କରୁଛି ।

"ହତଭାଗା ସ୍ୱାମୀ ମୋର ! ହାୟ ଭଗବାନ, ଫେରିଲେ ସେ କଣ କହିବ ? ଆଗରୁ ତ କେତେ ବିପଦ ମୁଁ ପାର ହୋଇ ଆସିଛି । ଆଜି ଏ କଣ କଲି ମୁଁ ? ନିଜର ପାଞ୍ଚଟି ସନ୍ତାନର ଦାୟିତ୍ୱ ରହିଛି ମୋର କାନ୍ଧ ଉପରେ । ଏମାନଙ୍କ ବାପର ହାଡଭଙ୍ଗା ମେହେନତ କଥା କଣ କହିବ ! ତା ଉପରେ ଆଣି ମିଳାଇଲି ନୂଆ ଦାୟିତ୍ୱ ଏତେ ଦିନ ହେଲା ମୋର ସଂସାରରେ ଚାଲିଛି ଦୁର୍ଦ୍ଦଶା ! କିନ୍ତୁ ମୋର ସ୍ୱାମୀ, ସେ ବା କିପରି ଲୋକ ? ନା, ନା, ମୁଁ ଅନ୍ୟାୟ କରିଛି, ସେ ଫେରିଲେ ନିଶ୍ଚୟ ମୋତେ ବକିବ, ମୋତେ ମାରିବ । କିନ୍ତୁ ସେ କଣ ସେମିତିକା ଲୋକ ? ନା, ନା ହେଇତ, ଦୁଆରଟା ହଲିଲା, ସେ ଆସିଲା ? ହାୟରେ, ତାହାର ଆସିବାରେ ମୋର ବା କାହିଁକି ଭୟ ହେଉଛି ?"

ଗଭୀର ଚିନ୍ତାରେ ସେ ବୁଡି ରହିଲା । ତାହାର ସର୍ବାଙ୍ଗ ଶୀତରେ ଥରୁଥିଲା । ବାହାରେ ବିଚିତ୍ର ଶବ୍ଦ ! ଚିତ୍କାର କରି ଉଡ଼ି ଯାଉଛି ସମୁଦ୍ର-ଚିଲ, ତାହାଁ ସଙ୍ଗେ ସଙ୍ଗେ ସମୁଦ୍ରର ଗର୍ଜନ ।

ଏତିକି ବେଳେ ଦୁଆରଟା ମେଲା ହୋଇଗଲା, ଘର ଭିତରକୁ ପଶି ଆସିଲା ସଫ ଆଲୁଅ । ଧୀବର ଆସି ଦୁଆର ମୁହଁରେ ଛିଡ଼ା ହୋଇଛି, ଜାଲରୁ ଥପ ଥପ ହୋଇ ପାଣି ନିଗିଡ଼ି ପଡ଼ୁଛି ଆନନ୍ଦରେ ସେ ହସି ହସି ଡାକିଲା—"ଏହି ଯେ ଫେରି ଆସିଲି ତୁମର ଜାଲିଆ ।"

"ତୁମେ !" ଜେନି ବି ଖୁସି ହେଲା । ଠିକ୍ ନୂତନ

ପ୍ରଣୟିନୀ ପରି ସ୍ୱାମୀକୁ କୁଣ୍ଢାଇ ପକାଇ ତାହାର ମୁଣ୍ଡଟି ସ୍ୱାମୀର ଚଉଡ଼ା ଛାତିରେ ଲୁଚାଇ ଦେଲା ।

"ହଁ, ହଁ, ମୁଁ, ତୁମର ।"—ଆଲୁଅରେ ସ୍ପଷ୍ଟ ଭାବରେ ଫୁଟି ଉଠିଲା ତାହାର ସୁଖ-ତୃପ୍ତ ମୁଖଟି । ଜେନର ଏତେ ଧନର ପ୍ରିୟ ମୁଖ-କମଳଟି ।

"ଆଜ କିଛି ହେଲା ନାହିଁ ।"

"ସମୁଦ୍ରର ଅବସ୍ଥା କିପରି ଥିଲା ?

"ଭୟଙ୍କର ।"

"ମଛ ?"

"ରଖ, ରଖ, ସେ କଥା ଆଉ ଭାବ ନାହିଁ । ତୁମକୁ ଯେ ମୋ ଛାତି ଉପରେ ଗୁଣି ପାଇ ପାରିଛୁ, ସେତିକ ମୋ ପକ୍ଷରେ ଯଥେଷ୍ଟ, ସେଥିରେ ମୁଁ ଖୁବ୍ ଖୁସି । ଆଜ କିଛୁ ପାଇଲି ନାହିଁ, ଜେନ ଜାଲଟା ଛିଣ୍ଡିବା ସାର ହେଲା ଖାଲି । ପବନରେ ଥିଲା ଆଜ ସଇତାନର କାରସାଦି । ଝଡ଼ର ମୁହଁରେ ଥରେ ମୋର ମନେହେଲା, ଡଙ୍ଗାଟା ବୋଧହୁଏ ଓଲଟି ପଡ଼ିଲା, ଦଉଡ଼ି ଛିଡିଗଲା ! ହଁ, ତୁମେ ଏତେ ବେଳ ଯାଏ କଣ କରୁଥିଲ ?"

ଅନ୍ଧାରରେ ବି ଜେନର ଦେହରେ ଶିହରଣ ଖେଳିଗଲା । "ମୁଁ ?" —ବିବ୍ରତ ହୋଇ ତା ପାଟିରୁ ବାହାରିଲା— "କଣ ଆଉ କରିବି ? ନିତ ଯାହା କରେ— ସିଲାଇ କରୁଥିଲି, ସାଗରର ଗର୍ଜନ ଶୁଣୁଥିଲି । ମୋତେ କେଉଁ ଡର ମାଡ଼ୁଥିଲା !"

"ହଁ, ଶୀତ ସମୟଟା ଭଲ ନୁହେଁ । ଗୁଡ଼, ତୁମେ ଏକ୍ଷଣି ଆଉ କିଛୁ ଚିନ୍ତା କର ନାହିଁ ।"

ବର୍ତ୍ତମାନ ଅବସ୍ଥାଟା ଏପରି ହେଲା ଯେ ଗୋଟାଏ କିଛୁ ମାରାତ୍ମକ କାର୍ଯ୍ୟ ଯେମିତି ଜେନ କରିବାକୁ ଯାଉଛି । ଥରି ଥରି ସେ

କହିଗଲା;— "ଜାଣ, ଆମର ପଡ଼ଶାଟି ମରିଗଲା ! ବୋଧହୁଏ ରାତିରେ ମରିଛି, ତୁମେ ଦେଖି ଆସିବା ପରେ, ସାନ ସାନ ପିଲା ଦୁଇଟି ଗୁଡ଼ି ଦେଇ ଯାଇଛି । ପୁଅଟି ଏବେ ଠିଆ ହେବାକୁ ଶିଖୁଛି, ଆଉ ଝିଅଟି ଗୋଟେ ଦୁଇଟା କଥା କହି ପାରୁଛି ! ହତଭାଗିନୀ ମାଆଟା କି ଦୁର୍ଦ୍ଦିନରେ ପଡ଼ିଥିଲା !"

ଧୀବରର ମୁଖ ସ୍ଥିର ଗମ୍ଭୀର !

ଟୋପିଟା କାଢ଼ି ଗୋଟେ କୋଣକୁ ଫୋପାଡ଼ ଦେଇ ମଥା କୁଣ୍ଡାଇ କୁଣ୍ଡାଇ ସେ କହିଲା— "ହାୟ ଭଗବାନ ! ନିଜର ତ ପାଞ୍ଚୋଟି ଅଛନ୍ତି, ଏଙ୍କୁ ମିଶାଇଲେ ହେଲା ସାତ ! ଏହି ଦୁର୍ଦ୍ଦିନରେ ନିଜର ପେଟକୁ ତ ଦୁଇ ଓଳି ମୁଠାଏ ଅନ୍ନ ଜୁଟୁ ନାହିଁ । ଆଉ ଏବେଣି ଉପାୟ ? କିନ୍ତୁ ମୁଁ ତ କୌଣସି ଅପରାଧ କରି ନାହିଁ । ଭଗବାନ ତ ସବୁ ଦେଖୁଛନ୍ତି, ସବୁ କରୁଛନ୍ତି । ମୋ ପରି ଇତର ଲୋକ ପକ୍ଷରେ ଏହିପରି ଦୁର୍ବୋଧ କଥା ସବୁ ବିଚାର କରି ଦେଖିବା ବଡ଼ କଠିନ । ଏହି ଶିଶୁଙ୍କ ଠାରୁ କାହିଁକି ଭଗବାନ ତାଙ୍କର ମାଆକୁ କାଢ଼ି ନେଲେ ? ଏ ଗହନ କଥା ବୁଝିବା ମଣିଷ ପକ୍ଷରେ ସତରେ ଅତିଶୟ କଠିନ । ଏମିତି ସର୍ବଜ୍ଞ ପଣ୍ଡିତ ବା ଦୁନିଆରେ କାହାନ୍ତି ? ଆହା, କି କଅଁଳ ସାନ ପିଲା ଦୁଇଟି ! ଶୁଣ ଜେନି, ଏବେଣି ଯାଇ ସେମାନଙ୍କୁ ଏଠାକୁ ନେଇ ଆସ । ନିଦ ଭାଙ୍ଗିଲେ ସେମାନେ ନିଜର ମଲା ମାଆକୁ ଦେଖି ନିଶ୍ଚୟ ଡରିବେ । ଆମ ପିଲାଙ୍କ ସହିତ ସେମାନେ ବଡ଼ ହେବେ । ଆମ କେତେଟିଙ୍କ ପକ୍ଷରେ ସେମାନେ ହେବେ ଦୁଇଟି ନୂଆ ଭାଇ-ଭଉଣୀ । ଭଗବାନଙ୍କର ଯେତେବେଳେ ଇଚ୍ଛା, ସେତେବେଳେ ଆମକୁ ଏମାନଙ୍କର ଭାର ନେବାକୁ ହେବ— ସେ ନିଜେ ଏଣିକି ବେଶୀ ବେଶୀ ମାଛ ଦେବେ । ଆଉ ମୋ କଥା କହୁଛ ? ଖାଲି ପାଣି ଟୋପାଏ ପିଇବାକୁ ପାଇଲେ ମୁଁ ଢେର୍ ଖୁସି ହେବି । ଏଥର ମୁଁ

ଦୁଇ ଗୁଣ ମେହେନତ କରିବ । ଯାଅ, ତୁମେ ଶୀଘ୍ର ସେମାନଙ୍କୁ ନେଇ ଆସ । ବାଃ, ତୁମର ପୁଣି ଏ କଣ ହେଲା ? ଏଇଥି ପାଇଁ କଣ ତୁମେ ବିରକ୍ତ ହେଲ? ମୋ କଥା ଅନୁସାରେ କାମ କରିବାକୁ ତ ତୁମେ କେବେ ହେଲେ ଦ୍ୱିଧା କର ନାହିଁ, ଆଜି ତୁମର କଣ ହେଲା ?"

ଜେନି ମସାଣ୍ଠା ଠେକ ଦେଇ କହିଲା— "ହେଇ ପରା ସେ ପିଲା ଦୁଇଟି ।"

— ଭିକ୍ଟର ହ୍ୟୁଗୋ

# ଶୈଶବ

ଭୋର ହେଲା କ୍ଷଣି ତାହାର ନିଦ ଭାଙ୍ଗିଗଲା । ସେ ଖିଲି ଖିଲି କରି ହସି ପକାଇଲା । ତା ବାପାଙ୍କ ଉରରେ ସେ ପୁଣି ଚୁପ୍ ହୋଇଗଲା । ସକାଳର ସୂର୍ଯ୍ୟ କିରଣ ଅଙ୍କା ବଙ୍କା ହୋଇ ପଡ଼ିଛି—ଝରକା କାଚରେ । ଦେଖିବାକୁ ଖୁବ୍ ଭଲ ଲାଗେ ।

ଖୁବ୍ ଭୋର ବେଳେ ଥରେ ବାହାରେ କୁକୁର ଓ ବିରାଡ଼ି କଜିଆ ଲାଗିଥିଲେ । ଜନ୍ ବିଛଣାରୁ ଉଠି ପଡ଼ିଲା, ଖାଲି ଗୋଡ଼ରେ ଚାଲିଲା, କିନ୍ତୁ ଦୁଆର ବନ୍ଦ । କିଛି ପରବାଏ ନାହିଁ ! ଟ୍ରଙ୍କ ଉପରେ ଚଢ଼ି ଝିଙ୍କିଟି ଖୋଲିବା କଷ୍ଟ ନୁହେଁ । କିନ୍ତୁ ସବୁ ଭଣ୍ଡୁର ହୋଇ-ଗଲା, ସେ ଟ୍ରଙ୍କରୁ ପଡ଼ି ଯାଇ । ମନେ ପଡ଼େ, ସେଦିନ ଥରେ ତାକୁ ବେତ ମାଡ଼ ଖାଇବାକୁ ହୋଇଥିଲା । ଆଜିକାଲି ପ୍ରାୟ ତାକୁ ମାଡ଼ ଖାଇବାକୁ ପଡ଼େ ।

ବୁଢ଼ା ବାପାଙ୍କ ସହିତ ସେ ଗୀର୍ଜା ଯିବାକୁ ଶିଖିଲା । ସେ ଯାଏ, କିନ୍ତୁ କିଛି ବୁଝି ପାରେ ନାହିଁ । ତାକୁ ଖାଲି ଟିକିଏ ବିରକ୍ତ ଲାଗେ । ଏଠାରେ ସେଠାରେ ଲୋକ ଯିବା ଆସିବା କରନ୍ତି, ସେମାନଙ୍କ କଥା-ବାର୍ତ୍ତା ଓ ଆଖିର ଚାହାଣୀ ଜନ୍ ଆଦୌ କିଛି ବୁଝି ପାରେ ନାହିଁ ।

ଏପରିକି ବୁଢା ବାପାଙ୍କ ମୁହଁ କିଛି କ୍ଷଣ ପାଇଁ ସେ ପାଶୋରି ଦିଏ । ସେମାନଙ୍କର ପ୍ରତିବେଶୀ ବୁଢ଼ୀ ଲୋକାକୁ ବି ଚିହ୍ନି ହୁଏ ନାହିଁ । ସେ ବାହାରକୁ ଅନାଏ, ଉଡ଼ନ୍ତା ଚଢ଼େଇ ଦେଖେ କିମ୍ବା ବେଳ ଚୌକିରେ ଗୋଟେ ଦୁଇଟା କଣା କରିବା ପାଇଁ ଫିକର ପାଞ୍ଚେ, ଆଉ ବୁଢ଼ା ବାପାଙ୍କ ଢିଲା ଜାମାକୁ ଧରି ଟାଣେ ।

ହଠାତ୍ ଏ କଣ ? କାହାର ଶବ୍ଦ ? ଅର୍ଗାନ୍‌ର ଆବାଜ ! ବାଜଣା ତାକୁ ଖୁବ ଭଲ ଲାଗେ । ବୁଝି ନ ହେଉ ପଛକେ, ତଥାପି କେତେ ଭଲ । ସବୁ ବିରକ୍ତି ଧୋଇ ପୋଛି ହୋଇଯାଏ । ଉଡ଼ନ୍ତା ଚଢ଼େଇ ଯେମିତି ଆକାଶ ମଝିରେ ହଠାତ୍ ଡେଣା ମେଲି ଦେଇ ନିଶ୍ଚଳ ହୋଇଯାଏ, ଠିକ୍ ସେହି ଭଳି ନିସ୍ତବ୍ଧ ହୋଇଯାଏ ଜନ୍ । ମୁହୂର୍ତ୍ତିକ ଭିତରେ ତାହାର ମନେ ହୁଏ, ସେ ଖାଲି ସୁଖୀ ନୁହେଁ, ସ୍ୱାଧୀନ ମଧ୍ୟ । ତା ଆଖିକୁ ନିଦ ଆସିଯାଏ ।

ଅଥଚ ତାହାର ବୁଢ଼ା ବାପା କିନ୍ତୁ ତା ଉପରେ ରାଗି ଯାଆନ୍ତି ।

ଘରେ ରହି ବି ତାହାର କେତେ କଣ ମନେ ହୁଏ । ଘରର ଚଟାଣଟା ହୋଇଛି ନଦୀ—ପଡ଼ିଥିବା କାର୍ପେଟ ଖଣ୍ଡିକ ନୌକା । ଯେମିତି ଟଳମଳ ହେଉଛି, ବୁଡ଼ିଯିବ ନା କଣ ? ତା ମାଆକୁ ଦେଖି କହେ –ଆସ୍ତେ ପାରି ହୋଇଯାଅ ମା, ପାଣିରେ ବୁଡ଼ି ଯାଅ ନାହିଁ । ଚଟାଣରେ ଲାଲ ଟାଇଲ ପକା ଯାଇଛି, ସେଟା ପୋଲ, ସେହି ପୋଲ ଉପରେ ଯାଅ, ନ ହେଲେ ବଡ଼ ମୁସ୍କିଲ ହେବ ।

ତା ମାଆ କିଛି ଶୁଣେ ନାହିଁ, ତେଣୁ ଜନ୍ ବିରକ୍ତ ହୁଏ । ବୁଡ଼ି ମରିଗଲେ ତାହାର କେବଳ ମୁଣ୍ଡ ବିଥାଇବ ସିନା, ନୌକା ଆଉ ଜଳର ନୁହେଁ । ଘରଟିକୁ ଗୋଟିଏ ପର୍ବତ ମନେ କରିଯାଇ

ପାରେ । ଲାଲ ଟାଇଲର ରାସ୍ତାଟିକୁ ଉପତ୍ୟକା ବୋଲି ଧରିବାକୁ ହେବ । କୋଟିଏ ହାତୀ ଗଳି ଯାଇପାରେ, ଏତକ ଚୌଡ଼ା ଧରିଯାଉ ।

କେହି ତା କଥା ଶୁଣନ୍ତି ନାହିଁ । ଜନ୍ ବିରକ୍ତ ହୁଏ । ନ ଶୁଣନ୍ତୁ, କିଛି କ୍ଷତି ନାହିଁ । ହଠାତ୍ ତା ନିଜ ହାତ ଆଡ଼େ ତାହାର ନଜର ପଡ଼େ, ହାତର ନଖ ଆଡ଼େ । ଠିକ୍ ବେଶୀ ବୟସୀ ମଣିଷର ଯେପରି ନଖ ହୁଏ । ସେହିପରି ତାହାର ନଖ ହୋଇଛି, ହାତ ଗୋଡ଼ ମୁହଁ ଆଖି ଦାନ୍ତ ବାଳ—ସବୁ ଯେ ତାହାର ହୋଇଛି । ଖୁବ୍ ଆଶ୍ଚର୍ଯ୍ୟ ବୋଧ ହୁଏ । ବିସ୍ମୟରେ ବିସ୍ଫାରିତ ହୋଇଯାଏ ତାହାର ଦୁଇଟି ଆଖି ।

ବାପମାଆଙ୍କୁ ଫାଙ୍କି ଦେଇ ସେ ବର୍ତ୍ତମାନ ଘରୁ ବାହାରକୁ ଯିବାକୁ ଶିଖିଛି । ସହରର ଶେଷ ସୀମାରେ ତାଙ୍କ ଘର । ଏହି ଠାରୁ ଆରମ୍ଭ ହୋଇଛି ପଡ଼ା ଗାଁ । ଯେତେ ଦୂରରୁ ଝରକା ଦେଖାଯାଏ—ଜନ୍ ବାଙ୍କର ଧାରକୁ ଚାଲି ଯାଏ, ଠିଆ ହୋଇ ଚାରି ଆଡ଼କୁ ଅନାଏ ।

ଏହି ଖଣ୍ଡିକ କାଠରେ କ'ଣ ହୋଇପାରେ ? ଗଛର ଶେଷ ଡାଳ ଖଣ୍ଡିକ ରାସ୍ତା କଡରେ କାହିଁକି ପଡ଼ି ରହିଛି ? ଏହା ଉପରେ ତ ଚଢ଼ି ବସି ହେବ । ଠିକ୍ ଘୋଡ଼ାରେ ଚଢ଼ିବା ଭଳି । ଜନ୍ ବି ଚଢ଼ି ବସେ । କିନ୍ତୁ ସେହି ଘୋଡ଼ା ଉପରୁ ମଝିରେ ମଝିରେ ଖସି ପଡ଼ିବାକୁ ହୁଏ । ଧୂଳି କାଦୁଅରେ ହାତ ଗୋଡ଼ ତାହାର ମଇଳା ହୋଇ ଯାଏ । ଗୋଟିଏ ଲଠି ପାଇଲେ ଜନ୍ ନିଜକୁ ଅର୍କେଷ୍ଟ୍ରା ବାଦକ ବୋଲି ମନେ କରେ । ଗଳା ଫଟାଇ ଗୀତ ଗାଏ,

ସବୁଜ ବଣ ଜଙ୍ଗଲକୁ ନମସ୍କାର କରେ । ଲଠିଟା ତାହାର ଯାଦୁ ଦଣ୍ଡ । ଯେମିତି ସେ ଯାଦୁ ଜାଣେ । ଆକାଶ ଆଡ଼କୁ ଅନାଇ ସେ ମେଘକୁ ଆଦେଶ ଦିଏ । କିନ୍ତୁ ଏତେ ବଡ଼ ପାଜି ମେଘମାନେ ଯେ ତା କଥା ଶୁଣନ୍ତି ନାହିଁ । ସେ କହେ—ତୁ ଡାହାଣ ଦିଗକୁ ଯାଅ, ମେଘ । କିନ୍ତୁ ମେଘମାନେ ବାମ ଦିଗକୁ ଚାଲି ଯାଆନ୍ତି । ଏଥିରେ ତାହାର ରାଗ ହେବ ନାହିଁ ? ଖାଲି ରାଗ ନୁହେଁ, ଦୁଃଖ ବି ହୁଏ । ତା ପରେ ତତ୍‌କ୍ଷଣାତ୍ ପୁଣି କଡ଼ା ଧମକ ଦେଇ ସେ ମେଘକୁ ବାମ ଦିଗକୁ ଯିବାକୁ କହେ । ଏଥର କିନ୍ତୁ ସେମାନେ ତା କଥା ଶୁଣନ୍ତି । ଶୁଣିବାକୁ ହେବ, ତା ହାତରେ ଯାଦୁ ଦଣ୍ଡ, ସେ ତ ଆଉ ଯେମିତି ସେମିତି ଲୋକ ନୁହେଁ । ଗୋଟାଏ କାଙ୍କି ଧରି ତାକୁ ଗୋଟାଏ ଠେକୁଆରେ ପରିଣତ କରିବାକୁ ଚେଷ୍ଟା କରି ପାରି ନାହିଁ ବୋଲି କ'ଣ ସେ ଯେମିତି ସେମିତି ଲୋକ ? କାହାଣୀରେ ଯାଦୁକରମାନେ କେତେ ଫୁଲକୁ ତ ସୁନା ରଥ କରି ଦେଇଛନ୍ତି, ସେ କଣ ଆଉ ପାରିବ ନାହିଁ ?

ଏହି ସବୁ ଖେଳ ମଝିରେ ବି ଏକ ସ୍ୱପ୍ନମୟ ଅନୁଭୂତି ତାକୁ ଚେତନାର ଜଗତ ଠାରୁ ବିଚ୍ଛିନ୍ନ କରି ଦିଏ । ସେ ସବୁ କିଛି ପାଶୋରି ପକାଏ—ମାଆ, ବାପା, ବୁଢ଼ା ବାପା, ଘର ଦ୍ୱାର ପଢ଼େ ଯାହା କିଛି ଦେଖିଛି ସବୁ । କିନ୍ତୁ ସେହି ବିସ୍ମୃତି ସାମୟିକ ।

ସନ୍ଧ୍ୟା ବେଳେ ବୁଢ଼ା ବାପାଙ୍କ ସାଙ୍ଗରେ ସେ ପ୍ରାୟ ବୁଲି ଯାଏ । ଚାଷ ଜମି ଆଉ କ୍ଷେତ ଖମାର ପାଖ ଦେଇ ସେ ଯାଏ । ଫସଲର ଗନ୍ଧ ଆସି ଜନର ନାକରେ ବାଜେ । ପଡ଼ିଆରେ ଅଜସ୍ର କାଙ୍କି ଉଡ଼ନ୍ତି ଆଉ ଅନେକ ଗୋରୁ ଚରନ୍ତି ।

ବୁଢା ବାପା କଥା କହନ୍ତି, ମାତ୍ର କଥାର କାହାଣୀ । ହୁଏ ତ ସେ ଢୁଲାଇ ପଡନ୍ତି, ଦେବଦାରୁ ଗଛର ପତ୍ର ଛୁଡ଼ାଇ ଜନ୍ କେତେ ବେଳେ ବୁଢା ବାପାଙ୍କ ମୁହଁ ଉପରକୁ ଫୋପାଡ଼ି ଦିଏ । ଉଠି ପଡ଼ି ବୁଢ଼ା ବାପା ବୁଝି ପାରନ୍ତି ଯେ ସ୍ୱାଭାବିକ ଭାବରେ ଝଡ଼ିଲା ପତ୍ର ଉଡ଼ି ଆସିଛି, କେବେ କେବେ ବି ପୁଣି ଜନ୍‌ର ଦୁଷ୍ଟାମୀ ଧରି ପକାଇଛନ୍ତି ।

ଫେରିବା ବେଳେ କେତେ ବେଳେ ବି ଘୋଡ଼ାଗାଡ଼ି ପାଇ ଯାଆନ୍ତି । ବେକରେ ଘଣ୍ଟା ବନ୍ଧା ଥିବା ଘୋଡ଼ା—ଭଲ ଦୌଡ଼େ । ଠୁଂ ଠୁଂ ଆବାଜ ହୁଏ । ଘୋଡ଼ାର ଛାଇ ଦେଖିବାକୁ ବି ମନ୍ଦ ଲାଗେ ନାହିଁ । ଘୋଡ଼ା ସଙ୍ଗରେ ପାଖା ପାଖି ଛାଇ ବି ଊର୍ଦ୍ଧ୍ୱଶ୍ୱାସରେ ଦୌଡ଼ୁଛି । ଆଚ୍ଛା, ସେ ଗୁଡ଼ାକ କଣ ? ଛାଇ ନା, କୌଣସି ପ୍ରକାର ପ୍ରାଣୀ ? ଜନ୍‌କୁ ଭୟ ଲାଗେ ।

ଜନ୍‌ର ବାପା ଚମତ୍କାର ମଣିଷ, ହିସାବରେ ଖୁବ୍ ଖରାପ ନୁହନ୍ତି । ମେଲକମ୍ବାର ନିଜେ ଏହିପରି ଅନ୍ତତଃ ଭାବି ଥାଆନ୍ତି । ବାପ, ପୁଅ, ସ୍ତ୍ରୀ—ଏମାନଙ୍କ ପ୍ରତି ଶ୍ରଦ୍ଧା ବା ମମତା ଅଛି—କିନ୍ତୁ ସେ କ'ଣ କରି ପାରନ୍ତି ? ନିଜର ଅର୍ଜିତ ଧନ ଅପବ୍ୟୟରେ ଯାଏ ବୋଲି ସେମାନଙ୍କର ସଂସାର ଦୁର୍ଦ୍ଦଶାର ଚରମ ସୀମାରେ ଆସି ପହଞ୍ଚିଛି—ଜନ୍ ତାହା ବୁଝି ବି ବୁଝି ପାରେ ନାହିଁ ।

ସଂସାରରେ ସେ ଏକମାତ୍ର ପିଲା ନୁହେଁ ; ତାହାର ଆରନେଷ୍ଟ ଓ ରୁଡଲ୍‌ଫ ନାମରେ ଆହୁରି ଦୁଇଟି ଭାଇ ଅଛନ୍ତି । ସୁତରାଂ ତା ଭାଗ୍ୟରେ ଆଦର ଯତ୍ନ କିଛି ଜୁଟି ନାହିଁ ।

ମଝିରେ ମଝିରେ ଲୁଇସା ବି ଟଙ୍କା ରୋଜଗାର ପାଇଁ କୌଣସି ରାନ୍ଧୁଣୀ କାମ କରେ । ଏହିପରି ଗୋଟାଏ ଘରେ ସେ ଯେଉଁ ନିର୍ଯାତନା ସହିଥିଲା — ତାହା ଜନ୍‌ର ଆଜି ବି ସ୍ପଷ୍ଟ ମନେ ଅଛି ।

ଘଟଣା ସାମାନ୍ୟ । ସେହି ଘରୁ ପୁରୁଣା ଜାମା ପେଣ୍ଟ ନେଇ ଆସିଥିଲା ଲୁଇସା ଜନ୍ ପାଇଁ । ଜନ୍ ତାକୁ ପିନ୍ଧି ମଜାଆକୁ ଖେଳ ଯିବାରୁ ହିଁ ସବୁ ବିପଦ ଆସି ପଡ଼ିଥିଲା । ସେହି ଘରର ପୁଅ ଝିଅଙ୍କର ପୁରୁଣା ଜାମା ପେଣ୍ଟ । ସେମାନେ ଜନ୍ ପ୍ରତି କରୁଣା ଦେଖାଇ ସେହି ଜାମା ପେଣ୍ଟ କଥା ପକାଇଲେ । ଖାଲି ସେତିକି ନୁହେଁ, ସେମାନେ ଦି ଭାଇ ଭଉଣୀ ଧକ୍କା ମାରି ତାକୁ ଭୂଇଁରେ ପକାଇ ଦେଲେ । ନିଜକୁ ରକ୍ଷା କରିବା ପାଇଁ ସେ ଟିକିଏ ମାତ୍ର ଚେଷ୍ଟା କରିବାରୁ, ସବୁ ଗୋଳମାଳ ଉପୁଜିଲା । ଘର ସାରା ପାଟି-ଗୋଳ ଖେଳେଇ ଗଲା । ଗୃହିଣୀର ପୁଅ ତାଙ୍କ ପୁଅ ଝିଅଙ୍କୁ ଆଘାତ କରିଛି । ଜନ୍ ପଳାଇଲା ନାହିଁ । ସେ ତ କୌଣସି ଅନ୍ୟାୟ କରି ନାହିଁ । ଅଥଚ କି ନିର୍ଯ୍ୟାତନ ସେହି ଦିନ ତା ଉପରେ ହୋଇ ନ ଥିଲା ! କେବଳ ସେ ନୁହେଁ, ତାହାର ମାଆ ବି ଅପ-ମାନିତା ହୋଇଥିଲା । ଲୁଇସା କହିଲା—"କ୍ଷମା ମାଗ, ଜନ୍ ।"

ଜନ୍ ଆଶ୍ଚର୍ଯ୍ୟ ହୋଇଥିଲା,—କେଉଁଥି ପାଇଁ କ୍ଷମା ? ଅନ୍ୟାୟ ବିରୁଦ୍ଧରେ ସେ ପ୍ରତିବାଦ କରିଛି । ପୁଣି କ୍ଷମା ଭିକ୍ଷା କାଣ ? କାହିଁକି ? ଧଇଁ ସଇଁ ହୋଇ ସେ ଘରକୁ ଆସିଲା । ଆସି ନିଭୃତ ଜାଗା ସିଡ଼ିର ଝରକା କଣରେ ନ ପହଞ୍ଚୁଣୁ ତାହାର ଦି ଆଖିରୁ ଝର ଝର ହୋଇ ଲୁହ ଗଡ଼ି ପଡ଼ିଲା । ଅଥଚ କାହିଁକି ଯେ ସେ କାନ୍ଦୁଛି—ତାର କୌଣସି କୈଫିୟତ ଜନ୍ର ମନେ ନାହିଁ, କିନ୍ତୁ ତଥାପି ତାକୁ କାନ୍ଦିବାକୁ ପଡ଼ିଲା ।

ଛୋଟ ଛୋଟ ଏହି ସବୁ ଘଟଣା ଜନ୍ ବିଷ୍ଟଫରର ମନରେ କି ଗଭୀର ଦାଗ ରଖିଯାଏ !

ସନ୍ଧ୍ୟା ସାତଟା ବେଳେ ଦିନେ ସେ ଦେଖିଲା, ତାହାର ବାପା ଟଳି ଟଳି ଆସିଲେ, ଆଉ ଘରେ ବେହୋସ ହୋଇ ପଡ଼ିଗଲେ । ଉପରେ ଜନ୍‌ର ଦୁଇ ଚକ୍ଷୁ ବିସ୍ଫାରିତ ହୋଇଗଲା ।

ଜନ୍ ଡାକିଲା—"ବାପା, ବାପା କଣ ହୋଇଛି ଆପଣଙ୍କର ?"

ଉପ୍ଲୁ ଚକ୍ଷୁରେ ମେଲକପ୍ଲାର ଅନାଇଲେ—କି ସାଙ୍ଘାତିକ ହୋଇଛି ଆଖି ଦୁଇଟା, ଲାଲ ଗୁଲାଲ । ଲୁଇସା ଆସି ସେଠାରୁ ଜନ୍‌କୁ ବାହାର କଲା ।

କିଛି ଦିନ ପରେ ଜନ୍‌ର ସ୍କୁଲକୁ ଯିବାକୁ ଇଚ୍ଛା ହେଲାନାହିଁ । ଶିକ୍ଷକ ବୋଧ ହୁଏ ଖୁବ୍ ମାଡ଼ ଦିଅନ୍ତି । କଡ଼ କାଠରେ ନିତି ମାଡ଼ ଜମା ହୋଇଥାନ୍ତି । ଜନ୍ ଊର୍ଦ୍ଧ୍ୱ ଦୃଷ୍ଟିରେ ଅନାଇ ତାହା ଦେଖେ, କିନ୍ତୁ ଶିକ୍ଷକଙ୍କର ତାହା ସହ୍ୟ ହୁଏ ନାହିଁ । ଜନ୍ ନିର୍ଦ୍ଦୋଷ ମଣିଷ, ନିରହଙ୍କାର, ସବୁ ବେଳେ ହସ ହସ ମୁଖ । ସୁତରାଂ ଜନ୍ ପ୍ରତି ରାଗିବାର ଅନେକ କାରଣ ଥିଲା ଶିକ୍ଷକଙ୍କର । ଦିନେ ଖୁବ୍ ଭଲ କରି ସେ ତାକୁ ମାଡ଼ ଦେଲେ ।

ଜନ୍ କୌଣସି ପ୍ରତିବାଦ ନ କରି ଛୁଟି ପରେ ଘରକୁ ଚାଲି ଆସିଲା । ମନ ଭିତରେ ସେ ପ୍ରତିଜ୍ଞା କରି ପକାଇଲା ଯେ, ସେ ଆଉ ସ୍କୁଲକୁ ଯିବ ନାହିଁ । ଏ କ୍ଷେତ୍ରରେ ବି ସେଠା ଅନ୍ୟାୟ । ବାପ ମାଆ ତାକୁ ସ୍କୁଲକୁ ପଠାଇବା ପାଇଁ ଚେଷ୍ଟା କଲେ । ଜନ୍ ନିଜର ତୀବ୍ର ପ୍ରତିବାଦ ଜଣାଇଲା—"ମୁଁ ଯିବି ନାହିଁ ।" କାରଣ ପଚାରନ୍ତେ, ସେ ଚୁପ୍ ରହିଲା । ମେଲକପ୍ଲାର ଏଥିରେ ଖୁବ୍ ରାଗି ଗଲେ ! ତାକୁ ମାଡ଼ ଦେଇ ଟାଣି ଟାଣି ସ୍କୁଲକୁ ନେଇ ଶିକ୍ଷକଙ୍କ ହାତରେ ସେ ତାକୁ ଦେଇ ଆସିଲେ । ଏଥର ଆହୁରି ବେଶୀ ନିର୍ଯ୍ୟାତନ ଜନ୍

ନିଜ ସ୍ଥାନରେ ବସି ଦୁଆରେ ଭାଙ୍ଗି ଦେଲା, ବାହା ଛିଡ଼ାଇ ପକାଇଲା । ତାପରେ ଗୋଟିଏ ଅନ୍ଧକାର କୋଠରୀରେ ଶିକ୍ଷକ ଜନ୍‌କୁ ଅଟକାଇ ରଖିଲେ । ସେଠାରେ ବସି ଜନ୍ ରୁମାଲରେ ନିଜର ବେକରେ ଫାଶ ପକାଇବାକୁ ଲାଗିଲା । ଦୁଇ ହାତରେ ଦୁଇ ପାଖରୁ ଟାଣିଲେ ଦମ ବନ୍ଦ ହୋଇପାରେ । ସେ ଆତ୍ମହତ୍ୟା କରିବାକୁ ଚାହେଁ ।

ଅତି ସୌଭାଗ୍ୟର କଥା ଯେ, ତତ୍‌କ୍ଷଣାତ୍ ଶିକ୍ଷକ ତାକୁ ଛାଡ଼ି ଦେଲେ ।

ଜନ୍‌ର ଶରୀର ଦୁର୍ବଳ ନୁହେଁ, ଅଥଚ ମଝିରେ ମଝିରେ କୌଣସି ପ୍ରକାର ଭୟ ଆସି ତାକୁ କାବୁ କରିଦିଏ । ନିର୍ଜନ ଅନ୍ଧକାର ଘରକୁ ଗଲା ମାତ୍ରେ ତାହାର ଦେହ ଝିମି ଝିମି ହୁଏ । ଭୂତ ପ୍ରେତ ପରି କୌଣସି ଦାନବ ଯେମିତି ଜାଲ ପାତି ଜନ୍‌ର ପ୍ରତୀକ୍ଷାରେ ବସିଥାଏ ।

ଯେତେବେଳେ ରାତି ହୁଏ, କଳା କଟିମିଟି ରାତି ତାକୁ ଖାଇବ ଭଳି ଲାଗେ । ବୁଢ଼ା ବାପାଙ୍କ ଘର ଠାରୁ ଯେଉଁଠୁ ସହର ଆରମ୍ଭ ହୋଇଛି, ସେଠାକୁ ଏକା ଯିବାକୁ ପଡ଼ିଲେ ବି ଏହା ଭୟଙ୍କର । ସବୁ ଠାରୁ ବେଶି ମାରାତ୍ମକ ହୋଇଯାଏ । ସନ୍ଧ୍ୟା ବେଳେ ରାସ୍ତାଟା ନିର୍ଜନ ହୋଇଯାଏ । ଚାରିଆଡ଼ ଖାଁ ଖାଁ ହୋଇଯାଏ । ଦୂରର ଗଛ ଗୁଡ଼ିକ ଯେମିତି ଭୂତ ରାଜ୍ୟର ଲୋକ ଭଳି ମନେ ହୁଏ । ଯେପରି ଜନ୍‌କୁ ଧରିବା ଲାଗି ସେମାନେ ଚୁପ୍ ଚାପ ଠିଆ ହୋଇଛନ୍ତି ।

କୌଣସି ଘରେ ଏକା ରହିବାକୁ ଜନ୍‌ର ଆଉ ସାହସ ହୁଏ ନାହିଁ । ସଦା ବେଳେ ସବୁ ରକମ କାମ ଭିତରେ ସେ କୌଣସି ଏକ ଅଦୃଶ୍ୟ ଭୟର ଗନ୍ଧ ପାଇବାକୁ ଲାଗିଲା । ହୁଏତ ସେ ଏକା

ବସି ବସି ପଡ଼ୁଛନ୍ତି, ତାହାର ମନେ ହେଲା ଯେମିତି ଅଦୃଶ୍ୟ ଭାବରେ ତା ଘର ପଟେ ଘୂରିଗଲା । ରାତିରେ ତାହାର ଭୟ ସବୁ ଦିନରୁ ବେଶୀ ବଢ଼େ ।

କିନ୍ତୁ ଏହି ଭୟ ବେଶୀ ଦିନ ତିଷ୍ଠିଲା ନାହିଁ । ସବୁ ଜିନିଷଙ୍କ ନଶ୍ୱରତା ଭୟ ଯାଇ ଠିଆ ହେଲା ଏକ ଅଜଣା ଆଶଙ୍କାରେ । ଏହି ପୃଥିବୀରୁ ବିଲୋପ ହେବାର, ଶେଷ ହୋଇ ଯିବାର ଭୟ ସାଙ୍ଗରେ ଯାଇ ଜନ୍ମର ସବୁ ଭୟ ମିଶିଗଲା । ମୃତ୍ୟୁ, କି ବସ୍ତୁ ଏହି ମୃତ୍ୟୁ ?

ଦିନେ ଘରେ ଖେଳୁ ଖେଳୁ ଆଲମାରୀ ଭିତରେ ସେ ଦେଖି-ବାକୁ ପାଇଲା ଗୋଟିଏ ଛୋଟ ପିଲାର ପୁରୁଣା ଓ ଛିଣ୍ଡା ହୋଇଆ ଫ୍ରକ୍ ଖଣ୍ଡିଏ । ଲୁଇସା କହିଲା—"ଏ ସବୁରେ ହାତ ଦେବୁ ନାହିଁ । ତୋ ଆଗରୁ ତୋର ଯେଉଁ ଭାଇ ଆସିଥିଲା, ଏସବୁ ତାର ।"

"ସେ କେଉଁଠି ମା ?"

"ସେ କେଉଁଠି କଣରେ ? ସେ ଆମକୁ ଛାଡି ଚାଲି ଯାଇଛି, ମରି ଯାଇଛି ।" ଲୁଇସାର ଗଳା ଭାରି ଗଲା ।

ମରି ଯାଇଛି ! ମରି ଯିବାଟା କଣ ? କାହିଁ କେହି ତ ତା ପାଇଁ ହାଇଁ ପାଇଁ ହେଉ ନାହିଁ ! ତା ହେଲେ ମରିଗଲେ କେହି ମନେ ରଖନ୍ତି ନାହିଁ ! ସେ ମରିଗଲେ ବି ତ କେହି ତାକୁ ମନେ ରଖିବେ ନାହିଁ ? ଏପରିକି ତାହାର ମା'ଆ ବି ଭୁଲି ଯିବ ! ତା ହେଲେ ସେ ନିଜର ମୃତ୍ୟୁ ପାଇଁ ଆଗରୁ ଆଚ୍ଛା କରି ଥୋଡ଼ାଏ କାନ୍ଦି ପକାଉ । ତାହାର ମୃତ୍ୟୁ ପରେ ଯଦି କେହି ନ କାନ୍ଦନ୍ତି, ନ କାନ୍ଦନ୍ତୁ, କିନ୍ତୁ ସେ ତ ଏବେଠୁଁ ନିଜେ କିଛି କାନ୍ଦି ପାରିବ !

ଏହା ପରେ ଜନ୍‌ର ଜଣେ ସାଙ୍ଗ ମରିଗଲା । ମୃତ୍ୟୁର ଛବି ଯେମିତି ତା ପକ୍ଷରେ କେତେକ ପରିମାଣରେ ସ୍ପଷ୍ଟ ହୋଇ ପଡ଼ିଲା । ମୃତ୍ୟୁ କି ସାଙ୍ଘାତିକ, ଭାବିବାକୁ ଗଲା ମାତ୍ରେ ଜନ୍ ଯେମିତି କାତର ହୋଇପଡ଼େ ।

ବୁଢ଼ା ବାପାଙ୍କ ଠାରୁ ଜନ୍ ଗୋଟିଏ ପୁରୁଣା ଦରଭଙ୍ଗା ପିଆନୋ ପାଇଥିଲା । ଏକା ନିର୍ଜନ ଘରେ ଟୁଲ୍ ଉପରେ ବସି ସେ ସେଇଟା ଟୁଂ ଟାଂ କରି ବଜାଏ— ବାଜଣା କେତେବେଳେ ବେତାଳ ବା କେତେବେଳେ ତାଳରେ । ଜନ୍‌କୁ ଖରାପ ଲାଗେ ନାହିଁ । ତା ମନ ଭିତରେ ଏକ ନୂତନ ଦ୍ୟୋତନା ଆସି ଧକ୍‌କା ଦିଏ । ଜନ୍ ପିଆନୋର ସ୍ୱରକୁ ଖୁବ୍ ଭଲ ପାଏ । ସ୍ୱର ଗୁଡ଼ିକ ତାହାର ବନ୍ଧୁ, ତାହାର ସୁଖ ଦୁଃଖର— ସବୁ ପ୍ରକାର ସହାନୁଭୂତିର ବନ୍ଧୁ ସେମାନେ ।

ହଠାତ୍ ମେଲକୟୁର ଅବିଷ୍କାର କଲେ, ଜନ୍ ପିଆନୋ ବଜାଏ । ବାଦକ ବଂଶର ପୁଅ, ତେଣୁ ତାକୁ ବାଜଣା ଶିଖାଇବା ଦରକାର ଭାବି ମେଲକୟୁର ଶିକ୍ଷକତା ଆରମ୍ଭ କଲେ । କିନ୍ତୁ ମେଲକୟୁରଙ୍କର ଶିକ୍ଷକତାରେ ଧୈର୍ଯ୍ୟ ନାହିଁ, ସେ ପୁଅଟିକୁ ଖୁବ ବାଡ଼େଇବାକୁ ଲାଗିଲେ । ପିଠିରେ ବସିଲା ବିଧା, ଗାଲରେ ଚାପୁଡ଼ା ଉପରେ ଚାପୁଡ଼ା । ମୁହଁ ତଳକୁ କରି ଜନ୍ ଖୁବ୍ ଧକେଇଲା । ଶେଷରେ ସେ କହିଦେଲା—"ମୁଁ ଆଉ ଶିଖିବି ନାହିଁ, ବାପା !"

"କଣ ?" ମେଲକୟୁର ଧମକାଇଲେ ।

"ମୁଁ ଆଉ ଶିଖିବାକୁ ଚାହେଁ ନା, ଏତେ ମାଡ଼ ଖାଇ ପାରିବି ନାହିଁ ମୁଁ ।"

"କଣ, ମାଡ଼ ଖାଇ ପାରିବୁ ନାହିଁ ! ମାଡ଼ରେ କଣ ହେଉଛୁ ଏକ୍ଷଣି । ଏଆଡ଼େ ଆ ।" ମେଲକୟୁର ଜନ୍‌କୁ ଧରି ନେଇ

ଆସିଲେ । ପ୍ରଚଣ୍ଡ ମାଡ଼ ଆରମ୍ଭ ହେଲା । ତା ପରେ କିଛି ଖାଇବାକୁ ନ ଦେବା ପାଇଁ ହୁକୁମ ଜାରି କରି ସେ ଜନ୍‌କୁ ଗୋଟିଏ ଅନ୍ଧାରି କୋଠରି ଭିତରେ ଅଟକାଇ ରଖିଲେ ।

ଜନ୍‌ର କାନ୍ଦଣା ଶୁଖି ଯାଇଛି । ସମସ୍ତ ଚେତନାରେ କି ଭଳି ଗୋଟାଏ ଜ୍ୱାଳା ଅନୁଭୂତ ହେଉଥିଲା । ଜନ୍ ଭାବିବାକୁ ଲାଗିଲା—ତାହାର ବାପା ପଶୁ, ଏପରି ଏକ ପ୍ରକୃତ ପଶୁ ସେ ଆଉ କେଉଁଠି ଦେଖି ନାହିଁ । ସେ ତାଙ୍କୁ ଘୃଣା କରେ—ଦୁଷ୍ଟ, ପଶୁ, ଦୁର୍ବୃତ୍ତ, ନୃଶଂସ—ମରୁ ନାହିଁ !

ହଠାତ୍ ତାହାର ମନେ ହେଲା ଯେ ସେ ଅନ୍ଧକାର କୋଠ-ରିରେ ଏକା ରହିଛି । ଆକସ୍ମିକ ଭୟ ଆସି ଉପସ୍ଥିତ ହେଲା, ସହସା ସେ ଚଟାଣ ଉପରେ ପଡ଼ିଗଲା । ବାହାରୁ ବାପ ମା ଶବ୍ଦ ଶୁଣି ଦୌଡ଼ି ଆସିଲେ । ଲୁଇସ କାନ୍ଦିବାକୁ ଲାଗିଲା, ନିଜର ସ୍ୱାମୀଙ୍କୁ ତିରସ୍କାର କରିବାକୁ ଲାଗିଲା । ମେଲକମ୍ବାର ବି ଦୁଃଖିତ ହେଲେ ! ପୁଅ ଅଜ୍ଞାନ ହୋଇଗଲା ନା କଣ ?

କିନ୍ତୁ ସେ ସବୁ କିଛି ନୁହେଁ । ଜନ୍ ଖାଲି ପଡ଼ି ରହିଛି । ସେ ନିଜର ଭାଗ୍ୟକୁ ବିଶ୍ଳେଷଣ କରିବାକୁ ଲାଗିଲା । ଉପରୁ ନଦୀ ଭିତରକୁ ନିଜ ଦେହଟା ଫୋପାଡ଼ି ଦେଇ ପାରିଲେ—ତା ହେଲେ ଜବ୍‌ଦ କରି ହୁଅନ୍ତା; କିନ୍ତୁ ସେ ତାହା କଲା ନାହିଁ । ବାପା ତାକୁ ବନ୍ଦୀ ଅବସ୍ଥାରେ ରଖି ଯାଇଛନ୍ତି । ବାହାରୁ ଘର ବନ୍ଦ । କିଛି କରିବାର ନାହିଁ—ଖାଲି କାନ୍ଦିବା ଛଡ଼ା । ଗୋଟାଏ ମାଙ୍କଡ଼ସା ବୁଲି ବୁଲି ଜାଲ ବୁଣୁଛି—ସେ ତାହା ଦେଖିବାକୁ ଲାଗିଲା ।

ତଳେ ସାଇନ ନଦୀ, ତାଙ୍କ ଘରକୁ ଲାଗି ବହି ଯାଉଛି । ଉପରେ କଳା ଆକାଶ, ସେଠାରେ କେତେ ଶହ ତାରା ଝଟକୁଛନ୍ତି ।

ନଦୀ ତାଳେ ତାଳେ କଥା କହେ, ଦୌଡ଼ିଯାଏ । ଛୋଟ ପିଲାଙ୍କ ନିକଟରେ ନଦୀ ବି ଯେମିତି ଏକ ଜୀବନ୍ତ ପ୍ରାଣୀ— ସବୁ ପ୍ରକାର ପ୍ରାଣୀଙ୍କ ଠାରୁ ଶକ୍ତିଶାଳୀ, ସୁନ୍ଦର, ସ୍ୱଚ୍ଛ । ଆଚ୍ଛା, ନଦୀ କେଉଁଠାକୁ ଯାଏ, କିଏ ଜାଣେ ? ସେ ଖୁବ୍ ସ୍ୱାଧୀନ ଭାବରେ ଯାଏ ତ । କେହି କଣ ତାକୁ ବାଧା ଦେଇ ପାରନ୍ତି ନାହିଁ ? ଦିନ ନାହିଁ, ରାତି ନାହିଁ, କି ଖରା, କି ବର୍ଷା—ନିଜର ସୁଖ ଦୁଃଖ ଯାହା ଥାଉନା କାହିଁକି, ନଦୀ ବହି ଚାଲିଛି ତ ଚାଲିଛି । ଜନ୍ ଯଦି ଏପରି ଭାବରେ ଚାଲି ପାରନ୍ତା, ନିଜ ଇଚ୍ଛାରେ, ଅବାଧ ଗତିରେ କୌଣସି ବାଧା ବନ୍ଧ ନ ମାନି,—କି ମଜା ନ ହୁଅନ୍ତା । ଘନ ଅରଣ୍ୟର ସବୁଜ ସୀମା ଛାଡ଼ି ହଳଦିଆ କ୍ଷେତର ବିସ୍ତୃତ ଆଲୋକ ଡେଇଁ, ଧୂସର ପାହାଡ଼ ଟପି —ଜୀବନର ସମସ୍ତ କ୍ଷେତ୍ରରେ ଯଦି ସ୍ୱାଧୀନ ଭାବରେ ଜନ୍ ଆଗେଇ ଯାଇପାରନ୍ତା—ଯଦି ସ୍ୱାଧୀନ ଭାବରେ ବଞ୍ଚି ପାରେ, ଯଦି ସେ ସ୍ୱାଧୀନ ହୋଇପାରେ—ଯଦି ମଣିଷ ହୋଇପାରେ —

ପୁଣି ଲୋପ ହୋଇଯାଏ ଏହିସବୁ ଚେତନା । ଚାରି ଦିଗର ସବୁ କିଛି ଛାୟା ଭଳି ମନେ ହୁଏ—ନଦୀ, ବନ, ସହର, ଘରଦ୍ୱାର—ସବୁ ; ଧୂସରତାରେ ଯେମିତି ବୁଡ଼ି ଯାଏ । କାହାର ଛବି ତା ଆଖି ଆଗରେ ଭାସିଯାଏ, ଯେମିତି ଗୋଟିଏ ଛୋଟ ଗୁଲୁଗୁଲିଆ ଝିଅ ତାକୁ ଡାକୁଛି । ତାହାର ସୁନେଲି କେଶ ସକାଳୁଆ କଅଁଳ କିରଣରେ ଜଳୁଛି, ମିଠା ପବନରେ ଉଡ଼ୁଛି, ଓଠରେ ହସ । ତତ୍‌କ୍ଷଣାତ୍ ଜନ୍ କ୍ରିଷ୍ଟଫରକୁ ଭାରି ଭଲ ଲାଗେ ତାହା । ପୁଣି ସହସା ଦେଖା ଯାଏ, ବିଷଣ୍ଣ ବଦନରେ ପିଲାଟିଏ ଠିଆ ହୋଇଛି; ଗରିବର ପିଲା ବୋଧ ହୁଏ, ଛିଣ୍ଡା ପୋଷାକରେ, ବେଦନାରେ ମୁହଁଟି କଳା—ତା ଆଡ଼କୁ କରୁଣ ଦୃଷ୍ଟିରେ କାହିଁକି ଚାହିଁ ରହିଛି ?

ପୁଣି ସବୁ ଲିଭି ଯାଏ । କେବଳ ଶୂନ୍ୟ, ଧୂସର, ଫାଙ୍କା ଫାଙ୍କା । ଗୋଟାଏ ଦୁଃଖର ଭାବ ମନ ଭିତରେ ଜମି ରହିଥାଏ । ଫେର୍ ମନେ ପଡ଼ିଯାଏ ନଦୀ; ଦୌଡ଼ୁଛି ସମୁଦ୍ର ଆଡ଼କୁ, ସୂର୍ଯ୍ୟଙ୍କ ଆଡ଼କୁ । ସମୁଦ୍ର ନଦୀକୁ ମିଶାଇ ଦିଏ ନିଜ ଭିତରେ, ସୂର୍ଯ୍ୟ ଗରମ କରେ ନଦୀକୁ । ସଙ୍ଗୀତର ଶବ୍ଦ ଭାସି ଆସେ—କି ସୁନ୍ଦର ଛନ୍ଦ, ପିଆନୋର ମିଠା ଆବାଜ ! ସ୍ୱୋଆଲୋ ପକ୍ଷୀ ଭଳି ଉଡ଼ିବାକୁ ଚାହେଁ ଜନ୍‌ର ମନ, ଗୁରୁ ଆଡ଼େ ଏତେ ଆନନ୍ଦ, ଏତେ ଗୀତ, ଏତେ ହସ ଖୁସି—ଉଡ଼ିଯାଉ ଜନ୍ ।

— ରମ୍ୟାଁ ରୋଲାଁ ।

# ଲକ୍ଷ୍ମୀ ନାରାୟଣ ମହାନ୍ତିଙ୍କ ପ୍ରକାଶିତ ରଚନାବଳୀ

## ଉପନ୍ୟାସ

- ପିଶାଚ
- ହାତକଡ଼ି
- ମାୟାମୃଗ
- ଚକ୍ରବ୍ୟୂହ
- ହରଗୌରୀ
- ପ୍ରଥମ ପ୍ରେମ

## ଗଳ୍ପଗୁଚ୍ଛ

- ନୈବେଦ୍ୟ
- ଉଡ଼ନ୍ତା ବୋମା
- ଓଢ଼ଣା ଖୋଲ
- ଗୋଟିଏ ସନ୍ଧ୍ୟା
- ମଳୟ ବହିଲଣି
- ଅନ୍ଧ ଦେଶକୁ ଗଲି
- ଦେହ ନୀଳମ ହେଉଛି

## ଅନୁବାଦ

- ଅଙ୍କୁର
- ସଙ୍ଗମ
- ବନ୍ଧଘର
- ନଗ୍ନ ସତ୍ୟ
- କାଳାନ୍ତକ
- ଅଙ୍ଗୀକାର
- ବାତାୟନ
- ବନଗୃହ
- ମା ଓ ପୁଅ
- ଆନା କାରେନିନା
- ବନ୍ଦୀ ସ୍ମୃତ ଗୁରୁଦେବ
- ଅପଶଚତାର ପତ୍ର
- ବିଦେଶ ବିଦେଶର କାହାଣୀ
- ଦୁଇଟି ନଗରୀର କାହାଣୀ
- ଆମେରିକାର ଶ୍ରେଷ୍ଠ ଗଳ୍ପ
- ଇଂଲଣ୍ଡର ଶ୍ରେଷ୍ଠ ଗଳ୍ପ
- ସୋଭିଏତର ଶ୍ରେଷ୍ଠ ଗଳ୍ପ
- ବିବେକାନନ୍ଦ : ଜୀବନ ଓ ବାଣୀ

"ନଆଁଖୁଣ୍ଟା" କଥା –

"କିଛି ଦିନ ତଳେ ଓଡ଼ିଶାର ଜଣେ ବିଶିଷ୍ଟ ପ୍ରକାଶକ କଥା ପ୍ରସଙ୍ଗରେ କହିଲେ — ଆଜ୍ଞା ! ଆଜିକାଲି ଓଡ଼ିଆରେ ଏତେ ଅନୁବାଦ ଗ୍ରନ୍ଥ ପ୍ରକାଶ ପାଉଚି ଯେ ମୌଳିକ ଲେଖା ଛପାଇବା ପାଇଁ ଆମେ ଶଙ୍କିତ ହେଉଚୁ । ତାର କାରଣ, ଅନୂଦିତ ବହିସବୁ ବଡ଼ ସୁନ୍ଦର ଆଉ ଲୋଭନୀୟ ଆକାରରେ ବାହାରୁଚି । ଏ ସବୁ ପୁଣି ମୌଳିକ ଗ୍ରନ୍ଥ ସହିତ ବହି ବଜାରରେ ପ୍ରତିଦ୍ୱନ୍ଦିତା କରୁଚି । ବେଳେ ବେଳେ ଏ ପ୍ରତିଯୋଗିତାରେ ଅନୁବାଦ ଗ୍ରନ୍ଥ ଜିଣି ଯାଉଚି । ଗ୍ରାହକମାନେ ମଧ୍ୟ ଏହାର ରଙ୍ଗିନ ମଲାଟ ଓ ସୁଦୃଶ୍ୟ ବନ୍ଧେଇରେ ଭୁଲି ଯାଉଚନ୍ତି । ଅନୁବାଦ ଶୈଳୀ ଯେତେ ଅତୃପ୍ତିକର ହେଉ ପଛକେ ସେଥି ପ୍ରତି କେହି ଦୃଷ୍ଟି ଦେଉ ନାହାନ୍ତି ।

ବାସ୍ତବରେ ଓଡ଼ିଶାର ବହି ବଜାରରେ ଏ ଏକ ସମସ୍ୟା ଏବେ ଦେଖା ଦେଇଚି । ଯଦି ରଙ୍ଗିନ ମଲାଟ ଓ ସୁଦୃଢ଼ ବନ୍ଧେଇ ଅନୂଦିତ ବହି ବେଶୀ ବିକ୍ରୀ ହେବାର ଏଇ କାରଣ, ତେବେ ମୌଳିକ ବହିର ରୁଚିକର ପ୍ରକାଶରେ ପ୍ରକାଶକଙ୍କର କାର୍ପଣ୍ୟ ଲାଗି ସେମାନେ ନିଶ୍ଚୟ ନିନ୍ଦିତ ହେବେ । ଅନ୍ୟ ପକ୍ଷରେ ଅନୁବାଦ ବହିସବୁ ଲୋଭନୀୟ ଆକାରରେ ପ୍ରକାଶିତ ହେବା ଏକ କଥା, ଅନୁବାଦ-କୌଶଳ ଅତୃପ୍ତିକର ହେବା ଆଉ ଏକ କଥା । ଆମ ମତରେ ସବୁ ବହି ତ ଲୋଭନୀୟ ଭାବରେ ପ୍ରକାଶିତ ହେବା ଲୋଡ଼ା । ସେଥିରେ ଅନୂଦିତ ବହି ବା ମୌଳିକ ବହି ବୋଲି ପାତର ଅନ୍ତର କରିବା ଉଚିତ ନୁହେଁ । ପୁଣି ଅନୁବାଦ ଶୈଳୀ ତୃପ୍ତିକର ହେଲେ ଅନୂଦିତ ଗ୍ରନ୍ଥ ମଧ୍ୟ ସର୍ଜନ ସାହିତ୍ୟର ରସାସ୍ୱାଦନରେ ଚିନ୍ତନ ଓ ମନନରେ ସାହାଯ୍ୟ କରିଥାଏ । ସୁତରାଂ ପାଠକମାନେ ଅନୂଦିତ ଗ୍ରନ୍ଥର ସୁନ୍ଦର ମଲାଟରେ କେବଳ ଭୁଲି ନ ଯାଇ ତୃପ୍ତିକର ଅନୁବାଦ-ଶୈଳୀ ପ୍ରତି ପ୍ରଥମେ ଦୃଷ୍ଟି ଦେବା ଲୋଡ଼ା ।

ନିକଟରେ ଏହିପରି ଖଣ୍ଡିଏ ତୃପ୍ତିକର ଅନୁବାଦ ଗ୍ରନ୍ଥ ପ୍ରକାଶ ପାଇଛି—"ପୃଥିବୀର ଶ୍ରେଷ୍ଠ ଗଳ୍ପ ଗ୍ରନ୍ଥମାଳା ।" ଏହାର ଅନୁବାଦକ ଶ୍ରୀମାନ୍ ଲକ୍ଷ୍ମୀନାରାୟଣ ମହାନ୍ତି । ଗତ କେତେ ବର୍ଷ ହେଲା ଜଣେ କୁଶଳୀ ଅନୁବାଦକ ରୂପେ ସେ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରିଛନ୍ତି । ଏହି ଗ୍ରନ୍ଥରେ ସେ ଆମେରିକା-ସାହିତ୍ୟର ପନ୍ଦରଟି ବିଶିଷ୍ଟ କ୍ଷୁଦ୍ର ଗଳ୍ପକୁ ସ୍ଥାନ ଦେଇଛନ୍ତି । ଆମେରିକାର ପୃଥିବୀ ବିଖ୍ୟାତ ପନ୍ଦର ଜଣ ଉଚ୍ଚକୋଟୀର ଗଳ୍ପ ଲେଖକଙ୍କ ଗଳ୍ପର ଓଡ଼ିଆ ଅନୁବାଦ ପଢ଼ିବାରେ ଓଡ଼ିଶାର ପାଠକପାଠିକା ଅବଶ୍ୟ ଆଗ୍ରହ ଦେଖାଇବେ । ଏଥିରେ ଅନେକ ନୋବେଲ ପୁରସ୍କାର ପ୍ରାପ୍ତ ଲେଖକଙ୍କ ଗଳ୍ପ ଅନୂଦିତ ହୋଇଥିବା ଦୃଷ୍ଟିରୁ ଏ ଗ୍ରନ୍ଥର ମହତ୍ତ୍ୱ ଉପଲବ୍ଧି କରିହୁଏ ।

'ଗ୍ରନ୍ଥର ପ୍ରଚ୍ଛଦପଟ ସୁଦୃଶ୍ୟ, ଏଥି ସହିତ ଅନୁବାଦ ଶୈଳୀ ମଧ୍ୟ ରୁଚିକର ହୋଇ ପାରିଛି ।"

## ପୃଥିବୀର ଶ୍ରେଷ୍ଠ ଗଳ୍ପ ଗ୍ରନ୍ଥମାଳା—ଆମେରିକା

ପ୍ରକାଶକ —ଓଡ଼ିଶା ବୁକ୍ ଷ୍ଟୋର, କଟକ-୨

ମୂଲ୍ୟ —ତିନି ଟଙ୍କା ।

— — —

ବିଶ୍ୱ-ବିଶ୍ରୁତ ଲେଖକମାନଙ୍କର ପ୍ରଖ୍ୟାତ ଗଳ୍ପର ସୁବୃହତ୍ ସଂକଳନ

# ପୃଥିବୀର ଶ୍ରେଷ୍ଠ ଗଳ୍ପ ଗ୍ରନ୍ଥମାଳା

ପୃଥିବୀର ବିଭିନ୍ନ ଦେଶରୁ ଆହରଣ କରି "ପୃଥିବୀର ଶ୍ରେଷ୍ଠ ଗଳ୍ପ ଗ୍ରନ୍ଥମାଳା" ଦଶ ଖଣ୍ଡରେ ପ୍ରକାଶିତ ହେଉଛି । ଆନୁମାନିକ ପୃଷ୍ଠା ସଂଖ୍ୟା ତିନି ହଜାର । ଏଥିରେ ଆମେରିକା, ଇଂଲଣ୍ଡ, ସୋଭିଏତ୍, ଜର୍ମାନୀ, ଫ୍ରାନ୍‌ସ, ଇଟାଲୀ, ନରୱେ, ସୁଇଡେନ, ଯୁଗୋସ୍ଲାଭିଆ, ସ୍ପେନ, ପୋଲାଣ୍ଡ, ବେଲଜିୟମ, ଚେକୋସ୍ଲୋଭାକିଆ, ଆୟର୍ଲଣ୍ଡ, କାନାଡ଼ା, ବ୍ରାଜିଲ, ମିଶର, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ, ଚୀନ, ଜାପାନ, ବର୍ମା, ଭାରତବର୍ଷ, ପ୍ରଭୃତି ନାନା ଦେଶର ସର୍ବଜନାଦୃତ ନିର୍ବାଚିତ କାହାଣୀଗୁଡ଼ିକ ନିପୁଣତା ସହକାରେ ସନ୍ନିବେଶିତ ହୋଇଛି । ବିଭିନ୍ନ ରସର କାହାଣୀରେ ଭରପୂର !

ପ୍ରତି ଗଳ୍ପର ବିଷୟବସ୍ତୁ ବିଚିତ୍ର ପରିବେଶରେ ବିଚିତ୍ରତର ଜୀବନ-ରସରେ ବିଚିତ୍ରତମ ମାନବ ମନର ରହସ୍ୟରେ ଆବୃତ !

ଆମେରିକା, ଇଂଲଣ୍ଡ, ଫ୍ରାନ୍‌ସ ଓ ସୋଭିଏତ୍‌ର ଶ୍ରେଷ୍ଠ ଗଳ୍ପଗୁଡ଼ିକ ଚାରି ଖଣ୍ଡରେ ପ୍ରକାଶିତ ହେଲାଣି । ଅନ୍ୟ ଖଣ୍ଡସବୁ ଛପା ହେଉଛି । ପ୍ରତି ଖଣ୍ଡର ମୂଲ୍ୟ ତିନିଟଙ୍କା ମାତ୍ର ।

ଅନୁବାଦ କରିଛନ୍ତି:—**ଲକ୍ଷ୍ମୀନାରାୟଣ ମହାନ୍ତି**

ପ୍ରକାଶ କରୁଛନ୍ତି

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦ ବିହାରୀ, କଟକ—୨